# ସୃଷ୍ଟି ଓ ସମୀକ୍ଷା

( ରାଧାନାଥ ବିଶେଷାଙ୍କ )

୧୯୯୨/୯୩-୧୯୯୩/୯୪



ଆବିର୍ଭାବ - ୧୮୪୮, ତିରୋଭାବ-୧୯୦୮

ଓଡ଼ିଆ ସାହିତ୍ୟ ସମାଜ

**ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ**

# ସୃଷ୍ଟି ଓ ସମୀକ୍ଷା

(ରାଧାନାଥ ବିଶେଷାଙ୍କ)

୧୯୯୨-୯୩ — ୧୯୯୩-୯୪

ସଂପାଦନା :—

ଶ୍ରୀ ମୃତ୍ୟୁଞ୍ଜୟ ନାୟକ

ରିଡ଼ର ଓ ବିଭାଗୀୟ ମୁଖ୍ୟ

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ– ୮

## ଓଡ଼ିଆ ସାହିତ୍ୟ ସମାଜ
### ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

ସଭାପତି – ଶ୍ରୀ ସୁଧାଂଶୁ ମୋହନ ମହାପାତ୍ର (ଅଧ୍ୟକ୍ଷ)
ଉପସଭାପତି – ଶ୍ରୀ ମୃତ୍ୟୁଞ୍ଜୟ ନାୟକ
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ସମ୍ପାଦକ – ଶ୍ରୀ ରଞ୍ଜନ କୁମାର ମହାନ୍ତି
ସହସଂପାଦକ – ଶ୍ରୀ ଅକ୍ଷୟ କୁମାର ସାହୁ

## ଓଡ଼ିଆ ପାଠଚକ୍ର

ସଂପାଦକ — ଶ୍ରୀ ଜ୍ଞାନାଲୋକ ମହାନ୍ତି
ସହସଂପାଦକ — ଶ୍ରୀ ଅକ୍ଷୟ କୁମାର ଦେ

## ଓଡ଼ିଆ ବିଭାଗର ଅଧ୍ୟାପକବୃନ୍ଦ

ଶ୍ରୀ ମୃତ୍ୟୁଞ୍ଜୟ ନାୟକ – ବିଭାଗୀୟ ମୁଖ୍ୟ
ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର – ପ୍ରାଧ୍ୟାପକ
ଡ଼ଃ ମହେଶ୍ୱର ମହାନ୍ତି – ,,
ଶ୍ରୀ ଭାସ୍କର ଚନ୍ଦ୍ର ଖଟାଇ – ,,
ଡ଼ଃ ପ୍ରଫୁଲ୍ଲ କୁମାର ଦାଶ – ,,
ଡ଼ଃ ପ୍ରାଣ ରଞ୍ଜନ ଦାସ – ,,
ଡ଼ଃ ସୁରେନ୍ଦ୍ର ନାଥ ଆଚାର୍ଯ୍ୟ –ଅଧ୍ୟାପକ
ଡ଼ଃ ପ୍ରସନ୍ନ କୁମାର ସ୍ୱାଇଁ –

# ସମୀକ୍ଷା - 'ସୃଷ୍ଟି ଓ ସମୀକ୍ଷା'ର

ମୋର ଏ ଦୁଃସାହସ-ବାମନର ଚନ୍ଦ୍ରକୁ ହାତ ବଢ଼ାଇବା- ସଦୃଶ । ସହୃଦୟ ପାଠକ ପାଠିକାବୃନ୍ଦ ଏତାଦୃଶ ଧୃଷ୍ଟତା ପାଇଁ ଦୋଷ ମାର୍ଜନା କରିବେ । ବିଶାଳ ସାହିତ୍ୟ ସାମ୍ରାଜ୍ୟର ପ୍ରବେଶ ଦ୍ୱାର ତ ଦୂରର କଥା ତାର ପରିସୀମାକୁ ମଧ୍ୟ ସ୍ପର୍ଶ କରିପାରି ନାହିଁ ମୁଁ । ତଥାପି ପଦେ ଦି ପଦ ଲେଖିବାର ବାସନା ନେଇ ଲେଖୁଛି; ତ୍ରୁଟି ମାର୍ଜନା ଆପଣେ ପାଠକମାନଙ୍କର ଦାୟିତ୍ୱ ।

'ସୃଷ୍ଟି ଓ ସମୀକ୍ଷା'ର ପ୍ରକାଶନ ପରେ ପରେ କଲେଜର ସମସ୍ତ କର୍ମଚାରୀମାନଙ୍କ ପାଖକୁ ଖଣ୍ଡିଏ ଖଣ୍ଡିଏ ସୌଜନ୍ୟସମ୍ବଳିତ 'କପି' ପଠାଇ ଦିଆଯାଏ । ମୁଁ ବି ଖଣ୍ଡେ ଲେଖାଏଁ ପାଏ । ମାତ୍ର ପଢ଼ିବାକୁ ବେଳ ନ ଥାଏ । ଆବଡ଼ା ଝାବଡ଼ା କାମରେ ସବୁବେଳେ ବ୍ୟସ୍ତ । ମୋ ଘରେ ଥାକରେ ନେଇ ଥୋଇଦିଏ । କଥାଟା ହେଲା-

''ମାଣିକ୍ୟ ଯାଏ ଯଦି ଚଣ୍ଡାଳସାହି
ପିଟନ୍ତି ଗୋରୁହାଡ଼େ ତାକୁ ନିଠାଇ ।''

ଥରେ ମୋର 'ଭାର୍ଯ୍ୟା'ଙ୍କର ସାନଭଉଣୀ-ଯିଏ କି ଗୁଣୁପୁର କଲେଜର ଅଧ୍ୟାପିକା ଶ୍ରଦ୍ଧେୟା ଇନ୍ଦିରା-ଆମ ଘରକୁ ଆସିଥାଏ । ମତେ 'ସୃଷ୍ଟି ଓ ସମୀକ୍ଷା'ର ପ୍ରକାଶ କାଳଠାରୁ ଅଦ୍ୟାବଧି, ପ୍ରତ୍ୟେକରୁ ଖଣ୍ଡିଏ ଲେଖାଏଁ କପି ମାଗିଲା । ମୁଁ ସ୍ତବ୍ଧ ହୋଇଗଲି । ପଚାରିଲି ''ତୁମେ ଗୁଣୁପୁରବାଲା ଆମ 'ସୃଷ୍ଟି ଓ ସମୀକ୍ଷା' କଥା କିପରି ଜାଣିଲ ?''

ତା ମୁହଁରୁ ଆମ 'ସୃଷ୍ଟି ଓ ସମୀକ୍ଷା'ର ଅଜସ୍ର ପ୍ରଶସ୍ତିଗାନ ଶୁଣି ନିଜର ଅଜ୍ଞତା ବିଷୟରେ ସଚେତନ ହୋଇଗଲି ଏବଂ ଶାଳୀ ପାଖରେ ନିଜର ଅଜ୍ଞତା ଧରା ପଡ଼ିଯିବାଟା ଠିକ୍ ହୋଇ ନଥାନ୍ତା ଭାବି ନୀରବ ରହିଗଲି । ମନେ ପଡ଼ିଗଲା ଭଞ୍ଜ କବିଙ୍କର......

''ନାରିକେଳ ଯେ ରସପୂର
ଭକ୍ଷି ନ ପାରଇ ବାନର ।''

ମନେ ମନେ 'ଆହା ଚୁ ଚୁ' କରି ଭାବିଲି 'ବିଚରା ବାନର !!' କହନ୍ତୁ ଆଜ୍ଞା ! ମୋର ବା ଦୋଷ କ'ଣ ?

ଆମ କଲେଜରୁ ପ୍ରକାଶିତ ଏପରି ଗୋଟିଏ ମହାର୍ଘ ସଂକଳନ-ଯାହାକି ପାଠକ, ପାଠିକା, ଛାତ୍ର, ଅଧ୍ୟାପକ ଓ ଗବେଷକ ସମସ୍ତଙ୍କ ପାଇଁ ବରଣୀୟ ତଥା ଗ୍ରହଣୀୟ ହୋଇ ପାରିଛି ଏହା ନିଶ୍ଚିତ ଭାବେ ଆମ ପକ୍ଷରେ ଗର୍ବ ଓ ଗୌରବର ବିଷୟ । କାଳଚକ୍ରର କଷାଘାତରେ କେତେବେଳେ ବା କିମିତି ଏହାର ନିୟମିତ ପ୍ରକାଶନରେ ବ୍ୟାଘାତ ସୃଷ୍ଟି ହୋଇଛି । ମାତ୍ର ସୁଖର କଥା ଆମ ଅନୁଷ୍ଠାନର ସାହିତ୍ୟରଥୀମାନେ ସେଥିରେ ହତୋତ୍ସାହ ହୋଇପଡ଼ି ନାହାନ୍ତି । It is better late than never. ଯେଉଁ ପୂର୍ବସୂରୀ ଭଗୀରଥମାନେ ''ସୃଷ୍ଟି ଓ ସମୀକ୍ଷାର'' ଚଳଚଞ୍ଚଳ ଧାରାକୁ ଏ ପର୍ଯ୍ୟନ୍ତ ପ୍ରବହମାନ କରାଇ

ଆଣିଛନ୍ତି ତାଙ୍କର ସୁଯୋଗ୍ୟ ଉତ୍ତର ଦାୟାଦମାନେ ତାହାକୁ ଯେ ଅବ୍ୟାହତ ରଖିବେ-ଏଥିରେ ତିଳେମାତ୍ରେ ସନ୍ଦେହର ଅବକାଶ ନାହିଁ ।

ବିଭିନ୍ନ ସାମୟିକ ସଂଖ୍ୟାଗୁଡ଼ିକ ସାହିତ୍ୟର ଭିନ୍ନ ଭିନ୍ନ ବିଭାବକୁ ପାଥେୟ କରି ଆତ୍ମ ପ୍ରକାଶ କରି ସାରିଛନ୍ତି- ନାଟକ, କ୍ଷୁଦ୍ରଗଳ୍ପ, ଉପନ୍ୟାସ ବିଶେଷାଙ୍କ ରୂପେ । ମଣିଷର ଜୀବନଧାରା ଓ ସାମାଜିକତା ସବୁବେଳେ ଯୁଗଧର୍ମୀ । ପରିବର୍ତ୍ତିତ ପରିସ୍ଥିତି, ଯୁଗ ତଥା ସମୟ ବିଚାରରେ ଏସବୁ ବଦଳି ବଦଳି ଚାଲିଛି । ସାମ୍ପ୍ରତିକ ତଥାକଥିତ ଆଧୁନିକ ଜଡ଼ ସଭ୍ୟତାର ନଗ୍ନ ଆକ୍ରମଣରେ ସାରଲ୍ୟ ତାରଲ୍ୟଭରା ପ୍ରାଚୀନ ଓଡ଼ିଆ ସଂସ୍କୃତି, ରୀତିନୀତି ଆଜି ଧର୍ଷିତ ଓ ବିଲୁପ୍ତ ପ୍ରାୟ । 'ଡାଡ଼ି-ମାମି'ର ତାଡ଼ନାରେ ସ୍ନେହସିକ୍ତ 'ବାପା-ମା' ଡାକ ଆଜି ପଳାୟନପନ୍ଥୀ ! ବିରିଆନି, ଚିଲିଚିକେନ୍‌ର ସଂକ୍ରମଣରେ ଦହିପଖାଳ, ଚୂଡ଼ାଦହିର ଆତ୍ମଗୋପନ !!

ପିଲାଦିନେ ମାଟ୍ରିକ ପଢ଼ିଲାବେଳେ ପଢ଼ିଥିଲୁ-"ଏହି ବଟୁଆ ଆଣିଥିଲା ଓଡ଼ିଆର ଗୌରବ । ପୁଣି ସେଇ ବଟୁଆ ଘେନି ଯିବ ଓଡ଼ିଆର ପ୍ରାଣ ।"

'ବଟୁଆ ଯୁଗ' ବିସ୍ମୃତିର ଅତଳ ଗର୍ଭରେ ଚାପି ହୋଇଗଲାଣି । ବଟୁଆ ଯାଇଛି ଓ ତା ସାଙ୍ଗେ ସାଙ୍ଗେ ନେଇଯାଇଛି ମଧ୍ୟ ଆମର ଋଦ୍ଧିମନ୍ତ ରୁଚି ଓ ସଂସ୍କୃତିକୁ । 'ବଟୁଆ' କହିଲେ ଆମ ପିଲାଏ ତ କିଛି ବୁଝିବେ ନାହିଁ । ଯେଉଁ ମଧ୍ୟବୟସ୍କମାନେ ବଟୁଆକୁ କେବେ ବା କେମିତି ଭେଟିଥିବେ-ତା ନାଁ ଶୁଣିଲେ ନାକ ଟେକିବେ ! କହିବେ ଛି ଛି ମଫସଲିଆ ! ଗାଉଁଲି-ମଫସଲିଆର ଗାଢ଼ ଆଭରଣ ତଳେ ଢାଙ୍କି ହୋଇ ରହିଗଲା ଆମର ନିଜସ୍ୱ-ସର୍ବସ୍ୱ !! ଅସାର ଫମ୍ପା ଆଧୁନିକତାର ସଂଘାତରେ ପ୍ରେମ, ଆତ୍ମୀୟତା ତଥା ମାନବିକତା ଭରା ଆମର ପ୍ରାଚୀନ ସଂସ୍କୃତି, ସାମାଜିକତା ଯେତେବେଳେ ଲୁଣ୍ଠିତ ହୋଇ ଅବଲୁପ୍ତ ହେବାକୁ ଯାଉଛି ତାହାକୁ ପୁନରୁଜ୍ଜିବୀତ କରାଇବାର ଦାୟିତ୍ୱରେ ସଂସ୍କାର ପ୍ରେମୀ ସାହିତ୍ୟିକ ବନ୍ଧୁମାନେ ବି ଭାଗୀଦାର ହେବା ବିଧେୟ । ଆଜି ଏଇ ଅବସରରେ ଏକ ଅନଧିକାର ଚର୍ଚ୍ଚା ମାଧ୍ୟମରେ ମୁଁ 'ସୃଷ୍ଟି ଓ ସମୀକ୍ଷା'ର ରୂପସ୍ରଷ୍ଟାମାନଙ୍କୁ ଅନୁରୋଧ କରିପାରେକି ସେମାନେ ଆମର ପ୍ରାଚୀନ ଓଡ଼ିଆ ରୀତିନୀତି, ସଂସ୍କୃତି ଓ ଓଡ଼ିଆତ୍ୱକୁ ଆଧାର କରି ଏକ ବିଶେଷାଙ୍କ ସଂକଳନରେ ପ୍ରୟାସୀ ହେବେ ?

**ବନ୍ଦେ ଉତ୍କଳ ଜନନୀ ।**

୨୧.୭.୯୬

ଖ୍ରୀଷ୍ଟ ମହାବିଦ୍ୟାଳୟ
କଟକ

ପ୍ରଭାତ କୁମାର କର
ଅଧ୍ୟକ୍ଷ

# ଅଭିନନ୍ଦନ



କଲେଜର ନୂତନ ଅଧ୍ୟକ୍ଷ

ଶ୍ରୀ ପ୍ରଭାତ କୁମାର କର

# ସୂଚୀପତ୍ର

# ସଂପାଦକୀୟ

ମୌଳିକ ସମାଲୋଚନା ଓ ଗବେଷଣା ପତ୍ରିକା ପାଇଁ ଉପଯୁକ୍ତ ଲେଖା ସଂଗ୍ରହ ଓ ସଂପାଦନା ଏକ କଷ୍ଟସାଧ୍ୟ ବ୍ୟାପାର। ସେଥିପାଇଁ ପ୍ରତିବର୍ଷ 'ସୃଷ୍ଟି ଓ ସମୀକ୍ଷା'ର ନିୟମିତ ପ୍ରକାଶନରେ ସ୍ୱାଭାବିକ ବାଧା ସୃଷ୍ଟି ହୋଇଥାଏ। ଏତଦ୍‌ବ୍ୟତୀତ କଲେଜର କେତେକ ଆଭ୍ୟନ୍ତରୀଣ ସମସ୍ୟା ଏଥିରେ ବାଧକ ହୋଇଥାଏ। ୧୯୯୪/୯୫ ଶିକ୍ଷା ବର୍ଷଟି କଲେଜର 'ସୁବର୍ଣ୍ଣ ଜୟନ୍ତୀ' ଉତ୍ସବ ଲାଗି ସମସ୍ତ ପ୍ରାଶାସନ ବ୍ୟସ୍ତଥିବାରୁ ଅନ୍ୟାନ୍ୟ କାର୍ଯ୍ୟଗୁଡ଼ିକ ସ୍ୱଭାବତଃ ଧିମେଇ ଯାଇଅଛି। ସେଥିଲାଗି 'ସୃଷ୍ଟି ଓ ସମୀକ୍ଷା'ର ଅହେତୁକ ବିଳମ୍ବ ଘଟିଥିବାରୁ ଆମ୍ଭେ ଦୁଃଖିତ।

୧୯୭୦/୭୧ ଶିକ୍ଷା ବର୍ଷଠାରୁ ଆରମ୍ଭ ହୋଇଥିବା ସୃଷ୍ଟି ଓ ସମୀକ୍ଷାର ୧୬ଗୋଟି ସଂଖ୍ୟା ମଧ୍ୟରୁ ଛଅଗୋଟି ସଂଖ୍ୟା କବିକୃତି ଓ ସାଧନାକୁ ରୂପଦାନ କରିଅଛି। ସେଗୁଡ଼ିକ ହେଉଛି– ସାରଳାଦାସ, ବଳରାମ ଦାସ, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ମଧୁସୂଦନ ରାଓ ତଥା ଫକୀରମୋହନ ସେନାପତି ବିଶେଷାଙ୍କ। ଏଗୁଡ଼ିକ ପାଠକ ମହଲରେ ଅତ୍ୟନ୍ତ ଆଦୃତ ହୋଇଥିଲା।

ବର୍ତ୍ତମାନ ସଂଖ୍ୟାଟି ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗର ନିର୍ମାତା କବିବର ରାଧାନାଥ ରାୟଙ୍କ ଉପରେ ଏକ ସମୀକ୍ଷାତ୍ମକ ବିଶେଷାଙ୍କ ରୂପେ ପ୍ରକାଶ ଲାଭ କରୁଅଛି। କବିବର ରାଧାନାଥ ପ୍ରାଚ୍ୟ-ପାଶ୍ଚାତ୍ୟ ସାହିତ୍ୟଧାରାର ମିଳନ-ସେତୁ ହୋଇଥିବାରୁ ଏପରି ଏକ ସମାଲୋଚନାମୂଳକ ଲେଖାର ଆବଶ୍ୟକତା ଅନୁଭବ କରି ଏଥିରେ ମନ ବଳାଇଅଛୁ।

ରାଧାନାଥଙ୍କ ଜୀବିତାବସ୍ଥାରୁ ଅର୍ଥାତ୍ ୧୮୯୩-୯୪ ମସିହାର ଇନ୍ଦ୍ରଧନୁ-ବିଜୁଳି ପତ୍ରିକାର ସାହିତ୍ୟକ ମସିଯୁଦ୍ଧ ଦିନରୁ ବିଗତ ଶହେବର୍ଷ ମଧ୍ୟରେ ରାଧାନାଥଙ୍କ କୃତି ଓ କୃତିତ୍ୱ ଉପରେ ବହୁସଂଖ୍ୟକ ପୁସ୍ତକ, ଗବେଷଣା

ନିବନ୍ଧ ଓ ସ୍ୱତନ୍ତ୍ର ସଂଖ୍ୟା ସବୁ ପ୍ରକାଶିତ ହୋଇଅଛି। ରାଧାନାଥଙ୍କ ଅନେକ ଅପ୍ରକାଶିତ ରଚନା ସଂଗୃହୀତ ହୋଇ ଗ୍ରନ୍ଥାବଳୀର ନବମ ମୁଦ୍ରଣ ଘଟିଲାଣି। ସାରଳା, ଉପେନ୍ଦ୍ରଙ୍କ ପରି ରାଧାନାଥ ଓଡ଼ିଆ ସାହିତ୍ୟର ସର୍ବମାନ୍ୟ କବି ହୋଇଥିବାରୁ ଏବେ ମଧ୍ୟ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର୍ଯ୍ୟ ହୋଇ ଚାଲିଛନ୍ତି।

ସେହି ଦୃଷ୍ଟିରୁ ଆମ୍ଭର ଏହି ସଂଖ୍ୟାଟିରେ କେତେକ ନୂତନ ଦୃଷ୍ଟି ଓ ଦିଗ୍‌ବଳୟରୁ ରାଧାନାଥଙ୍କ ସୃଷ୍ଟି-ସମ୍ଭାରକୁ ଆଲୋକପାତ କରାଯାଇଛି। ଯଥା ସମୟରେ ଲେଖା ଆମ୍ଭର ହସ୍ତଗତ ହୋଇ ନ ପାରିବାରୁ ରାଧାନାଥଙ୍କ ସାହିତ୍ୟରେ ଓଡ଼ିଶାର ଇତିହାସ ଓ ଭୂଗୋଳ, ବ୍ୟଙ୍ଗ ବିଦ୍ରୂପ, ଦୁଃଖବାଦ, ଶୈଳୀର ବୈଶିଷ୍ଟ୍ୟ ତଥା ପ୍ରଭାବ ଓ ପ୍ରତିଷ୍ଠା ସମ୍ପର୍କିତ ଆଲୋଚନା ଗୁଡ଼ିକ ସ୍ଥାନିତ ହୋଇପାରିଲା ନାହିଁ। ଆହୁରି ମଧ୍ୟ ସ୍ୱଳ୍ପ ଅର୍ଥ ବ୍ୟବସ୍ଥା ଦୃଷ୍ଟିରୁ କଳେବର ବୃଦ୍ଧିକୁ ଆଖି ଆଗରେ ରଖି ଏହାକୁ ସୀମିତ ରୂପଦେବାକୁ ବାଧ୍ୟ ହେଲୁ।

## ସାହିତ୍ୟାଲୋଚନା –

ବିଗତ ବର୍ଷ ମାନଙ୍କରେ ଅର୍ଥାତ୍ ୧୯୯୧-୯୨ ଠାରୁ ୧୯୯୪-୯୫ ଶିକ୍ଷାବର୍ଷ ଗୁଡ଼ିକରେ ଓଡ଼ିଆ ପାଠଚକ୍ର ଓ ସାହିତ୍ୟ ସମାଜର ବାର୍ଷିକ ଉତ୍ସବଗୁଡ଼ିକରେ ବିଭିନ୍ନ ସଂପାନକୁ ନାଟ୍ୟକାର ଭଞ୍ଜ କିଶୋର ପଟ୍ଟନାୟକ, ପଠାଣି ପଟ୍ଟନାୟକ, ଡଃ. ବାସୁଦେବ ସାହୁ, ବେଣୁଧର ରାଉତ, ବିଚାରପତି ରଙ୍ଗନାଥ ମିଶ୍ର, ମନୋରମା ମହାପାତ୍ର, ପ୍ରସନ୍ନ ପାଟ୍ଟଶାଣୀ, ପ୍ରତିଭା ରାୟ, ବାରିଷ୍ଟର ଗୋବିନ୍ଦ ଦାସ, ଡଃ. ବିଚିତ୍ରାନନ୍ଦ ମହାନ୍ତି, ଡଃ. ସୁବୋଧ କୁମାର ଚାଟାର୍ଜୀ, ଡଃ, ବ୍ରଜମୋହନ ମହାନ୍ତି, ଡଃ. ଧନେଶ୍ୱର ମହାପାତ୍ର, ଗୁରୁଚରଣ ପଟ୍ଟନାୟକ, ରାଜେନ୍ଦ୍ର ନାରାୟଣ ଦାସ, ଡଃ. ହେମନ୍ତ କୁମାର ଦାସ ଡଃ, ପ୍ରଫୁଲଚନ୍ଦ୍ର ମହାନ୍ତି ପ୍ରମୁଖ ସାହିତ୍ୟିକଗଣ ଆସି ଅଭିଭାଷଣ ପ୍ରଦାନ କରିଥିବାରୁ ଏହି ଅବସରରେ ଆମ୍ଭେ କୃତଜ୍ଞତା ପ୍ରକାଶ କରୁଅଛୁ।

ଏହି ଉତ୍ସବଗୁଡ଼ିକ ସୁଚାରୁରୂପେ ପରିଚାଳନା କରିବାରେ ସାହିତ୍ୟ ସମାଜର ସଂପାଦକ ଅମିତରଞ୍ଜନ ମିଶ୍ର, ରଞ୍ଜନ କୁମାର ମିଶ୍ର, ଦାମୋଦର ପଣ୍ଡା, ସହ ସଂପାଦକ ସଞ୍ଜୟ କୁମାର ମହାନ୍ତି, ବିଭୁରଞ୍ଜନ ପଟ୍ଟନାୟକ, ସାଗରିକା ପଣ୍ଡା ତଥା ପାଠଚକ୍ର ସଂପାଦକ ଶ୍ରୀକାନ୍ତ ରାଉତ, ସ୍ମରଣ କୁମାର ନାୟକ

ତଥା ସହସଂପାଦିକା ସବିତା ସିଂହ ଓ ଅକ୍ଷୟ କୁମାର ଦେ ପ୍ରଭୃତି ଧନ୍ୟ ବାଦାର୍ହ।

## ଅଭିନନ୍ଦନିକା

ସମ୍ପ୍ରତି ୧୯୯୫ ମସିହାରେ କଲେଜର ନୂତନ ଅଧ୍ୟକ୍ଷ ଭାବେ ଶ୍ରୀ ପ୍ରଭାତ କୁମାର କର, ଉପାଧ୍ୟକ୍ଷ ଭାବେ ଶ୍ରୀ ଅତୀନ ଚୌଧୁରୀ ଓ ଡଃ. ଅରୁଣ କୁମାର ରାୟ ଯୋଗଦାନ କରିଥିବାରୁ ଆମ୍ଭେ ସେମାନଙ୍କୁ ସ୍ୱାଗତ ଜଣାଉଛୁ। ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଭାବେ ଡଃ. ମହେଶ୍ୱର ମହାନ୍ତି କାର୍ଯ୍ୟଭାର ଗ୍ରହଣ କରିଥିବାରୁ ତାଙ୍କୁ ଅଭିନନ୍ଦନ ଜଣାଉଛୁ।

## ବିଦାୟ ସମ୍ବର୍ଦ୍ଧନା –

୧୯୯୪-୯୫ ଶିକ୍ଷା ବର୍ଷରେ କଲେଜର ପାଞ୍ଚଜଣ ପ୍ରବୀଣ ଅଧ୍ୟାପକ ଶ୍ରୀ ପ୍ରେମାନନ୍ଦ ମହାନ୍ତି (ଉଦ୍ଭିଦ ବିଜ୍ଞାନ ମୁଖ୍ୟ) ଉପାଧ୍ୟକ୍ଷ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର (ଓଡ଼ିଆ ବିଭାଗ) ଅଧ୍ୟକ୍ଷ ଶ୍ରୀ ସୁଧାଂଶୁ ଶେଖର ମହାପାତ୍ର (ଇତିହାସ ବିଭାଗ) ଡଃ. ବସନ୍ତ କୁମାର ଜେନା (ଅର୍ଥନୀତି ବିଭାଗ ମୁଖ୍ୟ) ଶ୍ରୀ ମୃତ୍ୟୁଞ୍ଜୟ ନାୟକ (ଓଡ଼ିଆ ବିଭାଗ ମୁଖ୍ୟ) ଅବସର ଗ୍ରହଣ କରିଛନ୍ତି।

ସେମାନଙ୍କର ଅବସରକାଳୀନ ଜୀବନ ସୁଖ ଓ ନିରାମୟ ହେବା କାମନା କରୁଅଛୁ।

## ଶୋକବାର୍ତ୍ତା –

୧୯୯୪ ମସିହାରେ ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀ ଗଦାଧର ମିଶ୍ରଙ୍କ କର୍କଟ ରୋଗରେ ଅକାଳ ବିୟୋଗ ଘଟିଥିବାରୁ ଆମ୍ଭେମାନେ ଏକାନ୍ତ ମର୍ମାହତ। ତାଙ୍କ ଶୋକସନ୍ତପ୍ତ ପରିବାରକୁ ଗଭୀର ସମ୍ବେଦନ ଜ୍ଞାପନ କରିବାସହ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଅଛୁ।

ସଂପାଦକ
ମୃତ୍ୟୁଞ୍ଜୟ ନାୟକ

# ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା କବିବର ରାଧାନାଥ- (ଖ୍ରୀ : ୧୮୪୮–୧୯୦୮)

ପ୍ରାଧ୍ୟାପକ ଶ୍ରୀ ମୃତ୍ୟୁଞ୍ଜୟ ନାୟକ

ରାଧାନାଥ ଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମଦାତା। ଆଧୁନିକ ଯୁଗଟି ହେଉଛି ଏକ ସନ୍ଧିକ୍ଷଣର ଯୁଗ। ପ୍ରାଚ୍ୟ–ପାଶ୍ଚାତ୍ୟ ଶିକ୍ଷା–ସଭ୍ୟତା–ସଂସ୍କୃତିର ଏହା ଏକ ଅମୃତମୟ ଫଳ। ଊନବିଂଶ ଶତାବ୍ଦୀରେ ଭାରତବର୍ଷରେ ସଂଘଟିତ ହୋଇଥିବା ଧାର୍ମିକ, ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ନବଜାଗରଣର ଅଭ୍ୟୁଦୟ କାଳରେ ରାଧାନାଥଙ୍କ ଜନ୍ମ ଓ ସାଧନାର ସମୟ। ତେଣୁ ଭାରତୀୟ ତଥା ପାଶ୍ଚାତ୍ୟ ଚିନ୍ତା ଚେତନାର ପ୍ରଭାବରେ ସେ ଅନୁପ୍ରାଣୀତ ହୋଇଥିଲେ। ଫଳରେ ତାଙ୍କ ସାହିତ୍ୟରାଜିରେ ଭାରତୀୟ ତଥା ଉତ୍କଳ ଜାତୀୟ ଚେତନାର ଭାବ ଦେଖିବାକୁ ମିଳିଥାଏ।

୧୮୬୩ ମସିହାରେ ରାଧାନାଥ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ। ସେ ଜଣେ ପ୍ରତିଭାବାନ ଛାତ୍ର ଥିଲେ। ବାଲ୍ୟଜୀବନରୁ ସେ ସଂସ୍କୃତ, ପାର୍ଶୀ, ଉର୍ଦ୍ଦୁ ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ। ପରବର୍ତ୍ତୀକାଳରେ ଇଂରେଜୀ, ବଙ୍ଗଳା, ଗ୍ରୀକ୍ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଅଧ୍ୟୟନ କରି ପାଣ୍ଡିତ୍ୟ ଅର୍ଜନ କରିଥିଲେ। ଗଭୀର ଅଧ୍ୟବସାୟ ଓ ବହୁଶାସ୍ତ୍ରଦର୍ଶିତା ତାଙ୍କ ଜୀବନରେ ଅନ୍ୟତମ ସାଧନା ଥିଲା।

ମାତ୍ର ୧୮ ବର୍ଷ ବୟସରେ ରାଧାନାଥଙ୍କର କବିଶକ୍ତି ପ୍ରକାଶ ପାଇଥିଲା। ସେ ୧୮୬୮ ମସିହାରେ ବଙ୍ଗଳା ଭାଷାରେ କବିତାବଳୀ-୧ମ, ୧୮୭୨ରେ କବିତାବଳୀ-୨ୟ ଓ ୧୮୭୯ରେ 'ଲେଖାବଳୀ' ପ୍ରକାଶ କରି ନିଜ କବି ପ୍ରତିଭାର ପରିଚୟ ଦେଇଥିଲେ। ଏହି କବିତା ପୁସ୍ତକ ସମ୍ପର୍କରେ 'ଅମୃତବଜାର ପତ୍ରିକା', ବଙ୍କିମଚନ୍ଦ୍ରଙ୍କ 'ବଙ୍ଗଦର୍ଶନ ପତ୍ରିକା' ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ 'ହାଲିସହର ପତ୍ରିକା' ଓ ଭୁଦେବ ମୁଖୋପାଧ୍ୟାୟଙ୍କ 'ଏଡୁକେସନ ଗେଜେଟ' ପ୍ରଭୃତି ପ୍ରଶଂସାସୂଚକ ବାର୍ତ୍ତାମାନ ପ୍ରକାଶ କରିଥିଲେ।

୧୮୬୪-୭୨ ମସିହା ମଧ୍ୟରେ ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲ, ପୁରୀ ଜିଲ୍ଲା ସ୍କୁଲ ବାଙ୍କୁଡ଼ା ସ୍କୁଲରେ ଶିକ୍ଷକତା କରିଥିଲେ। ସେହି ସମୟର ସ୍କୁଲ ସମୂହର ଡେପୁଟି ଇନିସ୍ପେକ୍ଟର ଭୁଦେବ ମୁଖୋପାଧ୍ୟାୟ ରାଧାନାଥଙ୍କୁ ଅତୀବ ସ୍ନେହଚକ୍ଷୁରେ

ଦେଖୁଥିଲେ। ଉଭୟେ ଥିଲେ ସାହିତ୍ୟାନୁରାଗୀ ଓ ଦୁହେଁ ସାହିତ୍ୟ ଆଲୋଚନାରେ ନିମଗ୍ନ ରହୁଥିଲେ। ଭଞ୍ଜୀୟ କବିତା ରାଧାନାଥଙ୍କ ମୁଖରୁ ଶୁଣି ଭୁଦେବ ବାବୁ ଅତ୍ୟନ୍ତ ପ୍ରୀତ ହେଉଥିଲେ। ସେ ନିଜ ସମ୍ପାଦିତ Education Gazetteରେ ରାଧାନାଥଙ୍କ ପ୍ରଶଂସା କରି ବଙ୍ଗଭାଷାରେ ଲେଖିଥିଲେ –

ରାଧାନାଥ ଉଡ଼ିଶ୍ୟାର ଗୌରବ କେତନ
ଉଦାର ବିନୀତ ଧୀର ସୁବୋଧ ସୁଜନ
ନାନାଶାସ୍ତ୍ର ବିଭୂଷିତ
ନାନାଶାସ୍ତ୍ର ସୁପଣ୍ଡିତ
କବିତା କାନନେ ପିକବର ପ୍ରିୟବର
ସ୍ୱର୍ଗୀୟ ସ୍ୱଭାବେ ପୂତ ତୋମାର ଅନ୍ତର।
× × ×
ରାଧାନାଥ, ଉଡ଼ିଶ୍ୟାର କରିୟା ଉଜ୍ଜଳ
ଦୀର୍ଘଜୀବି ହୟେ ସାଧ ସ୍ୱଦେଶ ମଙ୍ଗଳ
ହେ ସୁଜନ, ପୃଥିବୀତେ
ଥାକ ସୁଖେ ସ୍ୱଚ୍ଛନ୍ଦେତେ
ସଂସାରେର ବିଘ୍ନ ବାଧା ଅତିକ୍ରମ କରି
ବଡ଼ ହଓ ପ୍ରିୟବର, ଆଶୀର୍ବାଦ କରି।

ସାହିତ୍ୟ ଅନୁରାଗୀ ଗୁଣଗ୍ରାହକ ଭୁଦେବବାବୁ ପରବର୍ତ୍ତୀ ସମୟରେ ରାଧାନାଥଙ୍କୁ ବଙ୍ଗସାହିତ୍ୟରେ ଚର୍ଚ୍ଚା କରିବା ଅପେକ୍ଷା ନିଜ ମାତୃଭୂମି ଓଡ଼ିଆ ଭାଷାରେ ସାହିତ୍ୟ ରଚନା କରିବା ଲାଗି ପ୍ରେରଣା ଦେଇଥିଲେ।

ବାଲେଶ୍ୱର ଅବସ୍ଥାନ କାଳରେ ରାଧାନାଥ ସହପାଠୀ ଦାମୋଦର ଦାସଙ୍କ ଗୃହ ଲାଇବ୍ରେରୀରେ ଅଧ୍ୟୟନ କରିବା ଓ ସାହିତ୍ୟଚର୍ଚ୍ଚା କରିବାରେ ସୁଯୋଗ ଲାଭ କରିଥିଲେ। ତାଙ୍କ ସହ ପର୍ଯ୍ୟାୟକ୍ରମେ ରାଜା ବୈକୁଣ୍ଠନାଥ ଦେ, ରସିକଚାନ୍ଦ ଦେ, ଫକୀରମୋହନ ଓ ମଧୁସୂଦନ ସହଯୋଗିତା କରିଥିଲେ। ସାହିତ୍ୟ ଆଲୋଚନାର ପୀଠସ୍ଥଳୀ ବାଲେଶ୍ୱରଠାରେ ରାଧାନାଥ-ମଧୁସୂଦନ ଓ ଫକୀରମୋହନଙ୍କର ତ୍ରିବେଣୀ ସଂଗମ ଘଟିଥିଲା।

ଆଧୁନିକ ଓଡ଼ିଆ ସାହିତ୍ୟର ଏହି ସାହିତ୍ୟରଥୀ ତ୍ରୟୀଙ୍କ କବି ଓ କବିତ୍ୱକୁ ଉପଲକ୍ଷ୍ୟ କରି ସମାଲୋଚକ ଡଃ ମାୟାଧର ମାନସିଂହ 'କବି ଓ କବିତା' ପୁସ୍ତକରେ ଲେଖିଛନ୍ତି –

"ରାଧାନାଥ ମଧୁସୂଦନ ଓ ଫକୀରମୋହନ ଓଡ଼ିଆ ସାହିତ୍ୟରେ ଗୋଟିଏ ଯୁଗର ତ୍ରୟୀ। ଏମାନେ ଗୋଟିଏ ବୀଣାର ତିନୋଟି ତାର, ଯେପରି ଏକ ଜାହ୍ନବୀ ତିନି ସ୍ରୋତରେ ବହିଯାଉଛି, ଏକ ତ୍ରିମୁଖୀ ଦେବତାର ତିନିମୁଖରୁ ତିନିଦେବ ନିଃସୃତ

ହେଉଅଛି। × × × ଏ ତିନିହେଁ ବାସ୍ତବିକ୍ କବି; ଦିବ୍ୟ–ଦୃଷ୍ଟି ସମ୍ପନ୍ନ ବ୍ୟକ୍ତି; ସତ୍ୟଦ୍ରଷ୍ଟା। ପ୍ରଭେଦ ଏତିକି ଯେ ଏକ ସତ୍ୟ ଭିନ୍ନ ଭିନ୍ନ ପ୍ରତିଭା ଘେନି ଭିନ୍ନ ଭିନ୍ନ ରୀତିରେ ପ୍ରକାଶିତ ହୋଇଛି ମାତ୍ର, ମନୁଷ୍ୟର ଉପଭୋଗ ଲାଗି ସ୍ରଷ୍ଟା ଯେଉଁ ଇନ୍ଦ୍ରିୟଭୋର ଆନନ୍ଦ ଏହି ଜଗତରେ ସଂଚିତ କରି ରଖିଅଛନ୍ତି, ତାହା କେବଳ ଭାଗ୍ୟବାନମାନଙ୍କ ଭାଗ୍ୟରେ ଘଟେ। କବି-ଋଷି-ଜ୍ଞାନୀମାନେ ଭାଗ୍ୟବାନ ବ୍ୟକ୍ତି। ଏମାନେ ଦିବ୍ୟଦୃଷ୍ଟି ବଳରୁ କ୍ଷଣିକ ଓ ଚିରନ୍ତନର ପ୍ରଭେଦ ବୁଝି ପାରନ୍ତି-ମରୀଚିକା ଛାଡ଼ି ସତ୍ୟର ଅନୁସନ୍ଧାନ କରନ୍ତି। ଏହି ଅନୁସନ୍ଧାନ ମାନବ ଜୀବନର ଶ୍ରେଷ୍ଠ ସାଧନା। ଏହି ଅନୁସନ୍ଧାନ ହିଁ ମନୁଷ୍ୟକୁ ପରମ ଆନନ୍ଦ ଦେଇପାରେ। ରାଧାନାଥ ଏହି ଆନନ୍ଦ ପ୍ରକୃତିରେ, ଫକୀରମୋହନ ମାନବ ସମାଜରେ, ମଧୁସୂଦନ ବ୍ରହ୍ମ ଅନୁଭବରେ ଲାଭ କରିଥିଲେ। ଫକୀରମୋହନ ସତ୍ୟର, ରାଧାନାଥ ସୁନ୍ଦରର ଓ ମଧୁସୂଦନ ଶିବର ଉପାସକ ଥିଲେ। ତିନିହେଁ ତିନି ସ୍ରୋତର ନୌକା ଭସାଇ ଦେଇଛନ୍ତି, ସେହି ଏକ ଜଳବିହାରର ପରମମାନନ୍ଦ ଲାଭ କରିବା ଲାଗି।''

ରାଧାନାଥ ୧୮୭୯ ମସିହାରେ ବଙ୍ଗଳା 'ଲେଖାବଳୀ' ମାଇକେଲ ମଧୁସୂଦନ ଦତ୍ତଙ୍କ ବୀରାଙ୍ଗନା କାବ୍ୟ (୧୮୭୨) ଅନୁସରଣରେ ଲେଖିଥିଲେ। ମାଇକେଲ ମଧୁସୂଦନ ମଧ ଗ୍ରୀକ୍ କବି ଓଭିଡ଼ଙ୍କୁ ଅନୁସରଣ କରି ବୀରାଙ୍ଗନା କାବ୍ୟ ରଚନା କରିଥିଲେ। ରାଧାନାଥଙ୍କ 'ଲେଖାବଳୀ'ରେ 'ରାମଚନ୍ଦ୍ରେର ପ୍ରତି ଜାନକୀ', ଅର୍ଜୁନେର ପ୍ରତି ସୁଭଦ୍ରା, କଚେର ପ୍ରତି ଦେବଯାନୀ, ପୁଣ୍ଡରିକେର ପ୍ରତି ମହାଶ୍ୱେତା, ମଦନେର ପ୍ରତି ମାୟାଦେବୀ ପ୍ରଭୃତି ପୌରାଣିକ ବିଷୟବସ୍ତୁ ଅବଲମ୍ବନରେ ରଚିତ। କିନ୍ତୁ ପ୍ରଥମ କବିତାଟି କରୁଣ ରସାତ୍ମକ ଓ ରାଧାନାଥଙ୍କ ପାଶ୍ଚାତ୍ୟ ସାହିତ୍ୟ ଅନୁରାଗର ଫଳଶ୍ରୁତି। କିନ୍ତୁ ରାଧାନାଥ ରେମୁଣାର ଏକ ପ୍ରତ୍ୟକ୍ଷ ପ୍ରେମ କାହାଣୀକୁ ନେଇ ରଚନା କରିଛନ୍ତି ''କୁମାରନାଥେର ପ୍ରତି କମଳକାମିନୀ' ନାମକ କାଳ୍ପନିକ ପ୍ରେମ କବିତା। ଏହା ତାଙ୍କର ରୋମାଣ୍ଟିକ ଚିନ୍ତାଧାରାର ଆଦ୍ୟ ସଂକେତ। ଲେଖାବଳୀଟି ଅମିତ୍ରାକ୍ଷର ଛନ୍ଦରେ ରଚିତ। ଚତୁର୍ଦ୍ଦଶପଦୀ କବିତା (Sonnet) ଓ କ୍ଷୁଦ୍ର କବିତା ରଚନା କ୍ଷେତ୍ରରେ ରାଧାନାଥ ଅଗ୍ରଣୀ ଭୂମିକା ନେଇଛନ୍ତି।

୧୮୭୩ ମସିହାରେ ରାଧାନାଥ ବଙ୍ଗଳା ସାହିତ୍ୟରୁ ମୁଖ ଫେରାଇ ଓଡ଼ିଆ ସାହିତ୍ୟ ପ୍ରତି ଧ୍ୟାନ ଦେଇଛନ୍ତି। 'ଉତ୍କଳ ଦର୍ପଣ' (୧୮୭୩) ପତ୍ରିକାରେ ରାଧାନାଥ 'ବିବେକୀ' ରଚନା କରିଛନ୍ତି। ଏହା ଆଧୁନିକ ଯୁଗର ପ୍ରଥମ ପ୍ରବନ୍ଧ। ଏହାପରେ ସେହି ପତ୍ରିକାରେ ରାଧାନାଥଙ୍କର 'ମେଘଦୂତ' ଅନୁବାଦ ଓ 'ଇଟାଲୀୟ ଯୁବା' ଗଳ୍ପ ପ୍ରକାଶ ଲାଭ କରିଅଛି। ୧୮୭୨-୭୭ ମସିହା ପର୍ଯ୍ୟନ୍ତ ରାଧାନାଥ ଡେପୁଟି ଇନିସ୍‌ପେକ୍ଟର ଓ ୧୮୭୮-୯୨ ପର୍ଯ୍ୟନ୍ତ ଜଏଣ୍ଟ ଇନିସ୍‌ପେକ୍ଟର ଥିଲେ।

୧୮୭୭ ମସିହାରେ ଓଡ଼ିଆରେ କବିତାବଳୀ- ୧ମ ଓ ୧୮୮୫ରେ କବିତାବଳୀ- ୨ୟ ଭାଗ ରାଧାନାଥ ଓ ମଧୁସୂଦନଙ୍କ ଯୁଗ୍ମ ପ୍ରଚେଷ୍ଟା ଓ ଲେଖା ଦ୍ୱାରା

ଆତ୍ମପ୍ରକାଶ କରିଥିଲା। ଏହା ପାଠ୍ୟ ପୁସ୍ତକ ଅଭାବ ଦୂରୀକରଣ ନିମିତ୍ତ ଲେଖା ଯାଇଥିଲା। ୧୮୯୯ ମସିହାରେ ରାଧାନାଥ ପାଠ୍ୟକ୍ରମ ପାଇଁ 'ବ୍ୟାକରଣ ପରିଚୟ' ମଧ୍ୟ ରଚନା କରିଥିଲେ। ନିଜେ ପାଠ୍ୟପୁସ୍ତକ ପ୍ରଣୟନ କରିବା ଓ ଅନ୍ୟମାନଙ୍କୁ ପ୍ରବର୍ତ୍ତାଇ ଲେଖାଇବାରେ ରାଧାନାଥ ବ୍ରତୀ ହୋଇଥିଲେ। ଇଂରାଜୀ ସାହିତ୍ୟରେ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ଓ କଲେରିଜ୍ 'Lyrical Ballad' ଲେଖି ନବକାବ୍ୟ ସୃଷ୍ଟି କରିବା ଭଳି ରାଧାନାଥ ଓ ମଧୁସୂଦନ କବିତାବଳୀ ରଚନା କରି ଓଡ଼ିଆ ସାହିତ୍ୟରେ ନୂତନ କାବ୍ୟଧାରା ସୃଷ୍ଟି କରିଥିଲେ। ଖଣ୍ଡ କାବ୍ୟ, କ୍ଷୁଦ୍ର କବିତା, ଅମିତ୍ରାକ୍ଷର ଛନ୍ଦ ଓ ଉପଧା ମିଳନ କ୍ଷେତ୍ରରେ ରାଧାନାଥ ଥିଲେ ଅଗ୍ରଣୀ।

୧୮୭୦–୮୦ ମସିହା ପର୍ଯ୍ୟନ୍ତ ରାଧାନାଥ ଭବିଷ୍ୟତରେ ଜଣେ ବିଶିଷ୍ଟ କାବ୍ୟକାର ହେବାର ପ୍ରସ୍ତୁତି ଭୂମି ନିର୍ମାଣ କରିଥିଲେ। ବଙ୍ଗଳା ଲେଖା, ଅନୁବାଦ, ପାଠ୍ୟପୁସ୍ତକ ଓ ଅନ୍ୟାନ୍ୟ ସାହିତ୍ୟ ରଚନା ମାଧ୍ୟମରେ ରାଧାନାଥ ପ୍ରଥମେ ଲୋକଲୋଚନକୁ ଆସିଥିଲେ। ଆଧୁନିକ ଶିକ୍ଷା ଓ ଦୀକ୍ଷାରେ ଦୀକ୍ଷିତ ସମସାମୟିକ ବିଶିଷ୍ଟ ବ୍ୟକ୍ତିବୃନ୍ଦଙ୍କ ସହ ରାଧାନାଥଙ୍କର ଘନିଷ୍ଠତା ତାଙ୍କ କର୍ମପ୍ରେରଣାର ଉତ୍ସ ଥିଲା। ସେମାନେ ହେଲେ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ବାହିକା ସଂପାଦକ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, କପିଳେଶ୍ୱର ବିଦ୍ୟାଭୂଷଣ, ସାମନ୍ତ ଚନ୍ଦ୍ରଶେଖର, ଗୌରୀଶଙ୍କର, ରାମଶଙ୍କର, ଫକୀର ମୋହନ, ମଧୁସୂଦନ, ବାସୁଦେବ ସୁଢ଼ଳଦେବ, ଗଙ୍ଗାଧର, ନନ୍ଦକିଶୋର ବଳ, ବାରିଷ୍ଟର ମଧୁସୂଦନ ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ, ଗୋବିନ୍ଦ ରଥ, ବିଶ୍ୱନାଥ କର, ଗୋପାଳ ଚନ୍ଦ୍ର ପ୍ରହରାଜ, ନନ୍ଦ କିଶୋର ଦାସ, ବିଚ୍ଛନ୍ଦ ପଟ୍ଟନାୟକ, ବୈକୁଣ୍ଠ ନାଥ ଦେ, ନୀଳମଣି ବିଦ୍ୟାରତ୍ନ, ଶ୍ରୀରାମଚନ୍ଦ୍ର ଭଞ୍ଜଦେବ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ପାରଳା ଗଜପତି କୃଷ୍ଣଚନ୍ଦ୍ର ଭଞ୍ଜ ଦେବ ପ୍ରମୁଖ ଓଡ଼ିଆ ଜନନୀର ବର ପୁତ୍ରଗଣ।

ରାଧାନାଥ ଥିଲେ ଜଣେ ଗଭୀର ଅଧ୍ୟବସାୟୀ ତଥା ପ୍ରତିଭାବାନ୍ ବ୍ୟକ୍ତି। ବହୁ ଭାଷାବିତ୍ ପଣ୍ଡିତ କବି ରାଧାନାଥ ଥିଲେ ବହୁ ଶାସ୍ତ୍ରଦର୍ଶୀ। ସେ ଇଂରାଜୀ, ଗ୍ରୀକ୍, ସଂସ୍କୃତ, ବଙ୍ଗଳା, ହିନ୍ଦୀ ସାହିତ୍ୟକୁ ଗଭୀର ଭାବେ ଅନୁଧ୍ୟାନ କରିଥିଲେ। ସେ ପ୍ରାଚ୍ୟ ଜଗତର ବାଲ୍ମୀକି, ବ୍ୟାସ, ଭବଭୂତି, କାଳିଦାସ, ଶ୍ରୀହର୍ଷ, ସାରଳା ଦାସ, ଉପେନ୍ଦ୍ର ଭଞ୍ଜ, ମାଇକେଲ ମଧୁସୂଦନ, ପ୍ରେମଚାନ୍ଦ ଓ ପାଶ୍ଚାତ୍ୟ ଜଗତର ହୋମର, ଭର୍ଜିଲ, ଦାନ୍ତେ, ମିଲଟନ, ସ୍ପେନସର୍, ବାଇରନ୍, ସ୍କଟ, ଟେନିସନ୍, ଓ୍ୱାର୍ଡ଼ସ୍‌ଓ୍ୱାର୍ଥ, ସେକସ୍‌ପିଅର, ଓଭିଡ଼ ପ୍ରଭୃତିଙ୍କ ସାହିତ୍ୟ ରାଜିକୁ ଗଭୀର ଭାବେ ଅଧ୍ୟୟନ ପୂର୍ବକ ସେମାନଙ୍କ ଭାବରାଜିକୁ ଆହରଣ କରିବା ସହ ନିଜ କାବ୍ୟାବଳୀରେ ତାହା ଯଥାଯଥ ଭାବେ ପ୍ରୟୋଗ କରି ଯାଇଛନ୍ତି।

କେଦାର ଗୌରୀ (୧୮୮୫), ଚନ୍ଦ୍ରଭାଗା (୧୮୮୬), ଉଷା (୧୮୮୮) ନନ୍ଦିକେଶ୍ୱରୀ (୧୮୮୮), ପାର୍ବତୀ (ଅସଂପୂର୍ଣ୍ଣ ୧୮୯୧) ଏହି ପାଞ୍ଚଗୋଟି କାବ୍ୟ ରାଧାନାଥଙ୍କର ରୋମାଣ୍ଟିକ୍ କାବ୍ୟ। ଏଗୁଡ଼ିକ କବି ପ୍ରତିଭାର ଜ୍ୱଳନ୍ତ ସ୍ୱାକ୍ଷର।

୧୮୮୦-୯୦ ମସିହା ପର୍ଯ୍ୟନ୍ତ କବି-ପ୍ରତିଭାର ବିକାଶ ସମୟ। ବିଦେଶୀ କଥାବସ୍ତୁର ଆହରଣ, ଏ ଦେଶ ଉପାଦାନ ସହ ସାମ୍ୟ ଅନୁସନ୍ଧାନ ଓ ସାର୍ଥକ ସମୀକରଣ ରାଧାନାଥଙ୍କ କଳା-କୁଶଳତା ବୋଲି ଡଃ ନଟବର ସାମନ୍ତରାୟ ମତ ପ୍ରକାଶ କରିଛନ୍ତି। ଗ୍ରୀକ୍ ସାହିତ୍ୟର କାହାଣୀକୁ ସେ ଓଡ଼ିଶା ମାଟିରେ ଏପରି ପ୍ରୋଥିତ କରିଛନ୍ତି ଯେ ତାହା ସହଜରେ ବିଦେଶୀ କାହାଣୀ ବୋଲି ବାରି ହୁଏ ନାହିଁ। ଏହି ପାଞ୍ଚୋଟି କାବ୍ୟ ପଢ଼ିଲେ ଜଣାଯାଏ ''ରାଧାନାଥ ହେଉଛନ୍ତି ରୋମାନ୍ କବି ଓଭିଡ଼ଙ୍କର ଏକ ଓଡ଼ିଆ ସଂସ୍କରଣ ମାତ୍ର'' ବୋଲି ଡଃ ନଟବର ସାମନ୍ତରାୟ ମଧ କହିଛନ୍ତି।

ରାଧାନାଥ କାହାଣୀ ନିର୍ବାଚନ କରି ସାରିବା ପରେ ତାହା ସହିତ ଓଡ଼ିଶାର ଇତିହାସ, ଭୌଗୋଳିକ ସ୍ଥାନ ସହ ନିବିଡ଼ ଭାବେ ସଂଯୁକ୍ତ କରି ଦେଇଛନ୍ତି। ଇତିହାସ, ଭୂଗୋଳ ଓ ଗଣିତ ଶିକ୍ଷକ– କବି ରାଧାନାଥଙ୍କ ଲେଖନୀ ମୁନରେ ଓଡ଼ିଶାର ଇତିହାସ ଓ ଭୂଗୋଳ ରସୋତ୍ତୀର୍ଣ୍ଣ ହୋଇ କାବ୍ୟ ସାହିତ୍ୟ ମଧରେ ପ୍ରଥମେ ଅନୁପ୍ରବେଶ କରିଛନ୍ତି। କାହାଣୀକୁ ସୁହାଇବା ଭଳି ଓଡ଼ିଶାର ପୁରାଣ ଓ କିମ୍ବଦନ୍ତୀକୁ ଅତ୍ୟନ୍ତ ଚାତୁର୍ଯ୍ୟପୂର୍ଣ୍ଣଭାବେ ମିଶାଇ ଦେଇଛନ୍ତି। ସ୍ଥଳ ବିଶେଷରେ ପରିବର୍ତ୍ତନ, ପରିବର୍ଦ୍ଧନ ଓ ପରିହାର ମଧ କରିଛନ୍ତି। ଏହି କ୍ଷେତ୍ରରେ କବି Sir Walter Scottଙ୍କୁ ଅନୁସରଣ କରିଛନ୍ତି। ରାଧାନାଥ ଓଡ଼ିଶାର ଇତିହାସ ଖୋଜିବାରେ ଷ୍ଟର୍ଲିଂ, ହଣ୍ଟର, ପ୍ୟାରୀମୋହନ ଆଚାର୍ଯ୍ୟ ଓ ମାଦଳାପାଞ୍ଜିକୁ ଅନୁସରଣ କରିଛନ୍ତି।

**କେଦାରଗୌରୀ –** ପ୍ରେମମୂଳକ କାବ୍ୟରେ କବି ରାଧାନାଥ Ovidଙ୍କର Pyramus and Thesbey (ପିରାମସ୍-ଥିସ୍‌ବି) କାହାଣୀଟିକୁ ଅବିକଳ ଭାବରେ ଗ୍ରହଣ କରି ନେଇଛନ୍ତି। ଭୁବନେଶ୍ୱରର ପ୍ରସିଦ୍ଧ କେଦାରଗୌରୀ ପୀଠରେ ଏହି କରୁଣ ପ୍ରେମକାହାଣୀକୁ ସଂସ୍ଥାପିତ କରିଛନ୍ତି। ଆମର ପୁରାଣ ପ୍ରସିଦ୍ଧ କେଦାରେଶ୍ୱର ମହାଦେବ ଓ ଗୌରୀ ଠାକୁରାଣୀଙ୍କୁ ପ୍ରେମିକ-ପ୍ରେମିକା ଭାବେ ଉପସ୍ଥାପିତ କରିଥିବାରୁ ଜାତୀୟତା ବିରୋଧୀ ଭାବେ ରାଧାନାଥ ଲାଞ୍ଛିତ ହୋଇଛନ୍ତି। କିନ୍ତୁ ରାଧାନାଥ ଥିଲେ ପ୍ରକୃତିର କବି, ସୁନ୍ଦରର ଉପାସକ ତଥା Art for Arts Sakeର କବି। କଳା ଅନୁରୋଧରେ ସେ ସଂଭ୍ରମତାକୁ ଭୁଲି ଯାଇଛନ୍ତି। ଅବଶ୍ୟ ଓଭିଡ଼ଙ୍କର କାହାଣୀଟିକୁ ଅବଲମ୍ବନ କରି ଚସର 'The legend of good women' ଓ ସେକସ୍‌ପିଅର 'Mid Summers Nights dream' ନାଟକ ରଚନା କରିଅଛନ୍ତି। କେଦାରଗୌରୀ ପ୍ରକାଶ ପରେ ଜଣେ ସମାଲୋଚକ 'ସଂସ୍କାରକ' ପତ୍ରିକାରେ କଟୁ ମନ୍ତବ୍ୟ ଦେଇ ଲେଖିଥିଲେ ''ରାଧାନାଥଙ୍କ କୁଶଳତା ଭେଦ କରିବା ଟୀକାକାରଙ୍କ ପିତାମହଙ୍କ ସାଧ୍ୟ ନୁହେଁ। କାରଣ ସେକସ୍‌ପିଅରଙ୍କ ମୃତ୍ୟୁର ଏତେକାଳ ପରେ ଓଡ଼ିଶାରେ ରାଧାନାଥ ଅବତାର ରୂପରେ ପୁନର୍ବାର ଜନ୍ମଗ୍ରହଣ କରିଛନ୍ତି।''

**'ଚନ୍ଦ୍ରଭାଗ'** କାବ୍ୟଟିକୁ ରାଧାନାଥ ଓଭିଡ଼ଙ୍କର Metamorphosis ପୁସ୍ତକର ଆପୋଲୋ ଓ ଡ଼ାଫନୀ (Appolo and Dapheny) ପ୍ରେମକାହାଣୀକୁ ଉପଜୀବ୍ୟ

କରି ଲେଖିଛନ୍ତି। ସୂର୍ଯ୍ୟଦେବଙ୍କ ଚନ୍ଦ୍ରଭାଗା ପ୍ରତି ପ୍ରେମାକର୍ଷଣ ଏଥିରେ ବର୍ଣ୍ଣିତ। ପୁରୀଠାରୁ କୋଣାର୍କ ପର୍ଯ୍ୟନ୍ତ ବେଳାଭୂମି ଏହି ଘଟଣାର ପରିସରଭୁକ୍ତ। ରୋମାଣ୍ଟିକ କବି ରାଧାନାଥ ସୁନ୍ଦରୀ ଚନ୍ଦ୍ରଭାଗାର ରୂପ ବର୍ଣ୍ଣନାରେ ନିଜ ସୌନ୍ଦର୍ଯ୍ୟ ପିପାସୁ ଦୃଷ୍ଟିଭଙ୍ଗୀର ପରିଚୟ ଦେଇ ଲେଖିଛନ୍ତି –

ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର
ବିନ୍ଦୁ ରମଇ ଆଖି,
ନୁହଇ ସିନ୍ଦୂର ରହିଛି
ସୂର ହୃଦୟ ଲାଖି।

ସେହିପରି ରସିକ କବି ରାଧାନାଥ ପ୍ରେମର ମହନୀୟତା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି –

ଦାରୁଭେଦ କ୍ଷମ ଭ୍ରମର ପଶି କମଳ କୋଳେ
ପାଶୋରେ ଆପଣା ବିକ୍ରମ ପ୍ରେମ-ମୋହନ-ଭୋଳେ।
×  ×  ×
କିନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ କେବେ ରସିକ ଛାଡ଼େ
ମଧୁ ଥିଲେ ପୁଷ୍ପେ ଯତନେ ଖୋଜି ମଧୁପ କାଢ଼େ।

ସୂର୍ଯ୍ୟଦେବତାଙ୍କୁ ସ୍ତ୍ରୈଣ ପୁରୁଷ ଭାବେ ଚିତ୍ରଣ କରିଥିବାରୁ ରାଧାନାଥଙ୍କ କାବ୍ୟକଳାର ଅନୁକାରୀ ଓ ପ୍ରଶଂସକ ଉଗ୍ର ଜାତୀୟବାଦୀ ପଣ୍ଡିତ ନୀଳକଣ୍ଠ 'କୋଣାର୍କେ' କାବ୍ୟରେ ବିଷୋଦ୍‌ଗାର କରି ଲେଖିଛନ୍ତି –

ଚନ୍ଦ୍ରହାସେ ବାଳା ଆସିବେ ଚନ୍ଦ୍ରଭାଗା ସୁନ୍ଦରୀ
ଯବନାନୀ-କବି ନାୟିକା ନାଟିତକ ଆଚରି।
ବିଦେଶୀ ସୁମନ୍ୟୁ ଆସିବେ ତିଳେ ନାଚଣା-ଖେଳେ
ଚାହୁଁ ଚାହୁଁ ପୁଣି ମିଶିବେ ନୀଳ-ଜଳଧି-ଜଳେ।

**'ନନ୍ଦିକେଶ୍ୱରୀ'** କାବ୍ୟଟିର ପରିକଳ୍ପନା ପଶ୍ଚାତ୍‌ରେ ଗ୍ରୀକ୍ ପୁରାଣର ପ୍ରେମକାହାଣୀ 'ସିଲା' (Scylla) ଓ ଓଭିଡ଼ଙ୍କର Metamorphosisର ସିଲାନିସସ୍ କାହାଣୀ. ବାଇରନ୍‌ଙ୍କର siege of corinth ଓ ଉଇଲିଅମ୍ ମୋରିସ୍‌ଙ୍କର 'Atalanta's race'ର ଅନୁସରଣ କରିଥିବା କଥା ବିଦ୍ୟମାନ। ରାଜା ସୁବର୍ଣ୍ଣକେଶରୀଙ୍କ ସୁନ୍ଦରୀ କନ୍ୟା ନନ୍ଦିକାର ପ୍ରେମ ନିବେଦନ ଓ ଚୋଡ଼ଗଙ୍ଗଦେବଙ୍କର ପ୍ରତ୍ୟାଖ୍ୟାନ ଘଟଣା ନନ୍ଦିକେଶ୍ୱରୀ କାବ୍ୟର ବିଷୟବସ୍ତୁ। ନନ୍ଦିକାର ଜୀବନ ଏକ ଅସମାପ୍ତ କରୁଣ କାବ୍ୟ। ପ୍ରେମରାଜ୍ୟରେ ନାରୀର ସ୍ୱାଧୀନତାକୁ କବି ଉଦ୍‌ଘୋଷଣ କରି ଲେଖିଛନ୍ତି -

ସୁତାରେ ପିତାଙ୍କ ପୂର୍ଣ୍ଣ ଅଧିକାର
ଭଣେ ଯେଉଁ ଶାସ୍ତ୍ର ତାକୁ ନମସ୍କାର।

ଭୁଦେବବାବୁଙ୍କଠାରୁ ଶୁଣିଥିବା ଦର୍ପଣୀ ରାଜଜେମାଙ୍କର ଓଡ଼ିଶା ଯୁବରାଜଙ୍କୁ ପ୍ରେମଭିକ୍ଷା ଓ ପ୍ରତ୍ୟାଖ୍ୟାନ ଜନିତ ଆତ୍ମହତ୍ୟାର କିମ୍ବଦନ୍ତୀକୁ ନନ୍ଦିକେଶ୍ୱରୀରେ ପରିବେଷଣ କରିଥିବା କଥା ରାଧାନାଥ ଯାହା କହିଛନ୍ତି ସେଥିରେ ସତ୍ୟତା ନାହିଁ। ସେ ଓଭିଡ଼ଙ୍କୁ ହିଁ ସର୍ବଦା ଅନୁସରଣ କରିଛନ୍ତି। ପିତାଙ୍କର ଶତ୍ରୁ ଚୋଡ଼ଗଙ୍ଗଙ୍କୁ ନନ୍ଦିକାର ପ୍ରେମଭିକ୍ଷା ଏକାନ୍ତ ଅସମ୍ଭବ। କବିଙ୍କର ଏହି ବିଜାତୀୟ ଚିନ୍ତାଧାରା ବିରୁଦ୍ଧରେ ନୀଳକଣ୍ଠ ଦାସ ଆକ୍ଷେପ କରି 'କୋଣାର୍କେ' କାବ୍ୟରେ ଲେଖିଛନ୍ତି –

କବିଙ୍କ କେଦାର ଗଉରୀ ଆସି ଯବନ ଦେଶୁ
ନାଚିଯିବେ ଡିଲେ ସ୍ୱପନେ ତବ ଅଭ୍ୟାସ ବଶୁଁ।
ସୁବର୍ଣ୍ଣ ଦୁହିତା ବରିବେ ଚୋଡ଼ଗଙ୍ଗ-ରାଜନ
କେରଳ-ମହଲେ ଉତ୍କଳ-ଭେରୀ ଶୁଭିବ ପୁଣ।
ଘରଛାଡ଼ି କିମ୍ବା ଯିବେ ସେ ବାର-ବାଳା ନନ୍ଦିକା
ସହକାର-ଦ୍ରୁମ-ଗହନେ ଭେଦି କ୍ଷୀଣ ଚନ୍ଦ୍ରିକା।
କଉସୁଲାଗାଙ୍ଗ-ଧଉଳି ଏଇ ନୟନେ ନାଚେ
କବିଙ୍କି ସୁମରି ବିରାଗେ ମୁଖ ଫେରାଅ ପଛେ।

ନନ୍ଦିକେଶ୍ୱରୀର ସମାଲୋଚନା କରି ଜଣେ ସମାଲୋଚକ 'ସଂସ୍କାରକ' ପତ୍ରିକାରେ ଲେଖିଛନ୍ତି – "ସେହି କଳ୍ପନାଶକ୍ତି ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ, ନୀଚ ଓ କଦର୍ଯ୍ୟ ଆଖ୍ୟାୟିକାମାନଙ୍କର ଜନ୍ମଦାତ୍ରୀ ଅଟେ।"

ଏହିସବୁ ସମାଲୋଚନାର ଶରବ୍ୟ ହୋଇ ରାଧାନାଥ ଭାରତୀୟ ପୁରାଣ ଓ ଆଖ୍ୟାୟିକାକୁ ଆଧାର କରି **'ଉଷା'** କାବ୍ୟ ରଚନା କରିଛନ୍ତି। ତଥାପି ଏହି କାବ୍ୟ ରଚନାରେ ଓଭିଡ଼ଙ୍କର 'ମେଟାମୋରଫମିସ୍' ଓ ଉଇଲିୟମ୍ ମୋରିସ୍‌ଙ୍କର Atlantas Raceକୁ ଅବଲମ୍ବନ କରିଛନ୍ତି। ଉଷା-ଜୟନ୍ତର ଦୌଡ଼ ପ୍ରତିଯୋଗିତାମୂଳକ ପ୍ରେମ-ପ୍ରଣୟ କାହାଣୀକୁ ଉପଜୀବ୍ୟ କରି ଏହା ରଚିତ। କେଦାରଗୌରୀଠାରୁ ଉଷା ପର୍ଯ୍ୟନ୍ତ ପ୍ରତ୍ୟେକ କାବ୍ୟ ପ୍ରଣୟମୂଳକ।

ଅସମ୍ପୂର୍ଣ୍ଣ **'ପାର୍ବତୀ'** କାବ୍ୟ ଯୋଗୁଁ ରାଧାନାଥ ଅଧିକ ଘୃଣିତ ଓ ନିନ୍ଦିତ ହୋଇଛନ୍ତି। ଏଥିରେ କାମୁକ ରାଜା ଗଙ୍ଗେଶ୍ୱରଦେବ ନିଜର କନ୍ୟା କୌଶଲ୍ୟାଙ୍କ ପ୍ରତି ପାପପ୍ରଣୟ ଓ ପରିଣତିରେ ସ୍ତ୍ରୀ ପାର୍ବତୀଙ୍କ ଦ୍ୱାରା ହତହେବା କଥା ବର୍ଣ୍ଣିତ ହୋଇଅଛି। ଏଥିରେ କବି ମାଦଳାପାଞ୍ଜି, ଆସ୍‌କାଇଲାସ୍‌ଙ୍କ 'ଆଗାମେନନ୍' ଓ ସେକସ୍‌ପିଅରଙ୍କ 'ହାମଲେଟ୍' ନାଟକର କାହାଣୀକୁ ଅବଲମ୍ବନ କରିଛନ୍ତି।

ମାଦଳାପାଞ୍ଜିରେ ଲେଖାଯାଇଛି ଦିନେ ରାଜା ପଣ୍ଡିତମାନଙ୍କୁ ପ୍ରଶ୍ନ କରିଥିଲେ 'ଯେ ଯେଉଁ ବୃକ୍ଷ ରୋପଇ, ସେ ତାହାର ଫଳ ଖାଅଇ କି ନା'। ପଣ୍ଡିତମାନେ ରାଜାଙ୍କର ଦୁରଭିସନ୍ଧି ଜାଣି ଉତ୍ତର ଦେଲେ 'ହଁ' ବୋଲି। ସେହିପରି ରାଜା ଜେମାମଣି କୌଶଲ୍ୟାକୁ ପ୍ରଶ୍ନ କରିଥିଲେ - "କହିବୁଟି ଜେମାମଣି, ଲାବଣ୍ୟ

ପ୍ରତିମା ଗ୍ରହଣ କରିବା ଅନ୍ୟପକ୍ଷେ ତା କି ମଣି ? ଏହାର ପ୍ରକୃତ ରହସ୍ୟ ନବୁଝି ଜେମା ଉତ୍ତର ଦେଇଥିଲେ ''ତହିଁ କେଉଁ ଦୋଷ ?''

ପିତା-କନ୍ୟାର କିମ୍ବା ମାତା-ପୁତ୍ରର ପ୍ରେମ କାହାଣୀ ଭାରତୀୟ ସାମାଜିକ ଜୀବନରେ ରୁଚି ବିଗର୍ହିତ କାର୍ଯ୍ୟ। କାମାସକ୍ତ ଅବସ୍ଥାରେ ଏହାର କ୍ୱଚିତ୍ ନିଦର୍ଶନ ମିଳିଲେ ହେଁ ସମାଜ ରୀତିନୀତି ଦ୍ୱାରା ଏହା ସମର୍ଥିତ ନୁହେଁ। 'ଜୈନ ହରିବଂଶ' ପୁରାଣରେ ବର୍ଣ୍ଣିତ ଅଛି ରାଜା ଦକ୍ଷ ନିଜ କନ୍ୟା ମନୋହାରୀକୁ ପତ୍ନୀରୂପେ ଗ୍ରହଣ କରିଥିଲେ। ଶତପଥ ବ୍ରାହ୍ମଣ, ଭାଗବତ ଓ ମତ୍ସ୍ୟପୁରାଣରେ ବର୍ଣ୍ଣିତ ଅଛି ବ୍ରହ୍ମା ନିଜ ମାନସକନ୍ୟା ସହ ଅବୈଧ ସମ୍ପର୍କ ରଖିଥିଲେ। କିନ୍ତୁ ପାଶ୍ଚାତ୍ୟ ସାହିତ୍ୟରେ ଏରୂପ ଜଘନ୍ୟ ପ୍ରେମ ବର୍ଣ୍ଣନା ବହୁତ ଦେଖିବାକୁ ମିଳିଥାଏ। ଓଭିଡ଼ଙ୍କ 'ମୀରା କାହାଣୀ' (ପିତା-କନ୍ୟା ପ୍ରେମ), ସଫୋକ୍ଲିସ୍‌ଙ୍କ 'ଓଡ଼ିପସ୍ ନାଟକ' (ମାତା-ପୁତ୍ର ପ୍ରେମ), ଶେଲିଙ୍କ 'ସେକ୍‌ସି ନାଟକ' (ପିତା-କନ୍ୟା ପ୍ରେମ), ବାଇରନ୍‌ଙ୍କ 'ପରସିଆନା' (ମାତା-ପୁତ୍ର ପ୍ରେମ) ପ୍ରଭୃତିରେ ଏହି ଜଘନ୍ୟ ପ୍ରେମଚିତ୍ର ଦେଖିବାକୁ ମିଳିଥାଏ।

ଗଙ୍ଗେଶ୍ୱରଦେବ ନିଜ କନ୍ୟାକୁ ଉପଭୋଗ ଓ ସେହି ପାପର ପ୍ରାୟଶ୍ଚିତ୍ତ ପାଇଁ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ଖନନ କିମ୍ବଦନ୍ତୀଟିକୁ JAABରେ କିଟୋ ଏବଂ ଓଡ଼ିଶା ଇତିହାସରେ 'ଷ୍ଟର୍ଲିଂ' ଉଲ୍ଲେଖ କରିଛନ୍ତି। ପାର୍ବତୀ କାବ୍ୟରେ କାମୁକ ଗଙ୍ଗେଶ୍ୱରଙ୍କର କନ୍ୟା ପ୍ରତି ପାପ-ଲାଳସା ପରେ ପୁତ୍ରବଧୂ ଅନ୍ନପୂର୍ଣ୍ଣା ପ୍ରତି ମଧ ଲୋଭାଶକ୍ତ ହୋଇଛନ୍ତି। ସ୍ନେହମୟୀ ଜନନୀ ପାର୍ବତୀ ତେଣୁ ସାଜିଛନ୍ତି ବିପ୍ଲବିଣୀ ଓ ଖଡ଼୍‌ଗଧାରିଣୀ। ସଂସାରର ଅଳୀକତା ସମ୍ବନ୍ଧରେ କବିଙ୍କର ଅମରବାଣୀ ଗୁଞ୍ଜରିତ ହୋଇଛି --

କେହି ରହି ନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ।

୧୮୬୬ ମସିହାର ଭାଷା ଆନ୍ଦୋଳନ ପରେ ପରେ ପାଠ୍ୟପୁସ୍ତକ ରଚନା ଓ ପତ୍ରପତ୍ରିକା ଜରିଆରେ ଓଡ଼ିଆ ସାହିତ୍ୟର ବିକାଶ ନିମିତ୍ତ ଆଧୁନିକ ଶିକ୍ଷିତ ଗୋଷ୍ଠୀ ତତ୍ପର ହୋଇ ଉଠିଥିଲେ। ସେ ସମୟର ମୁଷ୍ଟିମେୟ ସାହିତ୍ୟ ବିଷୟକ ପାଠ୍ୟପୁସ୍ତକ ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ମୂଳଦୁଆ ପତନ କରିଥିଲେ। ପାଠ୍ୟପୁସ୍ତକର ପ୍ରସାର ଓ ପ୍ରଚାର କ୍ଷେତ୍ରରେ ରାଧାନାଥଙ୍କର ପକ୍ଷପାତିତା ବିଚାରକୁ ନେଇ ତାଙ୍କ ବିରୁଦ୍ଧରେ ୧୮୮୦-୯୦ ମସିହା ପର୍ଯ୍ୟନ୍ତ ମସିଯୁଦ୍ଧ ଚାଲିଥିଲା। ସେତେବେଳକୁ ସେ ଥିଲେ ଢିଏଣ୍ଟ ଇନିସ୍‌ପେକ୍ଟର। ଧୂମକେତୁ, ସଂସ୍କାରକ, ଉତ୍କଳ ଦର୍ପଣ ଓ ଶିକ୍ଷାବନ୍ଧୁ ପତ୍ରିକାଗୁଡ଼ିକ ରାଧାନାଥଙ୍କୁ ସପକ୍ଷତା କରିଥିବାବେଳେ, ଉତ୍କଳ ଦୀପିକା, ବାଲେଶ୍ୱର ସମ୍ବାଦବାହିକା ପ୍ରଭୃତି ବିରୋଧ କରୁଥିଲେ।

ମାତ୍ର ୧୮୮୫-୯୦ ମସିହା ମଧ୍ୟରେ ରାଧାନାଥଙ୍କର ପ୍ରେମ-ପ୍ରଣୟମୂଳକ କେଦାରଗୌରୀ, ଚନ୍ଦ୍ରଭାଗା; ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ ପ୍ରଭୃତି ରୋମାଣ୍ଟିକ୍ କାବ୍ୟ ପ୍ରକାଶ ଲାଭକରି ଆଧୁନିକ କାବ୍ୟ ସାହିତ୍ୟର ଭିତ୍ତି ପ୍ରସ୍ତର ସ୍ଥାପନ କଲା। "ତେଣୁ ରାଧାନାଥ ହିଁ ଆଧୁନିକ ସାହିତ୍ୟର ସର୍ବଶ୍ରେଷ୍ଠ ବିନ୍ଧାଣୀ ଓ ତାଙ୍କ ସାହିତ୍ୟ ହିଁ ଆଧୁନିକ ସାହିତ୍ୟର ଯଥାର୍ଥ ଆଦ୍ୟ ପ୍ରତିନିଧି" ବୋଲି ଡକ୍ଟର୍ ନଟବର ସାମନ୍ତରାୟ ମତପ୍ରକାଶ କରିଛନ୍ତି।

କିନ୍ତୁ କେତେକ ସମାଲୋଚକ ଆଧୁନିକ ଯୁଗକୁ ରାଧାନାଥ ଯୁଗ ପରିବର୍ତ୍ତେ ଫକୀରମୋହନ ଯୁଗ ହେବା ଉଚିତ ବୋଲି ଦାବୀ କରିଆସୁଛନ୍ତି। କିନ୍ତୁ ଏହି ଯୁକ୍ତି ଅନ୍ଧସ୍ତାବକତା ବ୍ୟତୀତ ଅନ୍ୟକିଛି ନୁହେଁ। ଉଭୟେ ଭାଷାସୁରକ୍ଷା ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ। ଉଭୟ ମଧୁସୂଦନ ଓ ଫକୀରମୋହନଙ୍କ ସାହିତ୍ୟିକ ଦିଗ୍‌ଦର୍ଶକ ଥିଲେ ରାଧାନାଥ ଓ ସାହିତ୍ୟର ଅନୁଗାମୀ ଦ୍ୱୟଙ୍କ କବିତା ମଧ୍ୟ ସଂଶୋଧନ କରିଦେଉଥିଲେ। ରାଧାନାଥ କାବ୍ୟକାରର ଗୌରବରେ ମଣ୍ଡିତ ହେବା ବେଳକୁ ଫକୀରମୋହନ ଅନୁବାଦ ଓ ଗୀତିକବିତା ପ୍ରଣୟନ କରୁଥିଲେ। କିନ୍ତୁ ନୂତନ ଯୁଗ ଆନୟନରେ ପ୍ରଥମ ଓ ଅଗ୍ରଗଣ୍ୟ ଲେଖକ ହେଉଛନ୍ତି ରାଧାନାଥ।

ରାଧାନାଥ ଶିକ୍ଷାକ୍ଷେତ୍ରରେ ସର୍ବୋଚ୍ଚ ଆସନରେ ଅଧିଷ୍ଠିତ ହୋଇ ପାଠ୍ୟପୁସ୍ତକ ଜରିଆରେ ନିଜର ଆଧିପତ୍ୟ ବିସ୍ତାର କରି ନିଜ ଯୁଗକୁ ହିଁ ସୃଷ୍ଟି କରିଛନ୍ତି। ସେଥିଲାଗି ସେ ସମାଲୋଚିତ ହୁଅନ୍ତି। କିନ୍ତୁ ସେଥିପାଇଁ ପରିସ୍ଥିତି ଓ ପରିବେଶ ଅନେକ ପରିମାଣରେ ଦାୟୀ। ୧୮୯୭ ମସିହାରେ 'ଛମାଣ ଆଠଗୁଣ୍ଠ' ଓ ୧୮୮୯ରେ 'ରେବତୀ' ପ୍ରକାଶ ଲାଭ କରିବା ପରେ ଫକୀମୋହନଙ୍କୁ ସାହିତ୍ୟକ ସ୍ୱୀକୃତି ମିଳିଅଛି। ରାଧାନାଥ ଆଧୁନିକ ଯୁଗରେ ଯେପରି ପଦ୍ୟ ସାହିତ୍ୟର ଜନକ, ସେହିପରି ଫକୀରମୋହନ କଥାସାହିତ୍ୟର ଜନକ। ଏ କ୍ଷେତ୍ରରେ ଉଭୟ ସମାନ ଆସନର ଅଧିକାରୀ।

୧୮୯୨ ମସିହାରେ ରାଧାନାଥ ଇନିସପେକ୍ଟର ଓ ୧୯୦୧ରେ ପ୍ରୋଭିନ୍‌ସିଆଲ ସର୍ଭିସର ଶୀର୍ଷରେ ରହି ଯେତିକି ପ୍ରଶଂସିତ ହୋଇଛନ୍ତି, ସେତିକି ପରିମାଣରେ ସମାଲୋଚକମାନଙ୍କ ବିଷଦୃଷ୍ଟିରେ ପଡ଼ିଛନ୍ତି। କାରଣ ଜାତୀୟତା ବିରୋଧୀ ଚିତ୍ର, ବିଜାତୀୟ ପ୍ରେମର ବର୍ଣ୍ଣନା ତାଙ୍କୁ କଟୁ ଶରବ୍ୟର ସମ୍ମୁଖୀନ କରାଇଛି। ଇନ୍ଦ୍ରଧନୁ-ବିଜୁଳି (୧୮୯୩-୯୪) ପତ୍ରିକାଦ୍ୱୟର ବିବାଦରୁ ଏହା ସୃଷ୍ଟି ହୋଇଅଛି। ୧୮୭୧ ମସିହାରୁ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ ଓ ୧୮୮୦ ମସିହାରୁ ରାଧାନାଥ ସାହିତ୍ୟ ବିରୁଦ୍ଧରେ ଯେଉଁ ସ୍ୱର ଉତ୍‌ଥାନ ହୋଇଥିଲା, ତାହାର ଶୀର୍ଷ ପରିଣତି ଘଟିଥିଲା ଇନ୍ଦ୍ରଧନୁ ଓ ବିଜୁଳି କଳିରେ। ଏହି ବିବାଦର ଭଙ୍ଗା ପଡ଼ିଥିଲା ଯେତେବେଳେ ରାଧାନାଥ 'ଓଡ଼ିଆ ଓ ନବସମ୍ବାଦ' ପତ୍ରିକାରେ ନିଜର ସ୍ୱୀକାରୋକ୍ତି ପ୍ରକାଶ କରି ଲେଖିଥିଲେ "ଭଞ୍ଜ କବିଙ୍କୁ ମୁଁ ମୋହର ଏକତର ଶିକ୍ଷାଗୁରୁ ଜ୍ଞାନକରି ଆବାଲ୍ୟ ଭକ୍ତି କରି ଆସୁଛି। x x x ମୋହୋଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟ ଲେଖକ ଓଡ଼ିଶାରେ ବୋଧହୁଏ ଅଳ୍ପ ବାହାରିବେ।"

ଏହି ସାହିତ୍ୟିକ ବିବାଦ ଓ ଏକମାତ୍ର ପୁତ୍ର ଶଶୀଭୂଷଣଙ୍କ ରୋଗାକ୍ରାନ୍ତ ଅବସ୍ଥା ରାଧାନାଥଙ୍କ ମାନସିକ ସ୍ଥିତିକୁ ଦୋହଲାଇ ଦେଇଥିଲା। ସ୍ୱଭାବରେ ସେ ନିଜେ ଥିଲେ ରୋଗୀ। ରାଧାନାଥ ଓଡ଼ିଶା ଓ ଭାରତର ବିଭିନ୍ନ ପ୍ରାକୃତିକ ଶୋଭାସମ୍ପଦ ସ୍ଥାନ ଓ ତୀର୍ଥସ୍ଥାନ ପରିଭ୍ରମଣ କରିଥିଲେ। ଡଃ ନଟବର ସାମନ୍ତରାୟ ଲେଖିଛନ୍ତି – 'ପାର୍ବତୀ' ଓ 'ମହାଯାତ୍ରା ପରି ଦୁଇ ଶ୍ରେଷ୍ଠ ସୃଷ୍ଟି-ସମ୍ପଦ ମଧ୍ୟରେ 'ଚିଲିକା'ର ଆବିର୍ଭାବ। ମନେହୁଏ ଏହା ଯେପରି ଦୁଇଟି ସର୍ବୋଚ୍ଚ ପର୍ବତ ଭିତରେ ପ୍ରକୃତି ସମ୍ପଦ ପରିପୂର୍ଣ୍ଣ ଉଭୟଙ୍କ ସଂଯୋଗକାରୀ ଏକ ମନୋଜ୍ଞ ଉପତ୍ୟକା ମାତ୍ର।

ଓଡ଼ିଆ ସାହିତ୍ୟର ସର୍ବଶ୍ରେଷ୍ଠ ପ୍ରକୃତି କବି ରାଧାନାଥଙ୍କର **'ଚିଲିକା'** ହେଉଛି ଏକ ମନୋଜ୍ଞ ପୁଷ୍ପ-ସମ୍ଭାର। ବର୍ଣ୍ଣୋତ୍ସବମୟ ଚିଲିକାର ଚାରୁ ପ୍ରକୃତି କବିଙ୍କ ଲେଖନୀରେ ହୋଇଛି ବ୍ୟକ୍ତିତ୍ୱମୟୀ ଓ ଜୀବନ୍ତ। କେବଳ ଚିଲିକା କାହିଁକି ଓଡ଼ିଶାର ସୁରମ୍ୟ ପ୍ରକୃତି, ନଦନଦୀ, ପାହାଡ଼ ପର୍ବତ ସବୁକିଛି କବି ତୁଳିକାରେ ହୋଇଛନ୍ତି ଜୀବନ୍ତ ଓ ପ୍ରାଣମୟ।

ଚିଲିକା ହେଉଛି ରାଧାନାଥଙ୍କ ସୌନ୍ଦର୍ଯ୍ୟ-ପିପାସାର ଏକ ସାର୍ଥକ ନିଦର୍ଶନ। କାବ୍ୟ-ନାୟିକା ଚିଲିକାର ପ୍ରଚ୍ଛନ୍ନ କାବ୍ୟ-ନାୟକ ହେଉଛନ୍ତି କବି ନିଜେ। କବି ଓ ସମାଲୋଚକ ଡଃ. ମାୟାଧର ମାନସିଂହ 'କବି ଓ କବିତା' ପୁସ୍ତକରେ ଲେଖିଛନ୍ତି ଚିଲିକାରେ ''କବିର ଆତ୍ମା ପ୍ରକୃତିର ଆତ୍ମାରେ ଲୟ ଭଜିଅଛି।'' ପ୍ରକୃତି କବି ରାଧାନାଥଙ୍କ ସୂକ୍ଷ୍ମ ପ୍ରକୃତି ପର୍ଯ୍ୟବେକ୍ଷଣକୁ ଉପଲକ୍ଷ୍ୟ କରି ଡଃ. ମାନସିଂହ ପୁଣି ଉଲ୍ଲେଖ କରିଛନ୍ତି-''ପ୍ରତିଭାର ଦିବ୍ୟାଞ୍ଜନ ଘେନି ରାଧାନାଥ ଅବତୀର୍ଣ୍ଣ ହେଲେ ଏବଂ ଉତ୍କଳ ପ୍ରକୃତିର ଅଜ୍ଞାତରୂପ ନିଜେ ଦେଖି ସମସ୍ତଙ୍କୁ ଦେଖାଇ ଦେଇଗଲେ। × × × ରାଧାନାଥଙ୍କ ଏହି ପ୍ରକୃତି ପୂଜାହିଁ ତାଙ୍କୁ ଉତ୍କଳ-ସାହିତ୍ୟରେ ବିଶିଷ୍ଟ ଆସନ ଦାନ କରିବ। ଏ କ୍ଷେତ୍ରରେ ସେ ଏକେଶ୍ୱର।''

'ଉତ୍କଳ-କମଳା ବିଳାସ-ଦୀର୍ଘିକା – ମରାଳ-ମାଳିନୀ ନୀଳାମ୍ବୁ ଚିଲିକା'କୁ କବି ସଖୀରୂପେ ସମ୍ବୋଧନ କରିବା ସହ ଏତେ ନିଜର କରିପାରିଥିଲେ ଯେ, ସେ ଲେଖିଛନ୍ତି –

ସ୍ନିଗ୍ଧ ରୂପ ତୋର ଚିତ୍ତ ଉଲ୍ଲାସକ
ସୁମଧୁର ଦ୍ୱୈତ-ଭାବର ଦ୍ୟୋତକ
× × ×
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦର ପଣର ଚିରନ୍ତନ ରୀତି
ସୁନ୍ଦର ତୃପ୍ତିରେ ଅବସାଦ ନାହିଁ
ଯେତେ ଦେଖିଲେହେଁ ନୂଆ ଦିଶୁଥାଇ

ଚିଲିକା କାବ୍ୟରେ କବି କାଳିଦାସ, ଭବଭୂତି, ମାଘ, Wordsworth, Keats, Shelley, Tennyson, Arnoldପ୍ରଭୃତିଙ୍କ ପଦାଙ୍କ ଅନୁସରଣ କରିଥିଲେହେଁ ନିଜର ପ୍ରକୃତିପ୍ରାଣତା, ଐତିହାସିକତା, ବହୁଶାସ୍ତ୍ରଦର୍ଶିତା, ପୌରାଣିକତା ସହ ନିଜ ମୌଳିକ କବି-ପ୍ରତିଭାର ଅମର ସ୍ୱାକ୍ଷର ରଖିଯାଇଛନ୍ତି।

ପୁରାଣ ଓ ଇତିହାସ ଆଧାରିତ **ମହାଯାତ୍ରା** ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ମହାକାବ୍ୟ। ଏହାର ପରିକଳ୍ପନା ୩୦ଟି ସର୍ଗରେ ହେବାକୁ ଥିବାବେଳେ ମାତ୍ର ଆଠଗୋଟି ସର୍ଗରେ ଏହା ଅସଂପୂର୍ଣ୍ଣ ଅବସ୍ଥାରେ ରହିଯାଇଛି। କିନ୍ତୁ ଏହା ରାଧାନାଥଙ୍କର ସର୍ବଶ୍ରେଷ୍ଠ କୃତି। ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ ପ୍ରସଙ୍ଗ ଏଥିରେ ବର୍ଣ୍ଣିତ। ଅମିତ୍ରାକ୍ଷର ଛନ୍ଦରେ ରଚିତ ଏହି ମହାକାବ୍ୟରେ ଭାରତର ଇତିହାସ ଓ ପୁରାଣ ପରିପ୍ରେକ୍ଷୀରେ ଜାତୀୟ ଅଧଃପତନର ଚିତ୍ର ପ୍ରଦାନ କରାଯାଇଅଛି।

ଏହି ମହାକାବ୍ୟଟି ମୁଖ୍ୟତଃ ମିଲଟନ୍‌ଙ୍କ Paradise Lost ଅବଲମ୍ବନରେ ରଚିତ ହେଲେହେଁ ଏଥିରେ ହୋମର, ଭର୍ଜିଲ, ଦାନ୍ତେ, ମିଲଟନ୍, ସ୍ପେନ୍‌ସର, ବାଇରନ, ସ୍କଟ, ଟେନିସନ ତଥା ବାଲ୍ମୀକି, ବ୍ୟାସ, କାଳିଦାସ, ଭବଭୂତି, ଶ୍ରୀହର୍ଷ, ମାଇକେଲ ମଧୁସୂଦନ, ପ୍ରେମଚାନ୍ଦ, ସାରଳା ଦାସ, ଉପେନ୍ଦ୍ରଭଞ୍ଜଙ୍କ ପଦଧ୍ୱନି ପଡ଼ିଅଛି। ପ୍ରାଚ୍ୟ-ପାଶ୍ଚାତ୍ୟ କାବ୍ୟଶୈଳୀର ସୁସମନ୍ୱୟ ଘଟିଛି ଏହି ମହାକାବ୍ୟରେ। କବିର ପାଣ୍ଡିତ୍ୟ, ପ୍ରତିଭା ଓ ମୌଳିକତାର ପ୍ରତିଫଳନ ଏଥିରେ ଘଟିଅଛି।

ଜାତୀୟବାଦୀ ରାଧାନାଥ ତୀର୍ଥଯାତ୍ରା ବ୍ୟପଦେଶରେ ବହିର୍ଗତ ପାଣ୍ଡବ-ମାନଙ୍କୁ ଓଡ଼ିଶାର ପବିତ୍ର ମାଟି ଶ୍ରୀକ୍ଷେତ୍ର, କୋଣାର୍କ ଓ ସପ୍ତଶଯ୍ୟାକୁ ଆଣି ବୁଲାଇଛନ୍ତି। ପାର୍ବତୀ, ଚିଲିକା ଓ ମହାଯାତ୍ରାରେ ସଂସାର-ବିରାଗୀ ରାଧାନାଥ ବିଷାଦବାଦୀ ହୋଇ ପଡ଼ିଛନ୍ତି। ତାଙ୍କର ଜୀବନ-ଦର୍ଶନ ଏହି ସବୁ କାବ୍ୟରେ ହୋଇଛି ପ୍ରତିଫଳିତ। କବି ରାଧାନାଥ ଥିଲେ ଜଣେ ଅନୁଭୂତିସିଦ୍ଧ ସଂସାରୀ ଓ ଦୁଃଖବାଦୀ ଦାର୍ଶନିକ। ସେ ଲେଖିଛନ୍ତି :—

ଚିରହାହାମୟ ଏ ଛାର ଜୀବନ
ଜୀବନ ନୁହଇ ଜୀବନ୍ତ ମରଣ। (ଚିଲିକା)
× × ×
ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ
ମାଟିର ଏ ଘଟ ନିଶ୍ଚେ ମିଶିବ ମାଟିରେ। (ମହାଯାତ୍ରା)

ମଧୁର ହାସ୍ୟ, ବ୍ୟଙ୍ଗ ଓ କଟାକ୍ଷର ଏକ ଜ୍ୱଳନ୍ତ ଆଲେଖ୍ୟ ହେଉଛି **'ଦରବାର'** କାବ୍ୟ। ଜାତୀୟବାଦୀ ରାଧାନାଥ ଏଥିରେ ଇଂରେଜ ଶାସନ ବ୍ୟବସ୍ଥା, ସାମାଜିକ ଦୋଷତ୍ରୁଟି ଓ ଉପାଧି ବ୍ୟାଧିର ଜ୍ୱଳନ୍ତ ଚିତ୍ର ଦେଇଛନ୍ତି। ଇଂରେଜ କବି Drydenଙ୍କ ପ୍ରଭାବ ଏଥିରେ ସ୍ପଷ୍ଟ। ସମାଜିକ ସଂସ୍କାର କାମନା ଏଥିରେ ମୁଖ୍ୟ ଲକ୍ଷ୍ୟ। ଉପାଧି ବ୍ୟାଧିରୁ ମୁକ୍ତିଲାଭ କରି ନୀତିମୟ ଆଦର୍ଶ ଜୀବନଯାପନ କରିବା ପାଇଁ ନୀତିନିଷ୍ଠ ରାଧାନାଥ ଲେଖିଛନ୍ତି -

ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି
ଧର୍ମ ଏକା ସିନା ମହତ ପଣିଆ
ଆଉ ବଡ଼ପଣ ଅଢ଼େଇ ଦିନିଆ ।

୧୮୯୪ – ୯୫ ମସିହାରେ ବାରବାଟୀ ଦୁର୍ଗ ପରିସରରେ ଇଂରେଜ ସରକାର ତାଙ୍କର ଭିଣୋଇ ଗୋବିନ୍ଦବଲ୍ଲଭ ରାୟଙ୍କୁ 'ରାୟବାହଦୂର' ଓ ସାମନ୍ତ ଚନ୍ଦ୍ରଶେଖରଙ୍କୁ (ପଠାଣୀ ସାମନ୍ତ) 'ମହାମହୋପାଧ୍ୟାୟ' ଉପାଧିରେ ଭୂଷିତ କରିଥିଲେ । ଇଂରେଜ ଦରବାରର ମିଥ୍ୟା ଆଭିଜାତ୍ୟପୂର୍ଣ୍ଣ ଆଡ଼ମ୍ବର ଚିତ୍ର ଦେବା ସହ କବି ଗୋଟିଏ ଅବକ୍ଷୟୀ ଜାତିର ପରାଧୀନ ମନୋବୃତ୍ତିକୁ ଦୃଢ଼ଭାବେ ସମାଲୋଚନା କରିଛନ୍ତି । ସଂସାରର ନଶ୍ୱରତା ପ୍ରତି ଏଥିରେ ସଂକେତ ରହିଅଛି । ପଠାଣି ସାମନ୍ତଙ୍କ ପ୍ରତି ସମ୍ମାନରେ ଅବହେଳା ପ୍ରଦର୍ଶିତ ହୋଇଥିବାରୁ କବି କଟାକ୍ଷ କରି ଲେଖିଛନ୍ତି –

ମୋତି ମୂଲ୍ୟ କାହୁଁ ଜାଣିବ ଶବର
ମୋତି ଫିଙ୍ଗି କରେ ଗୁଞ୍ଜାରେ ଆଦର ।

ଯଯାତି ଓ ଲଳିତାର ଗୁପ୍ତରୋଗ-ପ୍ରଣୟକୁ ଆଧାର କରି **'ଯଯାତିକେଶରୀ'** କାବ୍ୟଟି ରଚିତ । ଯଯାତିଙ୍କର ଓଡ଼ିଶା ଆଗମନ ଓ ଯାଜପୁରରେ ପ୍ରଥମ ରାଜଧାନୀ ସ୍ଥାପନ ଏହି ଐତିହାସିକ ଭିତ୍ତି ଉପରେ ଶିଖଣ୍ଡିନୀର ପୁରୁଷତ୍ୱ ଲାଭ ରୂପକ ପୌରାଣିକ ଆଖ୍ୟାୟିକା ଅବଲମ୍ବନରେ ଏହାର ପରିକଳ୍ପନା କରାଯାଇଛି । ଏଥିରେ କବି 'ଚୌର ପଞ୍ଚାସିକା' ଓ ବିଦ୍ୟାସୁନ୍ଦରଙ୍କ କାବ୍ୟକୁ ଅନୁସରଣ କରିଛନ୍ତି । ଊନବିଂଶ ଶତାବ୍ଦୀରେ ସାମାଜିକ ଅଧଃପତନର କଥା ଏଥିରେ ରୂପଲାଭ କରିଅଛି । ଚିଲିକା ଓ ମହାଯାତ୍ରା ପରି ଦ୍ୟୁତିସମ୍ପନ୍ନ କାବ୍ୟ ରଚନା ପରେ ଏବଂ ପୂର୍ବ ବର୍ଣ୍ଣିତ ପାଞ୍ଚଗୋଟି ରୋମାଣ୍ଟିକ କାବ୍ୟ ଲେଖି ଉର୍ଦ୍ଧିତ ହେବା ପରେ ଦରବାର ଓ ଯଯାତିକେଶରୀ କାବ୍ୟରଚନା ରାଧାନାଥଙ୍କ ପ୍ରତିଭା ବିପର୍ଯ୍ୟୟର ସୂଚନା ଦିଏ ।

କେଦାରଗୌରୀଠାରୁ ଆରମ୍ଭ କରି ଯଯାତିକେଶରୀ ପର୍ଯ୍ୟନ୍ତ ନଅଗୋଟି କାବ୍ୟ ରଚନା ବ୍ୟତୀତ ରାଧାନାଥଙ୍କର କ୍ଷୁଦ୍ର ରଚନାଗୁଡ଼ିକ ହେଉଛି ତିନିବନ୍ଧୁ, ବାଣହରଣ, ଏକାଗ୍ରତା, ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ, ପ୍ରତାପରୁଦ୍ରଦେବ, ଶିବାଜୀଙ୍କ ଉତ୍ସାହ ବାକ୍ୟ, ସତ୍ୟବାଦୀ, ଫୁଲରାଣୀ, ଉତ୍କଳ ସାହିତ୍ୟର ଉନ୍ନତି, ଉତ୍କଳ ରଚନା, ଟୀପାଖାତା, ଆତ୍ମକଥାର କିୟଦଂଶ ପ୍ରଭୃତି ।

## ରାଧାନାଥ ସାହିତ୍ୟ ଏକ ସମୀକ୍ଷାୟନ :

ଊନବିଂଶ ଶତାବ୍ଦୀରେ ଭାରତବର୍ଷରେ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜନଜାଗରଣ ତଥା ଓଡ଼ିଶାରେ ତାହାର ପ୍ରଭାବ ପ୍ରଭୃତିର ପାଣିପାଗ ସହ ରାଧାନାଥ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ସେ ଓଡ଼ିଆ ସାହିତ୍ୟରେ ପ୍ରଥମ କରି ତାହାର

ସଦ୍‌ବିନିଯୋଗ କରିଯାଇଛନ୍ତି। ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ହୋଇ ସୁଦ୍ଧା ସେ ନିଜର ଜାତୀୟବାଦୀ ଚେତନାକୁ ପରିପ୍ରକାଶ କରିଅଛନ୍ତି। କବି ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ 'ଶିବାଜୀଙ୍କ ଉତ୍ସାହବାଣୀ' ଓ 'ଅମର୍ଷୀ ବାଣୀ' କବିତାରେ ଲେଖିଛନ୍ତି –

ଏ ଭାରତଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସରି ଏହାର
ଅମୂଲ୍ୟ ଦୁର୍ଲଭ ରତନର ଖଣି
ସବୁଦେଶ ମଧ୍ୟେ ଏ ଦେଶ ସାର।
(ଶିବାଜୀଙ୍କ ଉତ୍ସାହବାଣୀ)

× × ×

କଳ୍ପଲତା ମୂଳେ ବସି ଚୀର ଉପବାସୀ
ତୃଷାର୍ତ୍ତ ନିରତେ ରହି ସୁରଧୂନୀ ତଳେ।
ହା ଦୈବ! ଜମ୍ବୁକ ପଶି ହର୍ଯ୍ୟକ୍ଷ ଗୁହାରେ
ଗ୍ରାସ ତାର ଘେନିଯିବ ତା ମୁଖୁଁ ଓଟାରି। (ଅମର୍ଷୀବାଣୀ)

ଜାତୀୟତାର ମନ୍ତ୍ରଗୁରୁ ରାଧାନାଥ ୧୯୦୮ ମସିହାରେ 'ଉତ୍କଳ ସମ୍ମିଳନୀ' ପାଇଁ 'ଭାରତ ଗୀତିକା' ଦେଶବନ୍ଦନାମୂଳକ ସଂସ୍କୃତ ଶ୍ଲୋକ ବା ଗୀତରେ ଭାରତ ତଥା ଉତ୍କଳର ଜୟଗାନ କରି ଲେଖିଛନ୍ତି –

ସର୍ବେଷାଂ ନୋ ଜନନୀ ଭାରତ
ଧରଣୀ କଳ୍ପଲତେୟଂ,
ଜନନୀ ବତ୍ସଳ ତନୟ ଗଣୈସ୍ତଦ୍
ସମ୍ୟକ୍ ଶର୍ମ୍ମ ବିଧେୟଂ।

× × ×

ଭାରତ ପଙ୍କଜ ଦଳମିଦମୁତ୍କଳ –
ମଣ୍ଡଳମିତି ବିଦିତଂ ଯତ୍
ତସ୍ୟକୃତେ ବୟମତ୍ର ସମେତା
ବିହିତୋତ୍କଳ-ସଂସତ୍।

କେବଳ ଭାରତୀୟ ଜାତୀୟତାରେ ଯେ କବି ଉଦ୍‌ବୁଦ୍ଧ ହୋଇଥିଲେ ତାହା ନୁହେଁ; ଉତ୍କଳ ପ୍ରୀତି ଓ ଜାତୀୟତା ପ୍ରତି ତାଙ୍କ ମୋହ ଥିଲା ଯଥେଷ୍ଟ। ସେ ନିଜ ମାତୃଭୂମି ଉତ୍କଳର ଧାର୍ମିକ ଜୀବନଧାରା ଓ ସୁରମ୍ୟ ପ୍ରକୃତିକୁ ମଧ୍ୟ ଭଲ ପାଉଥିଲେ। ସେ ଉତ୍କଳ ମାତାର ବିଳାସ ସରୋବର ଭାବେ ଚିଲିକାକୁ ଚିତ୍ରଣ କରି ଲେଖିଥିଲେ –

ଉତ୍କଳ କମଳା ବିଳାସ-ଦୀର୍ଘିକା
ମରାଳ-ମାଳିନୀ ନିଳାମ୍ବୁ-ଚିଲିକା
ଉତ୍କଳର ତୁହି ଚାରୁ ଅଳଙ୍କାର
ଉତ୍କଳ ଭୁବନେ ଶୋଭାର ଭଣ୍ଡାର।

ସେ 'ଦରବାର' କାବ୍ୟରେ ଓଡ଼ିଶାର ଅତୀତ ଗୌରବର ମୂକସାକ୍ଷୀ ବାରବାଟୀକୁ ଦେଖି ଲେଖିଛନ୍ତି –

ଉତ୍କଳର ପୂର୍ବ କୀର୍ତ୍ତି-ସ୍ମୃତିପୂତ
ବାରବାଟୀ ଆଜି ସାଜେ ସଜ୍ଜୀଭୂତ।
ଐତିହାସିକ ଏ ଦୁର୍ଗ ବାରବାଟୀ।
ବୀର ରକ୍ତ ପିଣ୍ଡେ ଗଢ଼ା ଯାର ମାଟି।
× × ×
ଗୋଦାବରୀଠାରୁ ଗଙ୍ଗାଯାଏଁ ବ୍ୟାପୀ
କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି।

କବି 'ଉଷା' କାବ୍ୟରେ ବାଲେଶ୍ୱରର ସୋରୋକୁ 'ରଣ ବିଶାରଦ ଶୂରଙ୍କର ଭୂମି ସୋରୋ କଥିତ' ବୋଲି ଲେଖିଯାଇଛନ୍ତି। ସେ ଏଥିରେ ରାଇବଣିଆ ଦୁର୍ଗ ଓ ଓଡ଼ିଶାର ଶେଷ ସ୍ୱାଧୀନତାର ଲୁପ୍ତଭୂମି ଗୋହିରାଟିକିରୀ ଯୁଦ୍ଧଭୂମିର ଆଭାସ ଦେଇଛନ୍ତି।

ଏହା ବ୍ୟତୀତ ରାଧାନାଥ ଥିଲେ ଉତ୍କଳ ପ୍ରକୃତିର ଶ୍ରେଷ୍ଠ ପୂଜାରୀ। ସେ ଆଧୁନିକ ଓଡ଼ିଆ ସାହିତ୍ୟର ଅବିସମ୍ବାଦିତ ଶ୍ରେଷ୍ଠ ପ୍ରକୃତି କବି ଭାବରେ ଗଣ୍ୟ। ସେ ଉତ୍କଳର ଇତିହାସ, ଭୂଗୋଳ ଓ ଚାରୁ ପ୍ରକୃତିର ଥିଲେ ଜଣେ ପରମପୂଜକ। ସେ କାବ୍ୟ ରସିକ ଦୀକ୍ଷାଗୁରୁ ଭୂଦେବ ମୁଖୋପାଧ୍ୟାୟଙ୍କ ସହ ଓଡ଼ିଶାର ବିଭିନ୍ନ ପ୍ରାକୃତିକ ଦୃଶ୍ୟାସ୍ଥଳୀ ତଥା ତୀର୍ଥସ୍ଥଳୀ ପରିଭ୍ରମଣ କରିଥିଲେ। ସ୍କୁଲ ଇନିସପେକ୍ଟର ଭାବେ ବିଭିନ୍ନ ସ୍ଥାନ ଓ ନିଜର ପ୍ରକୃତି ପିପାସା ମେଣ୍ଟାଇବା ଲାଗି କୋଣାର୍କ, ପୁରୀ, ଭୁବନେଶ୍ୱର, କପିଳାସ, ସପ୍ତଶଯ୍ୟା, ବାମଣ୍ଡାର ପ୍ରଧାନପାଟ, ବିଭିନ୍ନ ଗଡ଼ଜାତ ରାଜ୍ୟ ଭ୍ରମଣ କରିଥିଲେ। ସେ ଭୂଦେବବାବୁଙ୍କ ସହ ଥରେ କାଶୀ ପର୍ଯ୍ୟନ୍ତ ଭ୍ରମଣ କରିଥିଲେ ସୁଦ୍ଧା ତୃପ୍ତ ହୋଇ ନଥିଲେ।

ସେ ତୀର୍ଥାଟନରେ ଉତ୍ତର ଓ ଦକ୍ଷିଣ ଭାରତର ପ୍ରକୃତି ପର୍ଯ୍ୟବେକ୍ଷଣ ନିମିତ୍ତ ଯାତ୍ରା କରିଥିଲେ। ଏହି ଅବସରରେ ସେ ହିମାଳୟ, ରାଜସ୍ଥାନ, ଦାର୍ଜିଲିଂ, ରାଜପୁତନା, ପଞ୍ଜାବ, ଗୁଜୁରାଟ, ମହାରାଷ୍ଟ୍ର, ବଙ୍ଗ, ବିହାର, ମଧ୍ୟପ୍ରଦେଶ, ଉତ୍ତର ପଶ୍ଚିମ ପ୍ରଦେଶ, ଅଯୋଧ୍ୟା ପ୍ରଭୃତି ସ୍ଥାନର ପ୍ରାକୃତିକ ଶୋଭାକୁ ନିବିଡ଼ଭାବରେ ଅନୁଧ୍ୟାନ କରିଥିଲେ। କିନ୍ତୁ ପ୍ରିୟସଖୀ ଚିଲିକାର ବର୍ଣ୍ଣବିଭବ କେଉଁଠି ପାଇନାହାନ୍ତି ବୋଲି ସ୍ୱୀକାର କରିଯାଇଛନ୍ତି।

କାରଣ କବି ଦୃଷ୍ଟିରେ ଚିଲିକା ଥିଲା ବହୁରୂପସୀ ନାରୀ ପରି ବହୁବିଧ ବର୍ଣ୍ଣବିଭାର ଏକ ମଞ୍ଜୁଳ ମଞ୍ଜୁଷା। ସେଥିପାଇଁ କବି ଗାଇଛନ୍ତି –

ଏତେ ଛବି ଯେଣୁ ଏକାଧାରେ ଠୁଳ
ଛବିଳ ଉତ୍କଳେ ତୋ ଛବି ଅତୁଳ।

ପିଲାଟି ଦିନରୁ ସାହିତ୍ୟ ରସିକ ପିତା ସୁନ୍ଦରନାରାୟଣ ରାୟଙ୍କ ସହ ସେ ବାଲେଶ୍ୱର ଓ ତାହାର ସମୁଦ୍ର ବେଳାଭୂମି ବୁଲିଥିଲେ। ପିଲାଦିନରୁ ଏହି ସ୍ପୃହା ତାଙ୍କୁ ପ୍ରକୃତି କୋଳକୁ ବାରବାର ଟାଣି ନେଉଥିଲା।

ରାଧାନାଥ ଉତ୍କଳ ପ୍ରକୃତିକୁ ଜୀବନ୍ୟାସ ଦେଇ ଜୀବନ୍ତ କରିଯାଇଛନ୍ତି। ଓଡ଼ିଶାର ଭୌଗୋଳିକ ସୀମା ନିର୍ଦ୍ଦେଶ ସ୍ୱରୂପ 'ପାର୍ବତୀ' କାବ୍ୟରେ ଗଡ଼ଜାତ ପ୍ରକୃତି 'ନନ୍ଦିକେଶ୍ୱରୀ'ରେ କଟକ ଜିଲ୍ଲାର, 'ଉଷାରେ' ବାଲେଶ୍ୱର ଜିଲ୍ଲାର 'ମହାଯାତ୍ରା'ରେ ପୁରୀର ମହୋଦଧି, 'କେଦାରଗୌରୀ'ରେ ଭୁବନେଶ୍ୱରର 'ଚନ୍ଦ୍ରଭାଗା'ରେ କୋଣାର୍କ ଅଞ୍ଚଳର ପ୍ରକୃତିକୁ ନିଖୁଣଭାବେ ଚିତ୍ରଣ କରିଯାଇଛନ୍ତି। ସଖୀ 'ଚିଲିକା'ର ବହୁରୂପତା ଓ ବହୁବିଧ ଚିତ୍ରଣ କରି ରାଧାନାଥ ଅମର ହୋଇ ପାରିଛନ୍ତି। ସତେ ଯେପରିକି ପ୍ରକୃତିର ଦିବ୍ୟାଞ୍ଜନ ନେଇ ରାଧାନାଥ ଜନ୍ମଗ୍ରହଣ କରିଥିଲେ।

ପ୍ରକୃତି ପୂଜା ଯୋଗୁଁ ରାଧାନାଥ ଓଡ଼ିଆ ସାହିତ୍ୟରେ ବିଶିଷ୍ଟ ସ୍ଥାନ ଲାଭ କରିଛନ୍ତି। ତାଙ୍କୁ ଅନୁସରଣ କରି କବିଶେଖର ଚିନ୍ତାମଣି ମହାନ୍ତି 'ମାଲ୍ୟଗିରି', ମହେନ୍ଦ୍ର, ମେଘାସନ, ଚନ୍ଦ୍ରଶେଖର ମିଶ୍ର 'ନରାଜ କାବ୍ୟ', ଜୟକୃଷ୍ଣ ମିଶ୍ର 'ଅଶ୍ରୁଂପା, ଦପ୍ତଶଯ୍ୟା, ଶଶୀଭୂଷଣ ରାୟ 'ଉତ୍କଳ ପ୍ରକୃତି', ଡଃ. କୁଞ୍ଜବିହାରୀ ଦାଶ 'ତୁତୁମା', ବାଗ୍ରା ପ୍ରଭୃତି ରଚନା କରିଛନ୍ତି। ପ୍ରକୃତି ବର୍ଣ୍ଣନାରେ ରାଧାନାଥ ସାଂପ୍ରତିକ ଯୁଗର କବି ମାନଙ୍କର ମଧ୍ୟ ଅନୁସରଣୀୟ ହୋଇ ରହିଛନ୍ତି।

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ରାଧାନାଥ ବିଦେଶୀ କଥାବସ୍ତୁର ଆହରଣ, ସଜୀକରଣ ଓ ପରିବେଷଣରେ ନିଜର କଳାକୁଶଳତା ପ୍ରଦର୍ଶନ କରି ଯାଇଛନ୍ତି। ସେ ଆଧୁନିକ କାବ୍ୟଧାରା ମଧ୍ୟ ପ୍ରବର୍ତ୍ତନ କରିଅଛନ୍ତି। ତେଣୁ ତାଙ୍କୁ ଭଞ୍ଜଯୁଗ କାବ୍ୟ ସାହିତ୍ୟର ଶେଷ ପ୍ରତିଧ୍ୱନି. କହିବା ଯଥାର୍ଥ ନୁହେଁ। ତେଣୁ ଡଃ. ନଟବର ସାମନ୍ତରାୟ ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଗବେଷଣାମୂଳକ ପୁସ୍ତକରେ ରାଧାନାଥଙ୍କ କାବ୍ୟ-ଧର୍ମ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି–"କାବ୍ୟିକ ନୂତନ ଭାଷା, ଭାବ ପ୍ରକାଶରେ ନୂତନତା, ଉପଧା ଓ ଯତିପାତ ଉପରେ ପ୍ରାଧାନ୍ୟ ସ୍ଥାପନ, ବହୁଳ ଅଳଙ୍କାର ଓ ବିଷମବୃତ୍ତର ପରିହାର, ବିଭିନ୍ନ ରସ ବିକାଶ ପାଇଁ ଅଦମ୍ୟ ପ୍ରୟାସ, ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ନୂତନ ରସାନୁସନ୍ଧାନ, ଚରିତ୍ର ଚିତ୍ରଣ ଉପରେ ଦୃଷ୍ଟିପାତ, ଜାତୀୟତା ଓ ସଂସ୍କାର ଭାବର କଳାଗତ ରୂପାୟନ-ନୂତନ ଯୁଗର ଏଇ ନୂତନ କାବ୍ୟ ପ୍ରକୃତିର ଆଦି ଜନକ ହେଉଛନ୍ତି ରାଧାନାଥ ରାୟ।"

ଯୁଗସ୍ରଷ୍ଟା ରାଧାନାଥ ତାଙ୍କ ସମସାମୟିକ ଯୁଗରେ କିପରି ପ୍ରଖ୍ୟାତ ଥିଲେ, ତାହା ତାଙ୍କର ଅନୁଗାମୀମାନଙ୍କର ପ୍ରଶସ୍ତି ବନ୍ଦନାରୁ ସ୍ପଷ୍ଟ ହୋଇଉଠେ। ଫକୀରମୋହନ 'ଉତ୍କଳ ଭ୍ରମଣ'ରେ ଲେଖିଥିଲେ –

ଆହେ ସୋରୋ ଗ୍ରାମ କରେ ତୁମ୍ଭଙ୍କୁ ସମ୍ମାନ
ଆର୍ତ୍ତତ୍ରାଣ୍ ସଦାଶିବ ନନ୍ଦ ଜନ୍ମସ୍ଥାନ।
ଜନ୍ମିଛନ୍ତି ରାଧାନାଥ ଯୋଗ୍ୟ ଗୁପ୍ତମଣି।
ଅଟେ କି ଏ ଗ୍ରାମ ଗୋଟା ମରକତ ଖଣି।

ସେହିପରି ଭକ୍ତକବି ମଧୁସୂଦନ ରାଓ ତାଙ୍କର ଶିକ୍ଷା-ଦୀକ୍ଷା ଓ କାବ୍ୟଗୁରୁଙ୍କ ସ୍ମୃତିଚାରଣ କରି ଲେଖିଛନ୍ତି –

ନବଯୁଗେ ବରପୁତ୍ର ନବ ଉତ୍କଳର
ବରଦା ବାଗ୍‌ଦେବୀ ବରେ ସୁକବି ପ୍ରବର।
ଉତ୍କଳ-ନିସର୍ଗ-ଲକ୍ଷ୍ମୀଦେବୀ ପୁରୋହିତ
ଲଳିତ କବି ବା ଶିଳ୍ପୀ ରସଜ୍ଞ ପଣ୍ଡିତ।

ସାହିତ୍ୟ ରାଜ୍ୟରେ ରାଧାନାଥଙ୍କ ପଟ୍ଟଶିଷ୍ୟ ନିସର୍ଗ ପ୍ରକୃତିର କବି ଗଙ୍ଗାଧର ଲେଖି ଯାଇଛନ୍ତି –

ଆସିଥିଲ ରାଧାନାଥ ବିଧିର ପ୍ରେରଣେ
ଆବଶ୍ୟକ ସମୟରେ ଉତ୍କଳର ପାଇଁ
ଭାରତୀଙ୍କୁ ମଣ୍ଡିବାକୁ ସୁରମ୍ୟ ଭୂଷଣେ
ରତନ ଖଣିର ପଥ ଦେବାକୁ ଫିଟାଇ।

ରାଧାନାଥ ଆଧୁନିକ ଯୁଗର କିପରି ପ୍ରଭାବଶାଳୀ କବିପୁରୁଷ ଥିଲେ ତାହା ଗଙ୍ଗାଧରଙ୍କ 'ଉତ୍କଳ ଲକ୍ଷ୍ମୀ'ରେ ପ୍ରଦତ୍ତ ଉକ୍ତିରୁ ଠିକ୍ ଜଣାଯାଏ। କବି ଗଙ୍ଗାଧର ନିଜ କାବ୍ୟଗୁରୁଙ୍କୁ ପ୍ରଶଂସା କରି ଲେଖିଛନ୍ତି–

''କବି ଯେ ଗଲେଣି କାବ୍ୟ ରଚିବାକୁ ରାଧାନାଥ ନାମ ବହି।''

ରାଧାନାଥଙ୍କ କବିତ୍ୱ ଶକ୍ତିକୁ ରାଧାନାଥ ଓ ସତ୍ୟବାଦୀଯୁଗୀୟ କବିମାନେ ଅକ୍ଷରତଃ ଅନୁସରଣ କରିଛନ୍ତି। ଏପରିକି ପଣ୍ଡିତ ନୀଳକଣ୍ଠ ରାଧାନାଥଙ୍କ ଜାତୀୟତାବିରୋଧି କାର୍ଯ୍ୟକୁ ସମର୍ଥନ କରି ନଥିଲେ ସୁଦ୍ଧା ତାଙ୍କ କାବ୍ୟଶୈଳୀର ସମର୍ଥନ କରି ଲେଖିଛନ୍ତି– ''ରାଧାନାଥଙ୍କ ବର୍ଣ୍ଣନା ସର୍ବଦା ପ୍ରକୃତି ସୁଲଭ କମନୀୟତାର ଭାଷାଗତ ବିକାଶ ମାତ୍ର।'' ଏ ସମସ୍ତରୁ ରାଧାନାଥଙ୍କ କବି ଓ କବିତ୍ୱ ସମ୍ବନ୍ଧରେ ଅବଧାରଣା କରିହୁଏ।



# କାବ୍ୟଶିଳ୍ପୀ ରାଧାନାଥ

ଡ଼ଃ. ହେମନ୍ତ କୁମାର ଦାସ

ରାଧାନାଥ ଓଡ଼ିଶାର ବହୁଚର୍ଚ୍ଚିତ ଏବଂ ବହୁ ବିତର୍କିତ କାବ୍ୟକାର। ତାଙ୍କ ବିରୁଦ୍ଧରେ ପ୍ରଧାନ ଅଭିଯୋଗ ହେଉଛି ଯେ, 'କଳା ପାଇଁ କଳା'ର ଆବାହନ କରିବାକୁ ଯାଇ, ସତ୍ୟ ଉପରେ ସୁନ୍ଦରର ବିଜୟ ବୈଜୟନ୍ତୀ ଉଡ଼ାଇ ସେ ନ୍ୟାୟ ଅନ୍ୟାୟ, ପାପପୁଣ୍ୟ, ଶ୍ଳୀଳ ଅଶ୍ଳୀଳ ମଧ୍ୟରେ କୌଣସି ସୀମାରେଖାକୁ ମାନିନାହାନ୍ତି। ବିଷୟ ବସ୍ତୁ ପାଇଁ ସେ ମୁଖ୍ୟତଃ ନିର୍ଭର କରିଥିଲେ ବିଦେଶୀ ସାହିତ୍ୟ ଉପରେ। କେଦାର ଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ପାର୍ବତୀ ଏବଂ ଉଷାର କଥାଭାଗ ଏହି ରୀତିରେ ବାହାରୁ ଆସିଲା। ସେମିତି ବର୍ଣ୍ଣନା ପାଇଁ ଉପାଦାନ ସଂଗୃହୀତ ହେଲା କାଳିଦାସ, ଭବଭୂତି, ଶ୍ରୀହର୍ଷ, ମାଘ, ମିଲଟନ୍, ହୋମର ଏବଂ ସେକ୍ସପିୟର ପ୍ରଭୃତି ଏ ଦେଶ ତଥା ସେ ଦେଶର କବିମାନଙ୍କଠାରୁ। ତେଣୁ ତାଙ୍କର କବିତ୍ୱ ଶକ୍ତିର ପରିସ୍ଫୁଟନରେ ତାଙ୍କର ବହୁପାଠିତ୍ୱ ଯେ ଏକ ବିଶେଷ ଭୂମିକା ଗ୍ରହଣ କରିଥିଲା, ଏହା ନ କହିଲେ ମଧ୍ୟ ଚଳିବ।

କଥାବସ୍ତୁ ସହିତ ସେ ଦେଶର ଚରିତ୍ର ସବୁ ଓଡ଼ିଶାର ପଟ୍ଟଭୂମିରେ ସଂସ୍ଥାପିତ ହେଲେ ସତ୍ୟ, ମାତ୍ର ସେମାନଙ୍କର ଆଚରଣ ଦୃଷ୍ଟିରୁ ଏଠାକାର ପାଠକମାନେ ସେମାନଙ୍କୁ ନିଜର କରି ନେଇ ପାରିଲେ ନାହିଁ। ବିଶେଷ କରି 'ପାର୍ବତୀ' କାବ୍ୟର କଳଙ୍କିତ ନାୟକ ଗଙ୍ଗେଶ୍ୱରଙ୍କର ବିଷଦୃଶ ଆଚରଣ ଯୋଗୁଁ ରାଧାନାଥ ନିଜ ଜୀବଦ୍ଦଶାରେ କଟୁ ଭାବରେ ସମାଲୋଚିତ ହୋଇଥିଲେ। ଯଦିଓ ଗଂଗେଶ୍ୱରଙ୍କ ଅପକୀର୍ତ୍ତି ସମ୍ପୂର୍ଣ୍ଣ ଭାବରେ ରାଧାନାଥଙ୍କର କଳ୍ପନା ମାତ୍ର ନଥିଲା। ରୀତି ସାହିତ୍ୟର ସୀମା ବଦ୍ଧତା ମଧ୍ୟରୁ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ନବରୂପ ନିର୍ମାଣ— ଏହି ଅତ୍ୟନ୍ତ କଠିନ କର୍ମଟିର ସୁଦକ୍ଷ ବିଧାଣି ରୂପେ ରାଧାନାଥଙ୍କର ଯେଉଁ କୃତିତ୍ୱ-ତାହାହିଁ ତାଙ୍କ ପାଇଁ ସେନାକରେ ବନ୍ ଶତ୍ ସୃଷ୍ଟି କରିଥିଲା। ଯଦିଓ ତାଙ୍କର ସମସାମୟିକ କବି ଗଂଗାଧର-ପ୍ରତିଭା ଦୃଷ୍ଟିରୁ ତାଙ୍କଠାରୁ ନ୍ୟୁନ ନଥିଲେ ଦେଖାଯାଉଛି, ନିଜ ପାଇଁ ସେ ଏତେ ପ୍ରତିକୂଳ ଅବସ୍ଥା ସୃଷ୍ଟି କରିନାହାନ୍ତି। ରାଧାନାଥଙ୍କର ଶିକ୍ଷାଦୀକ୍ଷା ଏବଂ ପଦପଦବୀ- ଏହାହିଁ ମୁଖ୍ୟତଃ ତାଙ୍କର ବିରୁଦ୍ଧାଚରଣ କରିଥିଲା ବୋଲି କୁହାଯାଇପାରେ।

ରାଧାନାଥ ପରମ୍ପରାକୁ, ଏ ଦେଶର ସାଂସ୍କୃତିକ ଐତିହ୍ୟକୁ ସମ୍ପୂର୍ଣ୍ଣରୂପେ ଉପେକ୍ଷା କରିଥିଲେ ବୋଲି, ତାଙ୍କ ବିରୁଦ୍ଧରେ ଅଭିଯୋଗ କରାଯାଇଥାଏ। ମାତ୍ର ତଳେଇ କରି ବିଚାର କଲେ ଦେଖା ଯିବ ଯେ, ପରମ୍ପରା ମଧ୍ୟରୁ ହିଁ ରାଧାନାଥଙ୍କର କବିତ୍ୱର ବିକାଶ ହୋଇଥିଲା। ସଂସ୍କୃତ ଭାଷା ହିଁ ଥିଲା ତାଙ୍କର ପ୍ରେରଣାର ଆଦି ଉତ୍ସ। ଶବ୍ଦଗୁମ୍ଫନରେ ସେ ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ସଂସ୍କୃତ ପଦାବଳୀକୁ ଅନୁସରଣ କରୁଥିଲେ। ଅଳଙ୍କାର ପ୍ରୟୋଗରେ ସୁଦ୍ଧା ସେ ଏ ଦେଶର ପରମ୍ପରାକୁ ଉଲ୍ଲଂଘନ କରି ନାହାନ୍ତି। ରସ ପ୍ରୟୋଗରେ ମଧ୍ୟ ସେ ପରମ୍ପରାନୁଗ। ଆଦିରସର ପ୍ରୟୋଗ ତାଙ୍କ କାବ୍ୟମାନଙ୍କରେ ରହିଛି ସତ୍ୟ, ମାତ୍ର ସେ ତାହାର ଉତ୍କଟତାକୁ ଅନେକ ପରିମାଣରେ ସହଣୀୟ କରି ଦେଇଛନ୍ତି ଏବଂ ଏହି କାରଣରୁ ହିଁ ଏହାକୁ ରୁଚିପୂର୍ଣ୍ଣ ବୋଲି କୁହାଯାଇ ପାରେ। ଆଦିରସର ବର୍ଣ୍ଣନାରେ 'ବିସ୍ତୃତି' ଅପେକ୍ଷା 'ସୂଚନାତ୍ମକତା' ହେଉଛି ତାଙ୍କ କାବ୍ୟ ଶୈଳୀର ବୈଶିଷ୍ଟ୍ୟ। ଏଭଳିକି ଯେଉଁ 'ପାର୍ବତୀ' କାବ୍ୟ ନିମନ୍ତେ ସେ ବହୁଧା ନିନ୍ଦିତ ସେଠାରେ ମଧ୍ୟ 'ସସ୍ମିତେ ପୁଛିଲେ ନୃପ ମୋତେ ଦିନେ, କହିବୁଟି ଜେମାମଣି'ଠାରୁ କୌଶଲ୍ୟାର ପର୍ଯ୍ୟଙ୍କରୁ ଲମ୍ଫ ଦେଇ ପଡ଼ିବା' ପର୍ଯ୍ୟନ୍ତ ବର୍ଣ୍ଣନାକୁ ମଧ୍ୟ ରାଧାନାଥ ସୂଚନାତ୍ମକତା ଦ୍ୱାରା ଅଧିକ ସହଣୀୟ କରି ପାରିଛନ୍ତି। ଆଧୁନିକ କାବ୍ୟରୀତିର ଉଦ୍‌ଗାତା ହୋଇ ଥିଲେ ମଧ୍ୟ ସେ ଯେ କଦାପି ପରମ୍ପରାକୁ ଅସ୍ୱୀକାର କରି ନଥିଲେ। କଥାବସ୍ତୁର ଉପସ୍ଥାପନ, ଚରିତ୍ର ସମୂହର ବିଶ୍ଳେଷଣ, ପ୍ରକୃତିର ବର୍ଣ୍ଣନ-ପ୍ରଭୃତିର ଭାବ ଓ ପ୍ରକାଶ ଶୈଳୀରେ ଉଭୟ ପ୍ରାଚୀନ ଓ ରାଧାନାଥଙ୍କ କାବ୍ୟ ସମୂହରେ ଯେଉଁ ଅଦ୍‌ଭୂତ ସାମଞ୍ଜସ୍ୟ ଦେଖାଯାଏ, – ସେଥିରୁ ଏହାହିଁ ପ୍ରତିପାଦିତ ହୁଏ। ଏହି କାରଣରୁ ରାଧାନାଥ ଯେତେବେଳେ ଘୋଷଣା କରନ୍ତି ଯେ, ''ମୋହତୁଲ୍ୟ ଭଂଜଙ୍କର ଅଧିକ ଅନୁକାରୀ ପଦ୍ୟଲେଖକ ବୋଧହୁଏ ଓଡ଼ିଶାରେ ଅଳ୍ପ ବାହାରିବେ ସେତେବେଳେ ଏହାକୁ କେବଳ ତାଙ୍କର ପାଟିର କଥା ବୋଲି ମନେ କରିବାର କୌଣସି କାରଣ ରୁହେ ନାହିଁ।

ବିଶେଷ କରି ପାଠକ ଯେତେବେଳେ ରାଧାନାଥଙ୍କର ରସସିକ୍ତ ପଦାବଳୀ ଗୁଡ଼ିକର ପଠନ କରିଥାଆନ୍ତି, ପରମ୍ପରା ପ୍ରତି କବିଙ୍କର ଶ୍ରଦ୍ଧା କେତେ ଦୂର ଥିଲା, ତାହା ମର୍ମେ ମର୍ମେ ଅନୁଭବ କରି ଥାଆନ୍ତି। ରସବାଦୀ ଭାରତୀୟ କବି ପରମ୍ପରାରେ ରସ ହିଁ ହେଉଛି କାବ୍ୟର ଆତ୍ମା ସ୍ୱରୂପ। ତେଣୁ ବିଶ୍ୱନାଥ କବିରାଜ କହନ୍ତି, 'ବାକ୍ୟ' ରସାତ୍ମ୍ୟ କାବ୍ୟମ୍'। କାବ୍ୟରେ ନବରସ ମଧ୍ୟରେ 'ଶୃଙ୍ଗାରୀଚେତ୍ କବିଃ' କିମ୍ବା 'ଶୃଙ୍ଗାର ଏବ ମଧୁର ପରପ୍ରହ୍ଲାଦନୋ ରସଃ' ବୋଲି କୁହାଯାଇ ଆଦିରସ'କୁ ହିଁ ପ୍ରଧାନ ରସର ମର୍ଯ୍ୟାଦା ଦିଆଯାଇଛି। ରାଧାନାଥ ମଧ୍ୟ ନିଜ କାବ୍ୟରେ ଏହି ରସର ପ୍ରାଧାନ୍ୟକୁ ସ୍ୱୀକାର କରିନେଇଛନ୍ତି। ବିଶେଷ କରି ଯଯାତି କେଶରୀ, ଚନ୍ଦ୍ରଭାଗା ଉଷା, ନନ୍ଦିକେଶ୍ୱରୀ, ପାର୍ବତୀ, କେଦାର ଗୌରୀ ପ୍ରଭୃତି କାବ୍ୟରେ ଆମେ ପରମ୍ପରାବଦୀ ରାଧାନାଥଙ୍କର ରସପ୍ରାଣତାକୁ ଲକ୍ଷ୍ୟ କରିପାରିବା।

ଲୋକରୁଚି ପ୍ରତି କବିଙ୍କର ଥିଲା ସତର୍କ ସଚେତନତା। ସଙ୍ଗୀତ, ଅଳଙ୍କାର ଏବଂ ରସ ଯେଉଁ ଯୁଗରେ ଥିଲା ପାଠକୀୟ ରୁଚିରେ କାବ୍ୟ କବିତାର ପ୍ରାଣ କେନ୍ଦ୍ରସ୍ୱରୂପ, ତହିଁରୁ ସହସା ଏକ ନୂତନ ରୀତି ମଧ୍ୟକୁ ପାଠକମାନଙ୍କୁ ନେଇଯିବା ଯେ, କିଭଳି ଅସମ୍ଭବ ତାହା ତାଙ୍କର ପ୍ରତିଭାଦୀପ୍ତ ମନରେ ଧରା ନପଡ଼ିବାର କଥା ନୁହେଁ। ତେବେ ଶଗଡ଼ ଗୁଳାରେ ନିଶ୍ଚିନ୍ତ ହୋଇ ଚାଲିବା ପ୍ରତିଭାଶାଳୀ କବିର କାର୍ଯ୍ୟ ନୁହେଁ। ନିଜ ପାଇଁ ଏକ ସ୍ୱତନ୍ତ୍ର ପଥ ପ୍ରସ୍ତୁତ କରିବାରେ ହିଁ ତାହାର ଆନନ୍ଦ ଏବଂ କୃତିତ୍ୱ। ନବଜାଗରଣର ସାର୍ଥକ ବାର୍ତ୍ତାବହ ରୂପରେ ସେ ପ୍ରଥମେ ରୀତି ସାହିତ୍ୟର ଶବ୍ଦକ୍ଲିଷ୍ଟତା ଉପରେ ଦୃଷ୍ଟି ପକାଇଥିଲେ। ପରିବର୍ତ୍ତିତ ସମୟ ଏଥିପାଇଁ ତାଙ୍କର ସହାୟତା କରିଥିଲା। ପାଶ୍ଚାତ୍ୟ କାବ୍ୟ କବିତାର ରଚନା ଶୈଳୀ ଯେ ନବକାବ୍ୟ ରୀତି ନିମନ୍ତେ ଏକାନ୍ତ ଭାବରେ ଉପଯୁକ୍ତ, ତାହା ସେ ଭଲ ଭାବରେ ବୁଝି ଯାଇଥିଲେ। କାବ୍ୟର ସଫଳତା ପଛରେ 'ଇମୋସନ୍' ବା ଆବେଗ ପ୍ରବଣତାର ଏକ ବିଶେଷ ଭୂମିକା ରହିଛି। ମାତ୍ର ଏହା ପୁଣି କବିଙ୍କୁ କଳ୍ପନାଲୋକର ତୁଙ୍ଗ ଶିଖରୀରେ ନେଇ ବସାଇ ଦିଏ। କବି ବାସ୍ତବିକତା ଓ ସ୍ୱାଭାବିକତାଠାରୁ ଦୂରେଇଯାଏ। ଊନବିଂଶ ଶତାବ୍ଦୀର ଶେଷ ପାଦରେ କେବଳ ମାତ୍ର କଳ୍ପନା ବିଳାସର ଆଡ଼ମ୍ବରୀ ପ୍ରଦର୍ଶନୀ ପାଠକମାନଙ୍କୁ ଅବସ୍ତୁରେ ବସ୍ତୁର ଭାବ ମାତ୍ର ଦେଇପାରେ, ମାତ୍ର ପ୍ରକୃତ ସତ୍ୟଠାରୁ ସେମାନେ ଯେ ଦୂରେଇ ଯିବେ, ଏଥିରେ ରାଧାନାଥଙ୍କର ସନ୍ଦେହ ନ ଥିଲା। ତେଣୁ ସେ ପାଶ୍ଚାତ୍ୟ ସାହିତ୍ୟର 'ହେତୁବାଦୀ' ଦୃଷ୍ଟି କୋଣଟିକୁ ନିଜର କାବ୍ୟ ଶୈଳୀରେ ଗ୍ରହଣ କରି ନେଲେ। ପୁରାଣ, କିମ୍ବଦନ୍ତୀ ପ୍ରଭୃତିର ଅଲୌକିକତାକୁ ରାଧାନାଥ ଯେ ନିଜର କାବ୍ୟ କବିତାରେ ସ୍ଥାନ ଦେଇ ନାହାନ୍ତି ଏଭଳି ନୁହେଁ। ମାତ୍ର ଏସବୁ କେବଳ ନାଟକୀୟ ଘଟଣା ରୂପରେ, ଚମତ୍କାରିତା ସୃଷ୍ଟି କରିବା ନିମନ୍ତେ ବ୍ୟବହୃତ ହୋଇଛି। 'ଉଷା', 'ଯଯାତିକେଶରୀ', 'ପାର୍ବତୀ', 'ନନ୍ଦିକେଶ୍ୱରୀ', 'ଚନ୍ଦ୍ରଭାଗା', 'ମହାଯାତ୍ରା' ପ୍ରଭୃତିରେ ଅଲୌକିକତାର ଯେଉଁ ପ୍ରସଙ୍ଗ ସ୍ଥାନିତ ହୋଇଛି, ସେଠାରେ କବି କେବଳ ତଟସ୍ଥ କଥକ ହିସାବରେ ହିଁ ଘଟଣାର ବର୍ଣ୍ଣନା ଦେଇଯାଇଛନ୍ତି। ନିଜେ ଏହାର ଅଙ୍ଗ ହୋଇଯାଇ ନାହାନ୍ତି। ଏହା ବୋଲି ସେ ଯେ ହିନ୍ଦୁ ଦେବଦେବୀମାନଙ୍କ ପ୍ରତି ବୀତଶ୍ରଦ୍ଧ ଥିଲେ, ଏକଥା କୁହାଯାଇ ପାରିବ ନାହିଁ। ବରଂ ସେମାନଙ୍କ ପ୍ରତି କବିଙ୍କର ଅତୁଟ ବିଶ୍ୱାସ ରହିଥିବାର ପ୍ରମାଣ ତାଙ୍କର ଯେ କୌଣସି କାବ୍ୟରୁ ମିଳିବ। ଈଶ୍ୱର ବିଶ୍ୱାସ, ଦୈବୀ ଶକ୍ତି ଉପରେ ଅଟଳ ଆସ୍ଥା ବିଶେଷ ଭାବରେ ସେ ଯୁଗର ପାଠକମାନଙ୍କ ରକ୍ତରେ ମିଶିରହିଥିଲା। ରାଧାନାଥ ସ୍ୱୟଂ ଜଣେ ଅଧ୍ୟାତ୍ମବାଦୀ ଥିବାରୁ ଲୋକବିଶ୍ୱାସର ଏହି ନମନୀୟ ସ୍ଥାନଟି ଉପରେ ଆଘାତ ଦେବାକୁ ଚାହୁଁ ନଥିଲେ। ଏହି କାରଣରୁ ହିଁ ସେ ତାଙ୍କର ପ୍ରତ୍ୟେକ କାବ୍ୟରେ ସତ୍ୟ, ନ୍ୟାୟ, ଧର୍ମର ବିଜୟ ପ୍ରତିଷ୍ଠା କରିବାକୁ ନିଜର କାବ୍ୟିକ ଆଭିମୁଖ୍ୟ ରୂପରେ ଗ୍ରହଣ କରି ନେଇ ଘୋଷଣା କରିଥିଲେ -

ଧର୍ମ ଏକା ସିନା ମହତ ପଣିଆ,
ଆଉ ସବୁ କଥା ଅଢ଼େଇ ଦିନିଆ।
ଧର୍ମ ଏକପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର ବାରିଧି।

ଆଧ୍ୟାତ୍ମିକତା ସହିତ ଭାଗ୍ୟବାଦିତାର ଏକ ସମନ୍ୱୟ ଏ ଦେଶରେ ଦେଖିବାକୁ ମିଳିଥାଏ। କବି ସ୍ୱୟଂ ଜଣେ ଭାଗ୍ୟବାଦୀ ଥିଲେ ଏବଂ ଏହାର ପ୍ରମାଣ ତାଙ୍କର ଅଧିକାଂଶ କାବ୍ୟରୁ ଦେଖିବାକୁ ମିଳିଥାଏ। ଭାଗ୍ୟବାଦ ସହିତ 'ନିୟତି' ଏବଂ 'ଅଦୃଷ୍ଟ'ର ଯେଉଁ ନିଗୂଢ଼ ସମ୍ପର୍କ ରହିଛି, କବି ସେ ବିଷୟରେ ସଚେତନ ଥିଲେ। 'ଶକ୍ତି ନାହିଁ ବସ୍ତୁ କାହାରି ଜଗତେ, ନିୟତି କି ନେବ ନିଜ ଇଚ୍ଛା ମତେ' କିମ୍ବା 'ଇଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ ସମସ୍ତଙ୍କ ଭାଗ୍ୟ ଡୋରି, ନିଜ ଭାଗ୍ୟଡୋରି କାଳ ହସ୍ତେ ବନ୍ଧା ପକାନ୍ତି ହେଳେ ପାଶୋରି' ପ୍ରଭୃତି ବହୁ ପଂକ୍ତିରେ କବିଙ୍କର ଅଦୃଷ୍ଟ ନିର୍ଭରତା ପ୍ରକଟିତ ହୋଇଛି। ଜୀବନ ଯେ ଯନ୍ତ୍ରଣାର ଅନ୍ୟ ନାମ, ଏହା ସ୍ପଷ୍ଟଭାବରେ ପ୍ରକାଶ କରି କବି ଘୋଷଣା କରିଛନ୍ତି –

ଚିର ହାହାମୟ ଏ ଛାର ଜୀବନ,
ଜୀବନ ନୁହେଁ ଏ ଜୀବନ୍ତ ମରଣ।

ଜୀବନ ପ୍ରତି ଏକ ନୈର୍ବ୍ୟକ୍ତିକ ଭାବ ଏହି କାରଣରୁ ହିଁ ଦାର୍ଶନିକ କବିଙ୍କୁ ଆଚ୍ଛନ୍ନ କରି ରଖିଥିବାର ଦେଖିବାକୁ ମିଳୁଛି ଏବଂ କବି କହିଛନ୍ତି ମଧ୍ୟ –

ସଂସାରେ ଥାଇ ମୁଁ ସଦା ଉଦାସୀନ,
ଉଦାସୀନ ପ୍ରାଏ କଟାଇଲି ଦିନ।

ଚିରଦିନ ଦୁଃଖର ପ୍ରହାରରେ ଜର୍ଜରିତ ହୋଇ ନିଜକୁ ଦୁଃଖ ଗୁରୁଙ୍କର ପଟ୍ଟଶିଷ୍ୟ ରୂପେ ଘୋଷଣା କରିବା ଏବଂ 'ଦୁଃଖଦତ୍ତ ଜ୍ଞାନଚକ୍ଷୁ'ରେ ଜଗତକୁ ନିରନ୍ତର ଦେଖିବା ପଛରେ କବିଙ୍କର ଏହି ଉଦାସୀନ ମନୋଭାବ ହିଁ ରହିଛି। ଦୁଃଖର ଶାଶ୍ୱତଭାବ ସାଂସାରିକ ସୁଖ ବିଷୟରେ ତାଙ୍କୁ ନିର୍ଲିପ୍ତ କରିଛି। ତେଣୁ ସେ କହିଛନ୍ତି –

ସୁଖ ବୋଲି ଯାକୁ ବୋଲଇ ସଂସାର
କରୁଥାଇ ତାକୁ ଦୂରୁ ମୁଁ ଜୁହାର
ସୁଖ ରୂପେ ଯାହା ଜନନେତ୍ରେ ଦିଶେ
ହାତେ ଆସେ ହାତୁ ପଡ଼ିବା ପାଇଁ ସେ
ବସ୍ତୁ ନୁହଇ ସେ ଅଟଇଟି ଧୂମ
ଅନ୍ୟ ନାମ ତାର ଆକାଶ କୁସୁମ।

ସଂସାରରେ 'ଭୀମ ଭବିତବ୍ୟର ଛାୟାନ୍ଧକାର ମଧ୍ୟରେ କବି ନୈରାଶ୍ୟ ପ୍ରେତ୍ନର ବିକଟ ନର୍ତ୍ତନଟିକୁ ହିଁ ସର୍ବତ୍ର ଦେଖିବାକୁ ପାଇଛନ୍ତି। ରାଧାନାଥ ଯେ ଏ ଦେଶର

ବିପୁଳ ସାଂସ୍କୃତିକ ଐତିହ୍ୟକୁ ଅସ୍ୱୀକାର କରୁ ନଥିଲେ ଏବଂ ତାଙ୍କର ଦାର୍ଶନିକତା ଯେ ଏ ଦେଶର ଶାଶ୍ୱତ ଭାବଚେତନାର ବହିର୍ଭୂତ ନଥିଲା ଏଥିରୁ ତାହାହିଁ ପ୍ରମାଣିତ ହେଉଛି। ସୁଖ ଦୁଃଖ, ଆଶା ନିରାଶା ଏସବୁ ଭାରତୀୟ ଦର୍ଶନରେ କେବେ ମଣିଷ ମନର ବିକାର ରୂପରେ ବାରମ୍ବାର ବର୍ଣ୍ଣିତ ହୋଇଛି ଏବଂ ଭାରତୀୟ ଆଚାର୍ଯ୍ୟବୃନ୍ଦ ଏହି ସବୁ ବିଭିନ୍ନ ଅବସ୍ଥାରେ ନିର୍ବିକାର ରହିବା ନିମନ୍ତେ ଚେତାବନୀ ଶୁଣାଇଛନ୍ତି। ଗୀତା ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି –

''ଦୁଃଖେଷୁ ଅନୁଦ୍‌ବିଗ୍ନ ମନା
ସୁଖେଷୁ ବିଗତ ସ୍ପୃହ
ବୀତରାଗ ଭୟ କ୍ରୋଧ
ସ୍ଥିତଧୀଃ ମୁନିଉଚ୍ୟତେ''

ଯେଉଁମାନେ ପ୍ରାଜ୍ଞ ସେମାନେ ସାଂସାରିକ ଦୁଃଖ ଶୋକ ଆନନ୍ଦ ଉଲ୍ଲାସକୁ ସମଭାବରେ ଗ୍ରହଣ କରିଥାଆନ୍ତି। ରାଧାନାଥ ଗୀତୋକ୍ତ ଏହି ଦାର୍ଶନିକ ବାଣୀଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଥିବାର ଅନୁମାନ କରାଯାଇ ପାରେ। ଏଇଥିପାଇଁ ସେ ନିଜର 'ଦରବାର' କାବ୍ୟରେ ବାରମ୍ବାର 'ଅହଙ୍କାର', 'କ୍ରୋଧ' ଏବଂ 'ଆତ୍ମବଡ଼ିମା' ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି। ସାଂସାରିକ ସମ୍ମାନ, ପଦପଦବୀ ଆସନ ପ୍ରଭୃତିର ନଶ୍ୱରତା ପ୍ରତିପାଦନ କରି କବି ସ୍ପଷ୍ଟ ଭାବରେ କହିଛନ୍ତି –

ଏହି ଛାର୍ ଏହି ଅକିଂଚିତକର
ସମ୍ମାନ ସକାଶେ ଏଡ଼େ ବ୍ୟସ୍ତ ନର
ହା ଧିକ୍! ଏ ତୁଚ୍ଛସାର ପଦପାଇଁ
ଦେଉଛନ୍ତି ଲୋକେ ସମ୍ପଦ ଉଡ଼ାଇ!

ବିଶ୍ୱ ସଂସାରରେ 'ସୁଖ ଝଟକେ ଯେ ଚକ୍ଷୁ ଚମକାଇ, ଦୁଃଖ ବଜ୍ରେ ପରେ କରେ ଧରାଶାୟୀ।' ମୃତ୍ୟୁ ହେଉଛି ଜୀବନର ଅନ୍ତିମ ପରିଣତି ଏବଂ ଅଲଂଘନୀୟ। ଏଠାରୁ ଯିବାବେଳେ ଛଅଖଣ୍ଡି କାଠ ଲୋଡ଼ା ହୋଇଥାଏ। ଆସିବା ଏବଂ ଯିବା ମଧ୍ୟରେ ବ୍ୟବଧାନ ଖୁବ୍ ଅଳ୍ପ। କବିଙ୍କ ଭାଷାରେ –

ମଧ୍ୟେ କେତେ ଦିନ ମାତର କୁଣିଆ
ଏଥିପାଇଁ ପୁଣି ନଅଣ୍ଟେ ଦୁନିଆ!

ସାଂସାରିକ ଯଶ, ଦୁନିଆର ଖ୍ୟାତି ସମସ୍ତ କାଳର ଦରବାରରେ ପଣ୍ଡ ହୋଇଯିବ। ଅଳ୍ପଦିନ ସ୍ଥିତିପାଇଁ ଏ ସଂସାର ଯେତେବେଳେ ଏକ ଚଟିଘର ସଦୃଶ, ସେତେବେଳେ ଅହମିକାର ରକ୍ଷାପାଇଁ ଏତେ ପ୍ରତିଦ୍ୱନ୍ଦିତା ସ୍ପୃହଣୀୟ ନୁହେଁ। ତେଣୁ ଆତ୍ମତତ୍ତ୍ୱ ଜ୍ଞାନୀ ସଂସାରୀକୁ ଅତନ୍ଦ୍ର କଣ୍ଠରେ ଜଣାଇ ଦେଇଛନ୍ତି –

ନ ସଢ଼ି. ବଡ଼ିମା ତାମସ ଗହ୍ୱରେ
କ୍ରମେ ଉଠ ଧର୍ମ ଶଇଳ ଶିଖରେ

ଚାହିଁଲେ ଯେସନ ଶଇଳ ଶିଖରୁ
ସମଦିଶେ ମହୀସ୍ଥିତ ତୃଣତରୁ ।
ଧର୍ମ ନେତ୍ରେ ସାନବଡ଼ ଦୁନିଆର
ଦୂରୁ ସବୁ ସିନା ଦିଶେ ଏକାକାର ।

ମଣିଷ ସବୁ ଜାଣିଶୁଣି ମଧ୍ୟ ତଥାପି ଯେ 'ଶାଶ୍ୱତକୁ ତ୍ୟାଗ କରି 'ନଶ୍ୱର' ପ୍ରତି ଏତେ ଆସକ୍ତ ହୋଇ ପଡ଼େ, ତାହାହିଁ କବିଙ୍କର ମନୋବ୍ୟଥାର କାରଣ ହୋଇ ଏବଂ ଏଥିରୁ ମୁକ୍ତିଲାଭ କରିବା ନିମନ୍ତେ ସେ ସମସ୍ତଙ୍କୁ ସଚେତନ କରି ଦେଇଛନ୍ତି ।

ମୋଟାମୋଟି ଭାବରେ ତେଣୁ କୁହାଯାଇପାରେ ଯେ, ରାଧାନାଥଙ୍କର ଦର୍ଶନ ଏ ଦେଶର ଶାଶ୍ୱତ ଚିନ୍ତାଚେତନା ଠାରୁ ଆଦୌ ଦୂରବର୍ତ୍ତୀ ନ ଥିଲା । ବେଦ ଉପନିଷଦ୍ ପୁରାଣ ଶାସ୍ତ୍ର ମଣିଷ ସମ୍ପର୍କରେ ଯେଉଁ ବିଧି ନିଷେଧର ବାଣୀ ଶୁଣାଇ ଆସିଛନ୍ତି, ରାଧାନାଥ ମଧ୍ୟ ସେଇ ସବୁ ବାଣୀର ଅନୁଗତ ଶିଷ୍ୟ ତଥା ସାଧକ ଥିଲେ । ବିଶେଷ କରି ଜୀବନର ଅନିତ୍ୟତା ସମ୍ପର୍କରେ ତାଙ୍କର ବର୍ଣ୍ଣନା – "ଯା ଦେଖି ଜାଣିବେ ଜଗତେ ସମସ୍ତେ, ଆସିଥିଲି ଫେରିଗଲି ଶୂନ୍ୟ ହସ୍ତେ ।" ଏ ଦେଶର ଜୀବନ ଚିନ୍ତାର ଏକ ସମାନ୍ତରାଳ ରୂପ ମାତ୍ର । ରାଧାନାଥଙ୍କର ଜୀବନ ଦର୍ଶନ ଊନବିଂଶ ଶତାବ୍ଦୀର ଇଂରେଜ ରୋମାଣ୍ଟିକ୍ କବିମାନଙ୍କର ବିଶେଷ କରି ସେଲୀ ଏବଂ କୀଟସ୍‌ଙ୍କ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଥିଲା ବୋଲି ଏଠାରେ ଯେଉଁ ପ୍ରଚାର କରାଯାଇଛି ତହିଁରେ ଯେ ସତ୍ୟତା ନାହିଁ, ଏହା ଆମେ କହୁନାହୁଁ । ରାଧାନାଥ ସେ ଦେଶର ସାହିତ୍ୟକୁ ବେଶ୍ ଭଲଭାବରେ ଅନୁଧ୍ୟାନ କରିଥିଲେ ଏବଂ ସେଥିରୁ ଅନେକ କିଛି ଗ୍ରହଣ କରିଥିଲେ । ମାତ୍ର ତାଙ୍କର ଜୀବନ ଦର୍ଶନର ନିର୍ମାଣରେ ଏ ଦେଶର ଶାଶ୍ୱତ ଭାବ ଚେତନାର ଅବଦାନ ଯେ ଆଦୌ ଅବହେଳନୀୟ ନୁହେଁ, ସେତିକିମାତ୍ର ସ୍ମରଣ କରାଇଦେବା ହେଉଛି ଆମର ଲକ୍ଷ୍ୟ । ନିଜକୁ 'ଭବଭୂତିଙ୍କର ଚେଲା' ବୋଲି ଘୋଷଣା କରି ରାଧାନାଥ ଏ ଦେଶର କବି କୁଳପ୍ରତି ତାଙ୍କର ସମ୍ମାନ ତଥା ଆନୁଗତ୍ୟ ଖୋଲା ଖୋଲି ଭାବରେ ଘୋଷଣା କରିଛନ୍ତି । ମହାନ୍ ବୃକ୍ଷଟିଏ ଯେତେବେଳେ ଶାଖାପ୍ରଶାଖା ମେଲି ଊର୍ଦ୍ଧ୍ୱ ଆକାଶରେ ଆତ୍ମବିସ୍ତାର ପୂର୍ବକ ତହିଁରୁ ସ୍ୱଚ୍ଛବାୟୁ, ଉଷ୍ଣ ଉତ୍ତାପ ଏବଂ ଶୁଭ୍ର ଜଳକଣିକା ସଂଗ୍ରହ କରୁଥାଏ, ସେତେବେଳେ ତାର ଚେର କିନ୍ତୁ ରହିଥାଏ ମାଟିରେ । ସେଇଥିରୁ ହିଁ ସେ ନିଜପାଇଁ ଜୀବନିକା ସଂଗ୍ରହ କରୁଥାଏ । ରାଧାନାଥଙ୍କର ପାଦଥିଲା ଏ ଦେଶର ମାଟିରେ । ପଶ୍ଚିମ ଆକାଶର ଜଳବାୟୁ ଉତ୍ତାପ ତାଙ୍କର ଶକ୍ତିକୁ ପୁଷ୍ଟ ମାତ୍ର କରିଥିଲା । ମାତ୍ର ତାଙ୍କର ଦୃଷ୍ଟିକୋଣକୁ ବଦଳାଇ ପାରି ନଥିଲା ।

ରାଧାନାଥଙ୍କର ବର୍ଣ୍ଣିଳ ପ୍ରକୃତି ସମ୍ପର୍କରେ ଅନେକ ଆଲୋଚନା ହୋଇଛି । ଏମିତିରେ ଦେଖିବାକୁ ଗଲେ, ପ୍ରକୃତି ବର୍ଣ୍ଣନା ହେଉଛି ଯେକୌଣସି କାବ୍ୟର ଅବିଚ୍ଛେଦ୍ୟ ଅଙ୍ଗସ୍ୱରୂପ ।

ପ୍ରତ୍ୟେକ କବି ନିଜ କାବ୍ୟରେ ପ୍ରକୃତିର ଚାରୁଚିତ୍ର ଅଙ୍କନ କରିବେ ବୋଲି ଶାସ୍ତ୍ରୀୟ ନିର୍ଦ୍ଦେଶ ମଧ୍ୟ ରହିଛି। ରାଧାନାଥ ହେଉଛନ୍ତି ପ୍ରଥମ କବି ଯେ କି ପ୍ରକୃତିକୁ 'ପବିତ୍ର ସୁନ୍ଦର ସୁନ୍ଦର ପାବନ' ରୂପରେ ଦେଖିଥିଲେ ଏବଂ ସେଇ ଭଳି ଭାବରେ ତାକୁ ଶ୍ରଦ୍ଧା ତଥା ସମ୍ମାନ ଜଣାଇଥିଲେ। ଉତ୍କଳୀୟ ପ୍ରକୃତି ରାଧାନାଥଙ୍କ ଲେଖନୀରେ 'ଶୋକ ପାଶୋରା ଅପସରା ଭୁବନ'ର ଗୌରବ ଲାଭ କରିଛି ଏବଂ କର୍ମନିବନ୍ଧନ ସମଗ୍ର ଓଡ଼ିଶା ପର୍ଯ୍ୟଟନ କରୁଥିବାବେଳେ ପ୍ରକୃତି ସହିତ ତାଙ୍କର ଅନ୍ତରଙ୍ଗ ପରିଚୟ ଘଟିଥିଲା ବୋଲି କବି ସୂଚାଇଛନ୍ତି। ସେ କହନ୍ତି, "ମୋର ରଚନା ସହିତ ଜୀବନର କୌଣସି ସମ୍ପର୍କ ନାହିଁ। ମୁଁ କେବଳ ବହିଃସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଘେନି ବ୍ୟାପୃତ ଥିଲି। ପାର୍ବତୀୟ ପ୍ରଦେଶରେ ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ଆଳାପ ପରିଚୟର ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି। ମୋର ଓଡ଼ିଆ କାବ୍ୟଗୁଡ଼ିକ ଉତ୍କଳୀୟ ପ୍ରକୃତିର ପ୍ରତିକୃତି କହିଲେ ଚଳେ।" (ଉତ୍କଳ ସାହିତ୍ୟ ୧୩ଶ ଭାଗ-୨ୟ ସଂଖ୍ୟା) ଏହି ଉଦ୍ଧୃତିର ପ୍ରଥମରୁ କବି ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାକୁ ବିଶ୍ୱାସ କରିବାର କୌଣସି କାରଣ ଆମେ ଦେଖୁନାହୁଁ। କବି ଜୀବନ ତାହାର କାବ୍ୟକୁ ପ୍ରଭାବିତ କରୁଥିବା ଏକ ପ୍ରମାଣିତ ସତ୍ୟ ହୋଇଥିବାରୁ ରାଧାନାଥଙ୍କ କ୍ଷେତ୍ରରେ ଏହାର ବ୍ୟତ୍ୟୟ ଘଟିବାର କୌଣସି କାରଣ ନାହିଁ। ରାଧାନାଥଙ୍କର ଜୀବନ ପ୍ରତି ଦୃଷ୍ଟିକୋଣ ଯେ ତଦୀୟ କାବ୍ୟରେ ବିପୁଳ ଭାବରେ ପ୍ରତିଫଳିତ ଏହା ମଧ୍ୟ ଆଜି କୌଣସି ପ୍ରମାଣର ଅପେକ୍ଷା ରଖେନାହିଁ। କବିମାନେ ଅନେକ ସମୟରେ କେବଳ କହିବାପାଇଁ ଏଭଳି ଅନେକ କଥା କହିଥାଆନ୍ତି। ରାଧାନାଥ ତାହାହିଁ ଏଠାରେ କହିଛନ୍ତି।

ବସ୍ତୁତଃ ଅନ୍ତଃ ପ୍ରକୃତି ଏବଂ ବହିଃ ପ୍ରକୃତି ଏ ଦୁଇ ବିଭାବ ମଧ୍ୟରୁ କବି ବହିଃ ପ୍ରକୃତିର ବିଶ୍ଳେଷଣରେ ଅଧିକ କୃତିତ୍ୱ ଦେଖାଇଥିବାର ତାଙ୍କର ରଚନାବଳୀରୁ ପ୍ରମାଣିତ ହେଉଛି। ମଣିଷ ଚରିତ୍ର ସମ୍ପର୍କରେ ତାଙ୍କର ଯେ ଗଭୀର ଅନୁଭୂତି ନ ଥିଲା, ଏହା ନୁହେଁ। ତେବେ ସେ ଯେଉଁ ରାଜ ପୁରୁଷମାନଙ୍କୁ ତାଙ୍କ କାବ୍ୟରେ ସ୍ଥାନ ଦେଇଛନ୍ତି, ସେମାନେ ମୁଖ୍ୟତଃ କିମ୍ବଦନ୍ତୀ, ପୁରାଣ କିମ୍ବା ଇତିହାସର ପାତ୍ରପାତ୍ରୀ ହୋଇଥିବାରୁ ସ୍ନେହପ୍ରେମ ହିଂସା ପ୍ରତିଶୋଧ କ୍ଷମାର ଅତିରୂପଟି ହିଁ ସେମାନଙ୍କ ପାଇଁ ଉପଯୁକ୍ତ ବୋଲି କବିଙ୍କର ଦୃଢ଼ ବିଶ୍ୱାସ ହୋଇଛି। କବି ଏମାନଙ୍କୁ ଯେତେ ପାଖରୁ ଦେଖିଛନ୍ତି, 'ଅହମିକା'ର ଉଲ୍ଲଙ୍ଗ ପ୍ରଦର୍ଶନର ଅସାରତା ସମ୍ପର୍କରେ ତାଙ୍କର ଧାରଣା ସେତେ ଦୃଢ଼ ହୋଇଛି ଏବଂ ସେ ଦାର୍ଶନିକ ହୋଇ ଯାଇଛନ୍ତି। ତେଣୁ ମାନବ ହୃଦୟର ଗଭୀର ଭାବକୁ ବିଶ୍ଳେଷଣ କରି ଚରିତ୍ରଗୁଡ଼ିକୁ ପୂର୍ଣ୍ଣତା ଦେବାରେ ସେ ସମର୍ଥ ହୋଇ ପାରିନାହାନ୍ତି। ତୁଚ୍ଛସାର ଯଶ ପାଇଁ ମଣିଷର କାମୁଡ଼ା କାମୁଡ଼ି ଯେ ଶେଷରେ ଛଅଖଣ୍ଡି କାଠ ଉପରେ ଶେଷ ହୋଇଯିବ, ଏହା ତାଙ୍କର ଦୃଢ଼ ଭାବରେ ଉପଲବ୍ଧି ହୋଇଛି ଏବଂ 'ଦରବାର' ତଥା 'ମହାଯାତ୍ରା' ହେଉଛି ତାଙ୍କର ଏହି ଅନୁଭୂତିର ସର୍ବିଶେଷ ରୂପ।

ମଣିଷକୁ ଯେତେ ଦେଖିଛନ୍ତି, ତାହାର ଛଳନା ପରାୟଣ ଆଚରଣ ପ୍ରତି ତାଙ୍କର ସେତେ ବିତୃଷ୍ଣା ଜାତ ହୋଇଛି। ଏହି କାରଣରୁ ହିଁ ସେ ବହିଃ ପ୍ରକୃତିର ଶାନ୍ତିମୟ କ୍ରୋଡ଼ରେ ପ୍ରଶାନ୍ତିର ଅନ୍ୱେଷଣ କରିଛନ୍ତି। ନିଜର ଶେଷ ଜୀବନ ସେଇଠାରେ ନିଶ୍ଚିନ୍ତରେ କଟାଇ ଦେବେ ବୋଲି କାମନା କରି ଲେଖିଛନ୍ତି।

କରିଥିଲି ଆଶା କରିବି ଯାପନ,
ତୋ ପଶ୍ଚିମତୀରେ ପଶ୍ଚିମ ଜୀବନ।

ଏବଂ ଏହା ସମ୍ଭବ ହୋଇ ପାରିନଥିବାରୁ ଗଭୀର ନିରାଶାରେ ମୂହ୍ୟମାନ ହୋଇପଡ଼ିଛନ୍ତି। ସଂସାରର କୋଳାହଳ ଅପେକ୍ଷା ପ୍ରକୃତିର ନିର୍ଜନତା ହିଁ ତାଙ୍କୁ ଅଧିକ ଆକୃଷ୍ଟ କରିଛି। ଦୃପ୍ତ ମାନବର ଅହଙ୍କାର ପୂର୍ଣ୍ଣ ହୁଙ୍କାର ଅପେକ୍ଷା ଅରଣ୍ୟର କେଉଁ ଏକ ଅଜଣା ପକ୍ଷୀର କାକଳି ତାଙ୍କ କାନକୁ ଅଧିକ ତୃପ୍ତିପ୍ରଦ ମନେ ହୋଇଛି। ତେଣୁ ସେ ତାହାରି ମଧ୍ୟରେ ହଜି ଯିବାପାଇଁ ସତତ ବ୍ୟାକୁଳ ହୋଇ ପଡ଼ିଛନ୍ତି। ଏହି କାରଣରୁ ହିଁ ସେ ମଣିଷ ପ୍ରକୃତି ଅପେକ୍ଷା ବିଶ୍ୱପ୍ରକୃତିର ଚିତ୍ରଣରେ ଅଧିକ ସ୍ୱଚ୍ଛନ୍ଦ। ଏହାର ବର୍ଣ୍ଣନାରେ ତେଣୁ କଳ୍ପନା ବିଳାସ ଅପେକ୍ଷା ତାଙ୍କର ଦୃଷ୍ଟି ଓ ଦର୍ଶନ ଅଧିକ ସମ୍ବେଦନଶୀଳ ଅଧିକ ସକ୍ରିୟ ହୋଇଥିବାର ଦେଖାଯାଉଛି। ବିଶାଳ ଓଡ଼ିଶାର ନଦୀ ଗିରି ଅରଣ୍ୟ ହ୍ରଦ ଉପତ୍ୟକା, ପ୍ରଭାତ ସନ୍ଧ୍ୟା, ଋତୁଚିତ୍ର, ଫଳଫୁଲ, ପଶୁପକ୍ଷୀ – ଏ ସମସ୍ତ ହିଁ ତାଙ୍କର ମନଯୋଗ ଆକର୍ଷଣ କରିଛନ୍ତି। 'କାଚଧାର' ପ୍ରାୟେ 'ସ୍ୱଚ୍ଛ ଜଳଧାର' ତାଙ୍କୁ 'ଦେବମନପ୍ରାୟେ ଉଦାର' ଏବଂ 'ତ୍ରିଭୁବନର' ଫୁଜିତ ପୁଣ୍ୟରାଶି' ଭଳି ଏବଂ 'ମହତଙ୍କରୀତି' ଭଳି 'ପୂର୍ଣ୍ଣଥାଇ ଶୂନ୍ୟପ୍ରାୟେ' ଦିଶିଛି। ସାରୀ, ଶୁଆ, ଶ୍ୟାମା, ଚଷାପୁଅ, ମୁନିଆ, ଭଦଭଦଳିଆ, ହଳଦୀ ବସନ୍ତ, ମୟୂର ପ୍ରଭୃତି ଆରଣ୍ୟ ପକ୍ଷୀକୁଳର ଲଳିତ କାକଳି 'ଜଗତର ସତ୍ୱ ଗୁଣରାଶି' ତୁଲ୍ୟ କବିଙ୍କୁ ପ୍ରତୀୟମାନ ହୋଇଛି ଏବଂ ଏଭଳି 'ସ୍ୱର୍ଗୀୟ ଦୃଶ୍ୟ'ରେ କବି ମୋହିତ ହୋଇ ତାହାକୁ ନୟନରେ ପାନ କରିଛନ୍ତି ଏବଂ 'ସ୍ୱର୍ଗୀୟ ଗୀତ'କୁ ଶ୍ରବଣରେ ପିଇଛନ୍ତି। ମୋଟାମୋଟି ଭାବରେ ତେଣୁ କୁହାଯାଇପାରେ ଯେ, ବହିଃ ପ୍ରକୃତିର ସାତ୍ତ୍ୱିକ ଏବଂ ରାଜସିକ ରୂପ ଅଙ୍କନ କରି ତାହାକୁ ସକଳ ଶାନ୍ତିର ଆସ୍ୱାଦ ରୂପରେ ଉପସ୍ଥାପନ କରିବା ନିମନ୍ତେ କବିଙ୍କର ବ୍ୟାକୁଳତା ତଦୀୟ କାବ୍ୟର ଛତ୍ରେ ଛତ୍ରେ ଦେଖିବାକୁ ମିଳିଥାଏ। କେବଳ ସେତିକି ନୁହେଁ, ପ୍ରକୃତିର ହାତଧରି ସେ ଓଡ଼ିଶାର ଭୌଗୋଳିକ ମାନଚିତ୍ର ମଧ୍ୟ ତାଙ୍କର କାବ୍ୟରେ ଦେବାକୁ ଭୁଲି ନାହାନ୍ତି। ପାର୍ବତୀ କାବ୍ୟରେ ଗଙ୍ଗେଶ୍ୱର ଦେବଙ୍କର ବିଜୟ ଜ୍ଞାପନ ସୂଚକ ଅଗ୍ନିଶିଖା ସୁଦୂର ମୟୂରଭଞ୍ଜରୁ ରାତାରାତି ପୁରୀ ପର୍ଯ୍ୟନ୍ତ ପରିଦୃଶ୍ୟମାନ ହେବା ମାଧ୍ୟମରେ ସେ ମେଘାସନଠାରୁ ଆରମ୍ଭ କରି ପୁରୀ ଜିଲ୍ଲାର ବିଶ୍ୱନାଥ ମୁଣ୍ଡିଆ ପର୍ଯ୍ୟନ୍ତ ଗିରି ଶିଖର ଗୁଡ଼ିକର ନାମ ଏବଂ ସେଠାରେ ବସବାସ କରି ରହିଥିବା ଆଦିବାସୀ ସମ୍ପ୍ରଦାୟର ତାଲିକା ପାଠକମାନଙ୍କୁ ଦେଇଛନ୍ତି। ପୁଣି ବିଜୟୀ ଗଙ୍ଗେଶ୍ୱରଙ୍କ ଗହଣରେ ଆସିଥିବା

ଛତିଶ ଗଡ଼ଜାତର ରାଜନ୍ୟ ମଣ୍ଡଳୀର ଶୌର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ପ୍ରତ୍ୟେକ ରାଜ୍ୟର ଭୌଗୋଳିକ ତଥା ପ୍ରାକୃତିକ ବୈଶିଷ୍ଟ୍ୟର ସୂଚନା ଦେବାକୁ ଭୁଲି ନାହାନ୍ତି। ଏହିଭଳି ଭାଷାରେ କବି ତାଙ୍କର ପ୍ରତ୍ୟେକ କାବ୍ୟରେ ଓଡ଼ିଶାର ପ୍ରତ୍ୟେକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନରେ (ଇତିହାସ, ପୁରାଣ ଅବା କିମ୍ବଦନ୍ତୀ ଦୃଷ୍ଟିରୁ) ଭୌଗୋଳିକ ବର୍ଣ୍ଣନା ଦେଇ, ସେ ସ୍ଥାନ ସମୂହର ପ୍ରାକୃତିକ ବୈଶିଷ୍ଟ୍ୟ ସମ୍ପର୍କରେ ମଧ୍ୟ ସୂଚନା ଦେଇଛନ୍ତି। ବସ୍ତୁତଃ କହିବାକୁ ଗଲେ, ରାଧାନାଥ କାବ୍ୟରେ ଅତ୍ରତ୍ୟ ଭୂଗୋଳ ଇତିହାସ, ପୁରାଣ, କିମ୍ବଦନ୍ତୀ ଏବଂ ପ୍ରକୃତି ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ପଡ଼ିଥିବାର ଦେଖାଯାଉଛି, ଅନ୍ତତଃ କବି ଏଗୁଡ଼ିକୁ ସେଇ ଭାବରେ କଳ୍ପନା କରିଛନ୍ତି। ରାଧାନାଥଙ୍କର ବିସ୍ତୃତ ଭୂଗୋଳ ଜ୍ଞାନ ଯେ, ତାଙ୍କୁ ଉତ୍କଳୀୟ ପ୍ରକୃତିର ଏ ଭଳି ଚମତ୍କାର ଏବଂ ପ୍ରଭାବଶାଳୀ ରୂପ ବର୍ଣ୍ଣନାରେ ସାହାଯ୍ୟ କରିଛି, ଏହା ନ କହିଲେ ମଧ୍ୟ ଚଳିବ। ପ୍ରକୃତି ବର୍ଣ୍ଣନାରେ କବି ଅପ୍ରତିଦ୍ୱନ୍ଦ୍ୱୀ। କେବଳ ମାତ୍ର ଗଂଗାଧରଙ୍କ ଭଳି ସେ ପ୍ରକୃତିର ପୂର୍ଣ୍ଣ ମାନବାୟନ ଘଟାଇ ପାରି ନାହାନ୍ତି, ଅନ୍ତତଃ ତାଙ୍କର ଚିନ୍ତା ସେ ଦିଗରେ ପ୍ରସାରିତ ହୋଇ ନାହିଁ। ମାନବପ୍ରକୃତି ଉପରେ ବହିଃପ୍ରକୃତିର ପ୍ରଭାବ ସମ୍ପର୍କରେ କବି ଯେ ଅଜ୍ଞଥିଲେ, ଏ କଥା ମଧ୍ୟ ନୁହେଁ। ତେବେ କେତେକ କ୍ଷେତ୍ରରେ, ବିଶେଷ କରି 'ପାର୍ବତୀ' କାବ୍ୟରେ ପ୍ରକୃତିର ଆନନ୍ଦମୟ ରୂପ ପରିକଳ୍ପନା କରି ବିପରୀତ ମାନସିକତାରେ ମଣିଷ ମନରେ ପ୍ରକୃତିର ଏହି ଧରଣର ଉଲ୍ଲାସମୟୀ ରୂପର ପ୍ରତିକୂଳ ପ୍ରଭାବକୁ କବି ସମ୍ପୂର୍ଣ୍ଣ ରୂପେ ଅସ୍ୱୀକାର କରିଯାଇଛନ୍ତି। ପ୍ରକୃତି ନିଜେ ଶୁଭ୍ର, ଏହାର ସଂସାର ମଧ୍ୟ ଶୁଭ୍ରମୟ। ଏଥିରେ କଳୁଷର କାଳିମାର ଲେଶ ମାତ୍ର ଥିବାର ରାଧାନାଥ ଦେଖି ନାହାନ୍ତି ଏବଂ ସେଭଳି ଭାବରେ ସେ ଏହାକୁ ନିଜ କାବ୍ୟରେ ସ୍ଥାନ ଦେଇଛନ୍ତି। ପ୍ରକୃତି ବର୍ଣ୍ଣନାରେ କବିଙ୍କର ପଟୁତାକୁ ସ୍ମରଣ କରି ସମାଲୋଚକମାନେ ରାଧାନାଥଙ୍କୁ ସୁନ୍ଦର'ର କବି ରୂପରେ ଆଖ୍ୟାୟିତ କରିଛନ୍ତି। ଏ ଦିଗରୁ ରାଧାନାଥଙ୍କୁ ସଂସ୍କୃତ କବି କାଳିଦାସଙ୍କ ସହିତ ତୁଳନା କରାଯାଇପାରେ।

ସୌନ୍ଦର୍ଯ୍ୟ ପରିସ୍ଫୁଟନ ନିମନ୍ତେ ରାଧାନାଥ ଉଭୟ ମଣିଷ ଏବଂ ବହିଃ ପ୍ରକୃତିକୁ ଗ୍ରହଣ କରିଛନ୍ତି। ପୁରୁଷ ରୂପ ବର୍ଣ୍ଣନା ଅପେକ୍ଷା ଅନ୍ୟାନ୍ୟ କବିଙ୍କ ଭଳି ରାଧାନାଥ ନାରୀ-ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ଅଧିକ ମନଯୋଗୀ ହୋଇଛନ୍ତି। ନାରୀର ଭୋଗିନୀ ମୂର୍ତ୍ତିହିଁ ରାଧାନାଥୀ-କାବ୍ୟ ସାହିତ୍ୟରେ ଅଧିକ ପରିସ୍ଫୁଟ। କେଦାର ଗୌରୀ, ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା, ପାର୍ବତୀ କାବ୍ୟରୁ ଏହାର ସତ୍ୟତା ପ୍ରମାଣ କରାଯାଇପାରେ, ଯଦିଓ ଜାୟା ଏବଂ ଜନନୀ ରୂପରେ ନାରୀର ଉପସ୍ଥାପନା ତାଙ୍କର କେତେକ କାବ୍ୟରେ କରାଯାଇଛି। ତେବେ ରାଧାନାଥଙ୍କର ରୂପପାୟୀ ଚକ୍ଷୁ ଶାଳୀନତାର ସୀମା ମଧ୍ୟରେ ନିଜକୁ ଆବଦ୍ଧ କରି ରୀତିକାବ୍ୟର ଶୃଙ୍ଗାରିକତାକୁ ଅନେକ ଅଂଶରେ ଗ୍ରହଣୀୟ ରୂପ ଦେଇଛି। ନାରୀ ତେଣୁ ରାୟ-କାବ୍ୟରେ ବେଶ୍ ସ୍ୱାଭାବିକ ଏବଂ ସ୍ୱଚ୍ଛନ୍ଦ। ଦେହର ଦାହରୁ ହିଁ ରାଧାନାଥଙ୍କର ଅଧିକାଂଶ କାବ୍ୟରେ ସମସ୍ୟା ଉଦ୍‌ଭୂତ ହୋଇଛି।

ମାତ୍ର ସେଥିପାଇଁ ସେ ରୀତି କବିମାନଙ୍କର ପନ୍ଥା ଗ୍ରହଣ କରି ନାହାନ୍ତି। ଗୋଟିଏ ଉଦାହରଣ ଦେଲେ କଥାଟି ବୋଧ ହୁଏ ଅଧିକ ସ୍ପଷ୍ଟ ହେବ। ଉଷାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ରାଧାନାଥ ଲେଖିଛନ୍ତି।

'ଇନ୍ଦ୍ରାୟୁଧେ ତାର ଅଧଃବିମ୍ବେ ନହେ ଯେଉଁ ତୁଳନା
ତହୁଁ ବଳି ଇନ୍ଦୁ ସଂଗେ ସୁନ୍ଦରୀର ତୁଳା ଅଲଣା–'

ଆକାଶର ଇନ୍ଦ୍ରଧନୁ ଏବଂ ନିମ୍ନରେ ତାହାର ପ୍ରତିବିମ୍ବ ମଧ୍ୟରେ ତୁଳନା ଯେଉଁ ଭଳି ଅଯଥାର୍ଥ, ଉଷା ସହିତ ଚନ୍ଦ୍ରର ତୁଳନା ମଧ୍ୟ ସେଇଭଳି ଅବାସ୍ତବ। ପ୍ରକୃତବସ୍ତୁ ସହିତ ତାହାର ଛାୟା କେବେହେଲେ ତୁଳିତ ହେବା ଉଚିତ ନୁହେଁ। ଏଠାରେ ଯେଉଁ ଉପମା ବ୍ୟବହୃତ ହୋଇଛି, ତାହା ନିଶ୍ଚିତ ଭାବରେ ରୀତି ଯୁଗୀୟ। ମାତ୍ର ରୀତି କାବ୍ୟରେ ଏଥିରେ ଯେଉଁ ଶୃଙ୍ଗାରିକତାର ସ୍ପର୍ଶ ଦିଆଯାଇଥାଏ, ରାଧାନାଥ ସାବଧାନତାର ସହିତ ତହିଁରୁ ନିଜକୁ ଦୂରେଇ ରଖିଥିଲେ। ରୀତି କବିମାନେ ନାରୀକୁ ପୁରୁଷର ଭୋଗ୍ୟବସ୍ତୁ ବ୍ୟତୀତ ଅନ୍ୟ କୌଣସି ଉଚ୍ଚ ମର୍ଯ୍ୟାଦା ଦେଇ ନାହାନ୍ତି। ଧନଞ୍ଜୟ ଭଞ୍ଜଙ୍କ କାମନା "ଉନ୍ନତସ୍ତନୀ ନାରୀମାନଙ୍କର ସ୍ତନରେ ମର୍ଦ୍ଦନ କରାନ୍ତି ଶରୀର। ଆପଣା ଭୋଗରେ ହୋଇ ଆସକତି ସାହିତ୍ୟ ସଙ୍ଗୀତରେ ମନ ନେଉଥାନ୍ତି।" ଏହା ଉଣା ଅଧିକେ ପ୍ରାୟ ରୀତି କାବ୍ୟର ଆଦର୍ଶ ରୂପେ ଗୃହୀତ ହୋଇଛି। ସେ କାଳରେ ଏହା ବହୁମାନ ଲାଭ କରି ଥିଲେ ହେଁ, ବର୍ତ୍ତମାନ ପାଇଁ ଏ ରୀତି ସମ୍ପୂର୍ଣ୍ଣ ଭାବରେ ଅପ୍ରାସଂଗିକ ହୋଇ ପଡ଼ିଛି। ରାଧାନାଥ ନିଶ୍ଚୟ ଏହା ଅନୁଭବ କରିଥିବେ।

ଦୀନକୃଷ୍ଣ ଲେଖିଥିଲେ – "କବି ଯେ ସତ ମିଛ କରି କହନ୍ତି, କବିତ୍ୱ ଚାତୁରୀରେ ମନ ମୋହନ୍ତି।" 'କବୟଃ ନିରଙ୍କୁଶାଃ' ଏହି ମନ୍ତବ୍ୟରୁ ସେ କାଳର କବିମାନେ ଦୃଢ଼ ଭାବରେ ବିଶ୍ୱାସ କରି ନେଇଥିଲେ ଯେ, କଳ୍ପନାର ବାହନରେ ସେମାନେ ସ୍ୱେଚ୍ଛା ବିହାର କରି ଯାହା ଇଚ୍ଛା ତାହା ବର୍ଣ୍ଣନା କରି ଯାଇ ପାରନ୍ତି। ପାଠକ ତା ଭିତରେ ଯୌକ୍ତିକତା, ଯଥାର୍ଥତା ଇତ୍ୟାଦି ଖୋଜିବାକୁ ଯିବା ଉଚିତ ନୁହେଁ। ନାରୀଟିଏ ତେଣୁ ପଲ୍ଲବିନୀ ସଂଚାରିଣୀ ସୁବର୍ଣ୍ଣ ଲତିକା ହୋଇପାରେ। ସପତ ଜାତି ଫଳଫୁଲ ବିହଙ୍ଗ ଏହି ଲତାରେ ବସବାସ କରି ରହିପାରେ। କିଛି ଅବିଶ୍ୱାସ୍ୟ ନୁହଁ। ରାଧାନାଥ-ଆଧୁନିକ ଯୁଗର ପ୍ରାଣ ପ୍ରତିଷ୍ଠାତା ରୂପରେ ପ୍ରଥମେ ଏଥିରେ ଖୋଜିଲେ ଯୌକ୍ତିକତା। କାବ୍ୟିକ ଯୁକ୍ତି ଏମନ୍ତ ଭାବରେ ବିଶ୍ୱାସ ଯୋଗ୍ୟ, ଯଥାର୍ଥ ହେବା ଆବଶ୍ୟକ। 'ଯଯାତିକେଶରୀ' କାବ୍ୟରୁ ଗୋଟିଏ ଉଦାହରଣ ପରୀକ୍ଷା କରାଯାଉ। ଯଯାତି ଉତ୍କଳ ଜେମା ଲଳିତାର ପ୍ରଣୟ ମୁଗ୍ଧ। ମାତ୍ର ତାଙ୍କର ବର୍ତ୍ତମାନ ଅବସ୍ଥାରେ ଜେମା ଆଡ଼କୁ ହାତ ବଢ଼ାଇବା ହେଉଛି ବାମନ ଚନ୍ଦ୍ର ଧରିବାକୁ ଦୁଃସାହସ କରିବା ତୁଲ୍ୟ। ତେଣୁ ସେ ମନକଥା ମନରେ ରଖି ଦୁଃସହ ମନୋବେଦନା ଭୋଗୁଛନ୍ତି। ଏତିକିବେଳେ ଯଯାତିଙ୍କର ଯମଜ ଭଗ୍ନୀ ବିମଳା ଲଳିତା ନିକଟରୁ ଫେରି ଆସି

ତାଙ୍କ ପ୍ରତି ଲଳିତାର ଆବେଗପ୍ରବଣ-ଆସକ୍ତି କଥା ବର୍ଣ୍ଣନା କରୁଛନ୍ତି। ଏତିକି ଶୁଣି ଯଯାତିଙ୍କର ମୃତପ୍ରାୟ ଆଶା ଆଦ୍ୟ ବାରିପାତରେ ତୃଣାଙ୍କୁର କଅଁଳି ଉଠିଲା ଭଳି କୁଆଁ ମେଲି ଦେଉଛି। କବିଙ୍କ ଭାଷାରେ 'ଛାରମଣ୍ଡୁ ଥିଲା ଜୀବନକୁ ଯେହୁ ଏବେ ଆଶା ବାରିଲହି ଶୁଷ୍କ ପ୍ରାୟ ହୃଦେ ପ୍ରେମାଙ୍କୁର ତାର ଉଠିଲା ପୁଣି ପଲ୍ଲବି।' ଏଠି ଆମେ ଦେଖୁଛୁ ଯୁକ୍ତିବାଦୀ ଆଧୁନିକ କବି ରାଧାନାଥଙ୍କୁ ଯେ କାର୍ଯ୍ୟଟିଏ ଦେଖାଇବା ଆଗରୁ ତାର କାରଣଟିକୁ ଚିହ୍ନାଇ ଦେଇଛନ୍ତି। ଏହି ପଦ୍ଧତି ହିଁ ତାଙ୍କର କାବ୍ୟ ନିଚୟକୁ ବିଶ୍ୱାସ ଯୋଗ୍ୟ ଏବଂ ଗ୍ରହଣୀୟ ରୂପ ଦେଇଛି। ହୁଏତ କୁହାଯାଇ ପାରେ ଯେ, କବି ତାର୍କିକ ନୁହନ୍ତି କିମ୍ବା ଗାଣିତିକ ମଧ୍ୟ ନୁହନ୍ତି। ହିସାବ କିତାବ କରି ଯୌକ୍ତିକତାର ଅଙ୍କ କଷୁ କଷୁ ଆବେଗର ସରସ ପ୍ରାଣସତ୍ତାଟି କାବ୍ୟ ମଧ୍ୟରୁ ଚିରତରେ ଶୁଷ୍କ ହୋଇଯିବ। ମାତ୍ର ଯଥାର୍ଥରେ ତାହା ହୁଏ ନାହିଁ। ଏହି ପଦ୍ଧତିରେ ହିଁ ଆବେଗ ଅଧିକ ପ୍ରାଣବନ୍ତ ହୁଏ। ଅବଶ୍ୟ ଏହା ଅଭ୍ୟାସର କଥା।

ଏହାର ଆଉ ଗୋଟିଏ ଦିଗ ମଧ୍ୟ ରହିଛି, ଯେଉଁ ବିଷୟରେ ପ୍ରଶ୍ନ ଉଠାଯାଇପାରେ। ମଣିଷ ଯେତେବେଳେ ଯାହା ଚାହେଁ ସଂସାରରେ ସବୁବେଳେ ତାହା ଘଟେ ନାହିଁ। ସ୍ୱପ୍ନାଚ୍ଛନ୍ନ ଭଳି ନୀର ଆଶାରେ ଧାଇଁ ଧାଇଁ ଶେଷରେ ତୃଷାର୍ତ୍ତ ପଥିକ ଭେଟେ ମରିଚୀକାକୁ। ତା'ର ସ୍ୱପ୍ନଭଙ୍ଗ ହୁଏ। ମଧ୍ୟଯୁଗୀୟ କାବ୍ୟ ପରମ୍ପରାରେ ଏହି 'ଆଶାଭଙ୍ଗ'ର ସମ୍ବାଦ ଖୁବ୍ ସ୍ପଷ୍ଟ ନୁହେଁ। ସେଠି ସବୁ ଫର୍ମୁଲା ଭିତରେ ବନ୍ଧା ହୋଇଥାଏ। ଘଟଣା ଘଟେ ଗୋଟିଏ ଅପରର ପରିପୂରକ ଭାବେ ରାଧାନାଥ ହୁଏତ ପ୍ରଥମ ଥର ପାଇଁ ନିଜ କାବ୍ୟରେ ଏଇ ସ୍ୱପ୍ନଭଙ୍ଗର ବିବରଣୀକୁ ସ୍ଥାନ ଦେଲେ। 'ପାର୍ବତୀ' କାବ୍ୟର ଘଟଣା ବିନ୍ୟାସ ରୀତିକୁ ଏ ପ୍ରସଙ୍ଗରେ ସ୍ମରଣ କରାଯାଇପାରେ। ଗଙ୍ଗେଶ୍ୱର ଦେବ ଅତ୍ୟାଚାରୀ, ପରପୀଡ଼କ, ଦମ୍ଭୀ-ତଥାପି ସେ ଗୋଟିଏ ବିଶ୍ରୁତ ବଂଶଲତାର ପୁଷ୍ପିତ ଅନୁକ୍ରମ। ସେ କେବେହେଲେ ଏଭଳି କୌଣସି କାର୍ଯ୍ୟ କରିବେ ନାହିଁ, ଯାହା ଜଗତ୍ ଚକ୍ଷୁରେ ନିନ୍ଦନୀୟ ହେବ। ଶେଷରେ ତାହାହିଁ କିନ୍ତୁ ଘଟିଯାଇଛି। ନିର୍ବାତ ନିଷ୍କମ୍ପ ଦୀପଶିଖା ପରି ଛାତିରେ ପଥର ଲଦି ପାର୍ବତୀ ନିଜ ସ୍ୱାମୀଙ୍କର କୀର୍ତ୍ତିକଳାପ ଶୁଣିଛନ୍ତି, ନିଜ ଦୁହିତା କୌଶଲ୍ୟାର ପ୍ରେତ ମୁହଁରୁ। କୌଶଲ୍ୟା ପାର୍ବତୀଙ୍କୁ ପ୍ରଶ୍ନ କରିଛି–

ଲୋଡ଼ା ହୋଇ ଥାନ୍ତା ନର ପିତ୍ତ ଯଦି
ରାଜାଙ୍କ ଔଷଧ ଲାଗି।
ଘାତକକୁ ବୁକୁ ପତାଇ ଦିଅନ୍ତା
ସର୍ବ ଅଗ୍ରେ ଏ ଅଭାଗୀ।

ସେ ସୁଯୋଗରୁ ତାକୁ ବଂଚିତ କରାଗଲା କାହିଁକି ? କୌଶଲ୍ୟା ପ୍ରଶ୍ନ ତା'ର ଦଣ୍ଡନୀୟ ଦୁର୍ଦ୍ଦଶା କ୍ରମଶଃ ରାଣୀ ପାର୍ବତୀଙ୍କ ମନକୁ ଅସ୍ଥିରତା ଭିତରୁ ସ୍ଥିରତା ଆଡ଼କୁ ନେଇ ଯାଇଛି। ରାଣୀ ଅବଶେଷରେ -

କଷ୍ଟେ ମନସ୍ୱିନୀ ଉତ୍ତରଂ କ୍ରୋଧ
ରୋଧି ତା'ଧୈର୍ଯ୍ୟ ରଜ୍ଜୁରେ
ନିଶାନ୍ତ ଅନ୍ଧାରେ ମୃତ୍ୟୁ ପଦଚାରେ
ଫେରିଗଲେ ହଂସ ପୁରେ''

ରାଣୀଙ୍କ ସହିତ ପାଠକ ମାନଙ୍କର ମଧ୍ୟ ସ୍ୱପ୍ନ ଭାଙ୍ଗି ଯାଇଛି। ରାଣୀଙ୍କ ଚିନ୍ତା ନିଷ୍କତିମୁଖୀ ହୋଇଛି। ପାଠକେ ମଧ୍ୟ ତା'ସହିତ ସ୍ୱର ମିଳାଇଛନ୍ତି। 'ଜଗତରେ ଯାହା ଲାଗି ଯେତେ ସୁଖ, ସେହି ପୁଣି ସେତେ ଦୁଃଖ ଦିଏ' ଏଇ ଭଳି ଏକ ଦାର୍ଶନିକ ବାଣୀ ଉଚ୍ଚାରଣ କରି ରାଧାନାଥ ନିଜର ପାଠକ ମାନଙ୍କୁ ଯେ କୌଣସି ଅଘଟଣ ନିମନ୍ତେ ପ୍ରସ୍ତୁତ କରି ନୀତିର ଅପ୍ରଶସ୍ତ ପଥ ଆଡ଼କୁ ଦର୍ଶକ ମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି। ବ୍ୟକ୍ତିଗତ ଜୀବନର ସେ ସ୍ଖଳନ (ଯାହା କବି ସ୍ୱୟଂ ପ୍ରକାଶ କରି ନଥିଲେ, ଅନ୍ୟ କାହାର ଜାଣିବାର ଉପାୟ ନଥିଲା) ବ୍ୟତୀତ, ରାଧାନାଥ ଏକ ପରିଚ୍ଛନ୍ନ ନୀତି ଲାଳିତ ପଥର ଯାତ୍ରୀଥିଲେ ଏବଂ ଯାହା ଲେଖିଥିଲେ, ଏହି ବିଶ୍ୱାସକୁ ନେଇ ହିଁ ଲେଖିଥିଲେ। ମର୍ଯ୍ୟାଦା ଲଂଘନ ତେଣୁ ରାଧାନାଥଙ୍କ ଚକ୍ଷୁରେ ଏକ ବିଶେଷ ଅପରାଧ। ଉଷା କାବ୍ୟର ଚିତ୍ରରଥ ଏହି ଅପରାଧରେ ମର୍ତ୍ତ୍ୟକୁ ଆସିଛନ୍ତି ଏବଂ 'ପାର୍ବତୀ' କାବ୍ୟର ଗଂଗେଶ୍ୱର ଦେବ ନିଜ ପତ୍ନୀଙ୍କ ଦ୍ୱାରା ମୃତ୍ୟୁ ବରଣ କରିଛନ୍ତି। କେବଳ ଚରିତ୍ରମାନଙ୍କୁ 'ଆତ୍ମଶୁଦ୍ଧି' କରାଇ କବି କ୍ଷାନ୍ତ ହୋଇ ନାହାନ୍ତି। ନିଜେ ମଧ୍ୟ ଶେଷ ଜୀବନରେ ଏଇଥିପାଇଁ କି ଦାରୁଣ ମାନସିକ ଅଶାନ୍ତିର ଶିକାର ହୋଇଛନ୍ତି। ତାହା ପାଠକ ମାତ୍ରେ ଜାଣନ୍ତି। ତାଙ୍କର ନିଜର ବକ୍ତବ୍ୟ ଅନୁସାରେ ''ମୋହର ଏପରି ମାନସିକ ଏବଂ ତନ୍ନିବନ୍ଧନ ଶାରୀରିକ ଯନ୍ତ୍ରଣା ହୋଇଅଛି ଯେ, ପ୍ରତ୍ୟହ ଆତ୍ମହତ୍ୟା କରିବାକୁ ପ୍ରବୃତ୍ତି ହୁଏ। ଅତି ତୀବ୍ର ସ୍ମୃତିଶୂଳ ସମ୍ପ୍ରତି ଦାରୁଣ ବାୟୁଶୂଳ ରୋଗରେ ପରିଣତ ହୋଇଅଛି। ଯନ୍ତ୍ରଣା ବଶତଃ ଅଧିକାଂଶ ସମୟ ମୁଁ ଶଯ୍ୟାରେ ପଡ଼ିରହିଥାଏ। ମୋପର ଗୋଟିଏ ନାମ ଘାତକ, ସେହି ମୋହ ଦୃଷ୍ଟାନ୍ତରେ କେବଳ ମନରେ ନୁହେଁ, ଶରୀରରେ ସୁଦ୍ଧା ଅନର୍ଥ ହୋଇଅଛି।'' ଆବେଗ ପ୍ରବଣ ହୃଦୟ ହେଉଛି ଦୁଃଖ ବୀଜ ପାଇଁ ଉର୍ବର କ୍ଷେତ୍ର। କବି ରାଧାନାଥ ଏହିଭଳି ଏକ ହୃଦୟର ଅଧିକାରୀ ଥିଲେ ଏବଂ ଘାତକ ପାପ ଦ୍ୱାରା ଦାରୁଣ ଶାରୀରିକ ଓ ମାନସିକ ଯନ୍ତ୍ରଣାର ଶିକାର ହୋଇଥିଲେ। ଏଇ 'ପାପବୋଧ' ଏବଂ ଆତ୍ମଶୁଦ୍ଧି' ନିମନ୍ତେ ତୀବ୍ର ହାହାକାର ଏହା ସହିତ ତାଙ୍କର ଆହରଣ ପ୍ରବୃତ୍ତିର କୌଣସି ସମ୍ପର୍କ ନାହିଁ। ଏଇଟି ସମ୍ପୂର୍ଣ୍ଣ ଏ ଦେଶୀୟ। ଅନୂଢ଼ା କନ୍ୟା ସହିତ ଦେହଜ ସମ୍ପର୍କ ସ୍ଥାପନ କରିବା ଯୌବନର ଧର୍ମ ହୋଇପାରେ, ମାତ୍ର ତାହା ପାପ। ତେଣୁ 'ଯଯାତି'ଙ୍କୁ ତାହାର ପ୍ରତିକାର ଲୋଡ଼ିବାକୁ ହୋଇଛି ଘୋର ଅପମାନ ମଧ୍ୟରେ ଏବଂ ଶେଷରେ ଦେବୀକୃପାରୁ ସେଥିରୁ ତାଙ୍କର ମୁକ୍ତି ଘଟିଛି। ମାତ୍ର ଗଂଗେଶ୍ୱର କ୍ଷିପ୍ର ସୂର୍ଯ୍ୟଙ୍କ କ୍ଷେତ୍ରରେ ଏହି 'ମର୍ଯ୍ୟାଦା ଲଂଘନା', ଗୁରୁତର ଅପରାଧ ହୋଇଥିବାରୁ

ଜଣେ ମୃତ୍ୟୁରେ ଏବଂ ଅନ୍ୟ ଜଣେ ନିଜର ପ୍ରିୟ ଦେଉଳର ଧ୍ୱଂସରେ ଏହାର ପ୍ରାୟଶ୍ଚିତ କରିଛନ୍ତି। ପୁଣି ନନ୍ଦିକାକୁ ମଧ ଏହି ମର୍ଯ୍ୟାଦା ଲଂଘନ ଅପରାଧରେ ଆତ୍ମହତ୍ୟା କରିବାକୁ ପଡ଼ିଛି। କୌଣସି ଦୈବୀଶକ୍ତି (ଯେମିତି ଯଯାତି କଳିତାଙ୍କ କ୍ଷେତ୍ରରେ ହୋଇଥିଲା) ତାଙ୍କୁ ଏହି ସ୍ୱାଭାବିକ ପ୍ରବୃତ୍ତି ପ୍ରକାଶର ତାରଲ୍ୟରୁ ରକ୍ଷା କରି ପାରି ନାହିଁ। ଏଠାରେ ରାଧାନାଥ କଠୋର ନୀତିବାଦୀ। ପ୍ରବଂଚିତା ଗୋଟିଏ ନାରୀ ଅପେକ୍ଷା ସନାତନ ସମାଜ ପାଇଁ ତାଙ୍କର ବିଶେଷ ଚିନ୍ତା। ସୁତାରେ ପିତାଙ୍କ ଚିର ଅଧିକାର ଏହି ଶାଶ୍ୱତ ଭାରତୀୟ ଦର୍ଶନ ହିଁ କବି କଳ୍ପନାର ନିୟନ୍ତା ହୋଇଛି।

ଉପସଂହାରରେ ତେଣୁ ସ୍ୱୀକାର କରିବାକୁ ହେଉଛି, ରାଧାନାଥଙ୍କର ଶିଳ୍ପୀ ସତ୍ତା ହେତୁବାଦୀ ପାଶ୍ଚାତ୍ୟ ଦର୍ଶନକୁ ଏହାର ଯଥାର୍ଥବାଦୀ କାରଣରୁ ଯେତିକି ଆପଣାର କରି ନେଇଥିଲା, ନୀତିବାଦୀ ପ୍ରାଚ୍ୟ ସଂସ୍କୃତିକୁ ଏହାର ଆଦର୍ଶବାଦୀ କାରଣରୁ ଠିକ୍ ସେଇ ପରିମାଣରେ କୋଳେଇ ନେଇଥିଲା। ଏହା ହିଁ ହେଉଛି ତାଙ୍କର ଆଧୁନିକତା। ସେ କାଳର ଅନ୍ୟ କୌଣସି କବି ଏହା କରିପାରି ନାହାନ୍ତି। ଏହି କାରଣରୁ ରାଧାନାଥ ଅନନ୍ୟ ଏବଂ ସ୍ମରଣୀୟ।

□ □ □

# ରାଧାନାଥଙ୍କ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ

ଡକ୍ଟର କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ

ପାଶ୍ଚାତ୍ୟ ସାହିତ୍ୟର କ୍ଲାସିକ୍ ଓ ରୋମାଣ୍ଟିକ କବିମାନଙ୍କ ପ୍ରେରଣାରେ ରାଧାନାଥଙ୍କ କାବ୍ୟଜଗତ ପରିପୁଷ୍ଟ। ରାଧାନାଥ ମଧୁସୂଦନଙ୍କର ସଙ୍କଳନ କବିତାବଳୀ (୧୮୭୬) ହେଉଛି ଆଧୁନିକ କାବ୍ୟ ଭାବନାର ଆଦି ସ୍ଥାପତ୍ୟ। ଏଥିରେ ସଙ୍କଳିତ ରାଧାନାଥଙ୍କର 'ପବନ' ଓ ମଧୁସୂଦନଙ୍କର 'ନିଶୀଥଚିନ୍ତା', 'ଶ୍ମଶାନ' ଓ କବିଦ୍ୱୟଙ୍କର ଅନ୍ୟାନ୍ୟ କବିତାରେ ଇଂରେଜୀ ରୋମାଣ୍ଟିକ୍ କବିଦୃଷ୍ଟିର ପ୍ରତିଫଳନ ପରିଦୃଷ୍ଟ ହୁଏ। ସେଲି-ୱାଡ଼ସୱାର୍ଥଙ୍କର ପ୍ରକୃତିପ୍ରାଣତାର ମିଶ୍ରରାଗ ରାଧାନାଥଙ୍କ 'ପବନ' କବିତାରେ ସ୍ପଷ୍ଟ। ପ୍ରକୃତିଠାରେ କାଳ ବା Eternityର ଅନାଦିତ୍ୱ ଆରୋପଣ କିମ୍ବା ପ୍ରକୃତିକୁ Wild Spirit ରୂପେ ଅନୁଭବ କରିବା ରୋମାଣ୍ଟିକ୍ କବି-ଭଙ୍ଗୀ ଏହାର ପ୍ରତିରୂପ ଏମାନଙ୍କ କବିତାରେ ସୁଲଭ। କବି ସ୍କଟ (୧୭୭୧-୧୮୩୨)ଙ୍କ ପ୍ରେରଣାରୁ ରାଧାନାଥ ସ୍ୱଦେଶର ଇତିହାସ, ମିଥ୍ ଓ ପ୍ରାକୃତିକ ପରିବେଶକୁ କାବ୍ୟ ସାମଗ୍ରୀ ଭୁକ୍ତ କରିଛନ୍ତି। ୱାଡ଼ସୱାର୍ଥ, ବାଇରନ୍, କୀଟ୍‌ସ ଇତ୍ୟାଦି କବିଙ୍କର ରୋମାନସ୍ ଏବଂ ପ୍ରକୃତି ପ୍ରତି ସେମାନଙ୍କ ଦୃଷ୍ଟିକୋଣର ପ୍ରଭାବ ରାଧାନାଥ ଓ ସମକାଳୀନ କବି ସମାଜକୁ ଅନେକ ପରିମାଣରେ ସ୍ପର୍ଶ କରିଛି (୧) ରାଧାନାଥଙ୍କ କାବ୍ୟରେ ବିଦେଶୀ କଥାବସ୍ତୁ ଆହରଣ ପ୍ରକ୍ରିୟାର ତିନୋଟି ବିଶିଷ୍ଟ ବିଭାଗ ସାଧାରଣତଃ ପରିଲକ୍ଷିତ ହୁଏ। ଯଥା : ବିଦେଶୀ କଥାବସ୍ତୁର ଆହରଣ, ଏ ଦେଶ ଉପାଦାନ ଭିତରେ ଆହୃତ ଉପାଦାନର ସାମ୍ୟ ଅନୁସନ୍ଧାନ ଓ ଏଇ ଉଭୟ ଉପାଦାନର ସାର୍ଥକ ସମୀକରଣ। (୨) ରାଧାନାଥ କାବ୍ୟରଚନା କରିବା ସମୟରେ ପୁରାଣ ଅପେକ୍ଷା ଇତିହାସ ପ୍ରତି ଅଧିକ ଦୃଷ୍ଟି ଦେଇଛନ୍ତି। ଇତିହାସ ପ୍ରତି ଦୃଷ୍ଟି ଦେବାବେଳେ ଦେଶପ୍ରେମ ଓ ଅତୀତର ଉପାସନା କବିଙ୍କର ଆଦର୍ଶ ହୋଇଛି। ଉଦାର ମାନବିକ ଦୃଷ୍ଟିକୋଣରୁ କାହାଣୀରେ କେବଳ ଦେଶୀୟ ଇତିହାସରେ ଗୁରୁତ୍ୱ ନଦେଇ ବିଦେଶର ବହୁ ଘଟଣାବଳୀ ଆହରଣ କରି ନିଜ କାବ୍ୟଶ୍ରୀକୁ ସୁମଣ୍ଡିତ କରିଛନ୍ତି। କବି ବିଦେଶୀ ଗଳ୍ପକୁ ଦେଶୀୟ ଛାଞ୍ଚରେ ଢ଼ାଳିବାଲାଗି ଭାରତୀୟ ପୁରାଣ ସାହିତ୍ୟର ଯେତିକି ଆଲୋଡ଼କ କରିଛନ୍ତି, ସ୍ଥାନୀୟ କିମ୍ବଦନ୍ତୀକୁ ପୌରାଣିକ ରୂପଦେବାରେ ସେତିକି ଫଳପ୍ରଦ ହୋଇଛନ୍ତି। (୩) ରାଧାନାଥଙ୍କ ସମୟରେ ଓଡ଼ିଶା କହିଲେ ପୁରୀ କଟକ ଓ ବାଲେଶ୍ୱର ଜିଲ୍ଲାକୁ ବୁଝା ଯାଉଥିଲା।

ଫଳରେ ଏ ଦେଶ ମାଟିରେ ବିଦେଶୀ ବିଷୟ ବସ୍ତୁର ଆରୋପ ପାଇଁ ସେ ଏଇ ତିନି ଜିଲ୍ଲାକୁ କ୍ରମାନ୍ୱୟରେ ଗ୍ରହଣ କରି ସେଠାରେ ଥିବା ଗ୍ରୀକ୍ ବିଷୟ ବସ୍ତୁର ଅନୁରୂପ ସ୍ଥାନ ନିର୍ବାଚନ କରିନେଇଛନ୍ତି। (୪) ପରିଚିତ ତୀର୍ଥସ୍ଥାନ, କିମ୍ବଦନ୍ତୀ, ଅତୀତର କୀର୍ତ୍ତିରାଜି ସହିତ କାହାଣୀର ସମନ୍ୱୟ କବିଙ୍କୁ ଅଧିକ ଜନପ୍ରିୟ କରାଇଛି। ପୌରାଣିକ ଉପାଦାନର ସାର୍ଥକ ସର୍ଜନାତ୍ମକ ବିନିଯୋଗ ତାଙ୍କର ବୈଶିଷ୍ଟ୍ୟ। ଭାର୍ଗବୀ ତଟରେ ପୁରାଣବୃଦ୍ଧ ଭୃଗୁ, ଦୟାକୂଳରେ ଦଧିଚୀ ମହର୍ଷି, ହିମାଳୟର ପାଦଦେଶରେ ଗୌରୀଗୁରୁ ପ୍ରଭୃତି ଏହାର ବଳିଷ୍ଠ ଉଦାହରଣ।

୧୮୮୫ ମସିହାରେ ବାଲେଶ୍ୱରର ବୈକୁଣ୍ଠନାଥଦେବଙ୍କ ଉତ୍କଳ ପ୍ରେସ୍‌ରୁ ପ୍ରକାଶିତ 'କେଦାରଗୌରୀ' ରାଧାନାଥଙ୍କର ପ୍ରଥମ କାବ୍ୟ। ଓଭିଡ଼ଙ୍କ ମେଟାମରଫୋସିସର ପିରାମସ୍-ଥିସବି କାହାଣୀ ଅବଲମ୍ବନରେ ରଚିତ କେଦାରଗୌରୀରେ କବି କାହାଣୀକୁ ଗୌଣକରି ଭୌଗଳିକ ସ୍ଥାନ ଓ ପ୍ରାକୃତିକ ଦୃଶ୍ୟବର୍ଣ୍ଣନାରେ ଗୁରୁତ୍ୱ ଆରୋପ କରିଛନ୍ତି। ଓଭିଡ଼ଙ୍କ କବିତାରେ ୧୧୦ଟି ପଙ୍‌କ୍ତି ଥିବାବେଳେ ରାଧାନାଥଙ୍କ କେଦାରଗୌରୀରେ ୧୦୮ଟି ପଦ ରହିଛି। ବେବିଲନ୍ ନଗରର କାହାଣୀକୁ ରାଧାନାଥ ଭୁବନେଶ୍ୱରରେ ଆରୋପଣ କରିଛନ୍ତି। ମେଟାମରଫୋସିସ୍‌ରେ ଉଲ୍ଲେଖ ଅଛି :—

Within the town of whose huge walls
So monostrous high and thick,
The fame is given semiramis for making them of brick,
Dwelt hard together two young folk in houses joined so near
That under all one roof well nigh both twain conveyed were.(୫)

ଅନୁରୂପ ରାଧାନାଥ କାବ୍ୟର ଆରମ୍ଭରେ ଲେଖିଛନ୍ତି :

"ହେମାଚଳ ଶିରେ ଲାଟ କେଶରୀ ରଚିଲେ ରମ୍ୟନଗର,
ଉତ୍କଳ ଭୁବନେ ଦେଶେ ଦେଶେ ଖ୍ୟାତ ହେଲା ଭୁବନଇଶ୍ୱର।
ବିନ୍ଦୁ ସରୋବର ଚାରିପାଶେ ସୌଧ ସୌଧ ଅନ୍ତେ ଘୋରବନ,
ଇନ୍ଦୁ ଚାରିଦିଗେ ଧଳା ମେଘମାଳା ନୀଳ ଗଗନେ ଯେସନ।" (୬)

ତେବେ ଓଭିଡ଼୍ ସେମିରାମିସ୍ ଉପରେ ପ୍ରାଧାନ୍ୟ ଦେଇଥିବାବେଳେ ରାଧାନାଥ ଭୁବନେଶ୍ୱରକୁ ଅଧିକ ଗୁରୁତ୍ୱ ଦେଇଛନ୍ତି। ଓଭିଡ଼ଙ୍କ ସିଂହୀ ବଦଳରେ ରାଧାନାଥ ବ୍ୟାଘ୍ରକୁ ଗ୍ରହଣ କରିଛନ୍ତି। ପ୍ରାଚ୍ୟ ସାହିତ୍ୟର ବେଦ, ଉପନିଷଦ, ପୁରାଣ, କାବ୍ୟ ପରିବର୍ତ୍ତେ କବିଙ୍କ ସୃଷ୍ଟିକୁ ନିୟନ୍ତ୍ରିତ କରିଛି ପାଶ୍ଚାତ୍ୟ ସାହିତ୍ୟ। ତେଣୁ ପ୍ରେମପାଗଳ କେଦାର ଗୌରୀ ସମାଜର ନୀତି ନିୟମ ଶୃଙ୍ଖଳକୁ ଛିନ୍ନ କରି ଆଗେଇ ଯାଇଛନ୍ତି -

ଅନ୍ଧାରେ ବାହାରି ପଙ୍କେରୁହମୁଖୀ ସଙ୍କେତସ୍ଥଳକୁ ଗଲା
ପ୍ରେମରେ ମଜ୍ଜିଲେ ଅସାଧ ସାଧନ ହେଲେ କରନ୍ତି ଅବଳା।" (୭)

ଓଭିଡ୍‌ଙ୍କ ବ୍ୟତୀତ ଚଷରଙ୍କ Legend of Good women ଓ ସେକ୍‌ସପିୟର୍‌ଙ୍କ Mid summer Nights Dreamର ପ୍ରଭାବ ମଧ୍ୟ ଏଥିରେ ଦେଖିବାକୁ ମିଳେ। କେଦାରଗୌରୀ ପୁସ୍ତକର ପ୍ରାରମ୍ଭରେ ଥିଲା – "ଭୁବନେଶ୍ୱରରେ କେଦାରଗୌରୀ ନାମରେ ଗୋଟିଏ ରମଣୀୟ ନିର୍ଝର ଅଛି। ନିମ୍ନଲିଖିତ ପଦ୍ୟରେ ସେଥିର ପୌରାଣିକ କଥା ଲିପିବଦ୍ଧ ହୋଇଛି।" ଏ ପୁସ୍ତକର ବିଷୟବସ୍ତୁ ଉପରେ ବହୁ ବିବାଦ ହେବାରୁ ରାଧାନାଥ ଲେଖିଥିଲେ "ବାସ୍ତବରେ କେଦାରଗୌରୀ ସେକ୍‌ସପିୟର୍‌ଙ୍କ ପିରାମସ ଏବଂ ଥିସବି କବିତାରୁ ଅନୁବାଦିତ ହୋଇଅଛି କିନ୍ତୁ ପ୍ରକାଶକର ଦୋଷରୁ ତାହା ସ୍ୱୀକାର କରାଯାଇ ନାହିଁ। ୧୮୮୭ ସାଲ ନଭେମ୍ବର ୧ ତାରିଖରେ "ନାରଦ" ନାମା ଜନୈକ ସମାଲୋଚକ କହିଛନ୍ତି– ରାଧାନାଥ ବାବୁ ଉତ୍କଳ ସାରସ୍ୱତ ଉଦ୍ୟାନର ପ୍ରଧାନ କବି, ତାଙ୍କର ଏ ରୂପ ଅସରଳତା କଦାପି ସୁନ୍ଦର ନୁହେଁ। (୮) ବାସ୍ତବରେ ଭୁବନେଶ୍ୱରର କେଦାରେଶ୍ୱର ମନ୍ଦିର ଅଥବା ଗୌରୀକୁଣ୍ଡର ପଶ୍ଚାତରେ ଏପରି କୌଣସି କିମ୍ବଦନ୍ତୀ ବା ପୌରାଣିକ ସତ୍ୟତା ନାହିଁ। ଲୋକମାନସରେ ଏକ ଦୃଢ଼ଧାରଣା ସୃଷ୍ଟି କରିବାପାଇଁ ରାଧାନାଥ ଏପରି କରିବା ଅନୁମାନ କରାଯାଇପାରେ। ପୁରାତନରେ ନୂତନତାର ଅନୁସରଣ ଅପେକ୍ଷା ଏଇ ମନ୍ଦିର ଓ କୁଣ୍ଡର ପ୍ରାଚୀନତାକୁ ଅସ୍ୱୀକାର କରି ସେ ପୁରାତନକୁ ଯେଉଁ ନୂତନ ରୂପ ଦେଲେ ତାହାହିଁ ହେଉଛି ତାଙ୍କ କବିତା 'କେଦାରଗୌରୀ'। (୯)

୧୮୮୬ ମସିହାରେ ବାଲେଶ୍ୱର ପ୍ରେସ୍‌ରେ ଚନ୍ଦ୍ରଭାଗା ପ୍ରକାଶ ପାଇଥିଲା। ଏହାର ଆରମ୍ଭରେ ଶ୍ରୀଜଗନ୍ନାଥଙ୍କ ପୁଷ୍ୟାଭିଷେକ ଉତ୍ସବରେ ଉତ୍କଳର ବିଭିନ୍ନ ଦେବଦେବୀଙ୍କ ବର୍ଣ୍ଣନା ପ୍ରଦାନ କରାଯାଇଛି। କେଦାରଗୌରୀରେ ଗ୍ରୀକ୍ କାହାଣୀକୁ ଉତ୍କଳୀୟ ପରିଚ୍ଛଦରେ ପରିବେଷଣ କରିବାଲାଗି କେବଳ ନାୟକ ନାୟିକା ଓ ଘଟଣାସ୍ଥଳର ନାମ ମାତ୍ର ପରିବର୍ତ୍ତନ କରିଥିବା ସ୍ଥଳେ ଚନ୍ଦ୍ରଭାଗାରେ ନୂତନ ଚରିତ୍ର ଓ ନୂଆ ପରିବେଶ ସୃଷ୍ଟି କରିଛନ୍ତି। (୧୦) ଚନ୍ଦ୍ରଭାଗାର କଥାବସ୍ତୁରେ ଓଭିଡ୍‌ଙ୍କ ଆପାଲୋ ଡାଫ୍‌ନେ (Aapallo and Daphne)ର ପ୍ରଭାବ ପରିଲକ୍ଷିତ ହୁଏ। ଓଭିଡ୍‌ଙ୍କ କାହାଣୀରେ ପେନିୟସ୍ ନଦୀକନ୍ୟା ଡାଫ୍‌ନେର ଅପରୂପ ଲାବଣ୍ୟ, କ୍ୟୁପିଡ୍ ଶରନିକ୍ଷେପ ହେତୁ ଆପଲୋଙ୍କର ଡାଫ୍‌ନେ ପଶ୍ଚାତରେ ଅନୁଧାବନ ଏବଂ ଡାଫ୍‌ନେର ଲରେଲ୍ ବୃକ୍ଷରେ ରୂପାନ୍ତର ବର୍ଣ୍ଣିତ। ଚନ୍ଦ୍ରଭାଗାର ରୂପଲାବଣ୍ୟ, କନ୍ଦର୍ପର ଶରନିକ୍ଷେପରେ ସୂର୍ଯ୍ୟଙ୍କର ଚନ୍ଦ୍ରଭାଗା ପଶ୍ଚାତରେ ଅନୁଧାବନ ଏବଂ ଚନ୍ଦ୍ରଭାଗାର ଆତ୍ମହତ୍ୟାରେ ରାଧାନାଥଙ୍କ କାହଣୀର ବିସ୍ତୃତି। ଓଭିଡ୍‌ଙ୍କ Her running made her seem more fair ସହିତ ରାଧାନାଥଙ୍କ 'ପଳାୟନେ ପୁଣି ସୁନ୍ଦରୀ ଦିଶେ ସୁନ୍ଦରତର, ଅସମ୍ଭାଳେ ବେଶ ଭୂଷଣ ଆହା କି ମନୋହର' (୧୨) ତୁଳନୀୟ। ହେଟାବାଘ-ମେଷଶାବକ, ସିଂହ-ମୃଗ, ସଞ୍ଚାଣ-କପୋତଙ୍କ ସହ ଓଭିଡ୍ ଆପାଲୋ ଡ଼ପ୍‌ନେକୁ ତୁଳନା କରିଛନ୍ତି। ଅନୁରୂପ ଭାବରେ ରାଧାନାଥ ସୂର୍ଯ୍ୟ ଓ ଚନ୍ଦ୍ରଭାଗାଙ୍କୁ ସଞ୍ଚାଣ-କପୋତ, ଶ୍ୱାନ-ଶଶକ, ଓ ସିଂହ-ମୃଗ ସହ ତୁଳନା କରିଛନ୍ତି।

stay Nymph; the Lambs so see the wolvelf
The stags the lions so, with glittering feathers
silly doves, so from the goshawk fly-
And every creature from his foe (୧୩)

ସଞ୍ଚାଣ ମୁଖରୁ କପୋତ ଏହି ରୂପେ ପଳାଏ
ଶ୍ୱାନଠାରୁ ଭୀରୁ ଶଶକ ପ୍ରାଣ ବିକଳେ ଧାଏଁ।
ସିଂହଠାରୁ ଡରେ ପଳାଏ ମୃଗ ଏରୂପେ ସିନା,
କିଣା କିଂକରକୁ ଏ ଶଂକା କିଂପା କରୁ ନବୀନା। (୧୪)

ଆପାଲୋ ଡାଫ୍‌ନେ କାହାଣୀର ପରିଣତିରେ ଡାଫନେ ପିତା ପେନିସ୍‌ଙ୍କ ଶରଣଭିକ୍ଷା କରି ଲରେଲ ବୃକ୍ଷର ରୂପାନ୍ତର କାହନିକତାର ଆଶ୍ରୟୀ। ଚନ୍ଦ୍ରଭାଗା ଅତି ଦ୍ରୁତଗତିରେ ଦୌଡ଼ି ମା' ଧରଣୀ ନିକଟରେ ଆଶ୍ରୟଲୋଡ଼ି ଆତ୍ମହତ୍ୟା କରିବା ବାସ୍ତବ ଧର୍ମୀ। ସୁମନ୍ତ୍ରୁଙ୍କ ଅଭିଶାପରେ କୋଣାର୍କର ସୂର୍ଯ୍ୟମନ୍ଦିର ଭାଙ୍ଗି ପଡ଼ିବା କଥା ସମ୍ପୂର୍ଣ୍ଣ ମିଥ୍ୟା। ଲୋକ ବିଶ୍ୱାସର ଅନୁକୂଳ ବାତାବରଣ ନେଇ ଏଭଳି ଆରୋପ କରିବା ପାଇଁ କବିଙ୍କର କୁଶଳତା ମୁଖ୍ୟତଃ ଦାୟୀ।

ପୋପ୍‌ଙ୍କର 'ଉଇଣ୍ଡସର ଫରେଷ୍ଟ'ର ପଳାୟମାନା ପରୀ ଓ ଅନୁଧାବନରତ ପାନ୍ ଚରିତ୍ର ସଦୃଶ କବି ପଳାୟନରତା ଚନ୍ଦ୍ରଭାଗା ଓ ଅନୁଧାବନରତ ସୂର୍ଯ୍ୟଙ୍କର ଚିତ୍ର ପ୍ରଦାନ କରିଛନ୍ତି :

"କାହିଁ ପଳାଉଛୁ ସୁନ୍ଦରୀ ! ହୋଇ ଏଡ଼େ କାତର
ଚରଣ କିକଂର ଜନକୁ କିମ୍ପା ଏଡ଼େ ତୋ ଡର ?
× × × ×
ପଳାୟନେ ପୁଣି ସୁନ୍ଦରୀ ଦିଶେ ସୁନ୍ଦରତର,
ଅସମ୍ଭାଳେ ବେଶ ଭୂଷଣ ଆହା, କି ମନୋହର।
ଶାଣ-ଶୀର୍ଣ୍ଣପ୍ରାୟେ ଅଙ୍ଗନା-ଅଙ୍ଗ ଚାରୁ ଚଳନ,
ବସନ ଉଡ଼ାଇ ଦେଖାଏ ରଙ୍ଗେ ସିନ୍ଧୁ ପବନ।
× × × ×
ହେମାଙ୍ଗହଳଦୀ ବସନ୍ତ ଦେଖି ଯେହ୍ନେ ସଞ୍ଚାଣ,
ଅନ୍ତରୀକ୍ଷେ ଧାଏଁ ସଳଖେ କ୍ଷଣପ୍ରଭା ସମାନ।
× × × ×
ହଳଦୀ ବସନ୍ତ ଏକାନ୍ତ ପ୍ରାଣ ଭୟେ ଅସ୍ଥିର,
କ୍ଷଣେ ଧୃତ, କ୍ଷଣେ ମୁକତ ମଣେ ନିଜ ଶରୀର।"

୧୮୮୭ ମସିହାରେ 'ଚନ୍ଦ୍ରଭାଗା' କଟକ ଭିକ୍ଟୋରିଆ ପ୍ରେସରୁ ପ୍ରକାଶ ପାଇଥିଲା। ଓଭିଡ୍‌ଙ୍କ ମେଟାମରଫୋସିସ୍‌ର The King Minos and Scylla, ବାଇରନ୍‌ଙ୍କ

Siege of Corinth ଉଇଲିୟମ୍ ମରିସ୍‌ଙ୍କ Atlanta Raceର ପ୍ରଭାବ ଏବେ ମଧ୍ୟ ପରିଲକ୍ଷିତ ହୁଏ। ଓଡ଼ିଶା ଇତିହାସର ବର୍ଣ୍ଣନାନୁଯାୟୀ ସୁବର୍ଣ୍ଣକେଶରୀ କେଶରୀ ବଂଶର ଶେଷ ରାଜା ଥିଲେ। ତାଙ୍କର ସନ୍ତାନ ସନ୍ତତି ନଥିଲା। ଦକ୍ଷିଣ ଦେଶରୁ ଚୋଡ଼ଗଙ୍ଗ ନାମକ ଜଣେ ନରପତି ଓଡ଼ିଶା ଆକ୍ରମଣ କରି ୧୧୩୨ ଖ୍ରୀଷ୍ଟାବ୍ଦରେ ତାଙ୍କୁ ପରାସ୍ତ କରିଥିଲେ ଓ ସେଇ ପରାଭବ ସଙ୍ଗେ ଓଡ଼ିଶାରୁ କେଶରୀ ବଂଶୀୟ ରାଜପଣ ଲୋପପ୍ରାପ୍ତ ହେଲା। ବଂଶାବଳୀ ଗ୍ରନ୍ଥରେ ଲିଖିତ ଅଛି ଯେ ବାସୁଦେବ ନାମକ ଏକ ବ୍ୟକ୍ତି ରାଜାଙ୍କ କର୍ତ୍ତୃକ ଅପମାନିତ ଓ ନିର୍ବାସିତ ହୋଇ କର୍ଣ୍ଣାଟଦେଶୀୟ ଚୋଡ଼ଗଙ୍ଗ ରାଜାକୁ ଓଡ଼ିଶା ଆକ୍ରମଣାର୍ଥେ ଉତ୍ତେଜିତ କରିଥିଲେ। ପୁଣି ରାଜଚରିତ ଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ, ରାଜା ନିଃସନ୍ତାନ ଥିବାରୁ ଉକ୍ତ ବାସୁଦେବ ଦକ୍ଷିଣ ଦେଶରୁ ଜଣେ ରାଜାଙ୍କୁ ଆହ୍ୱାନ କରିଆଣି ସିଂହାସନରେ ବସାଇଥିଲେ। (୧୬) ମାଦଳାପାଂଜିରେ ଉଲ୍ଲେଖ ଅଛି : ଶ୍ରୀ ସିଦ୍ଧେଶ୍ୱର କନ୍ଧରାଜା ବ୍ରାହ୍ମଣ ବାସୁଦେବ ରଥଠାରୁ ଥରେ ଟଙ୍କିନେଇ ଆଉଥରେ ପଠାଣଜଣକୁ ଲେଖିଦେଲାକୁ ଏ ବାସୁଦେବ ରଥ ରାଜାଙ୍କୁ କହିଲେ, ମୁଁ ଟଙ୍କି କଉଡ଼ି ଦେଉଅଛି। ଏବେ ପଠାଣ ଜଣେ ଉଲ୍ଲର ଲଗାଉଛି। ରାଜା କହିଲେ, ତୁ ବାସୁ ସେ ପଠାଣ ଜାଣେ। ଏମନ୍ତ ଶୁଣି ସେ ବ୍ରାହ୍ମଣ ବାସୁଦେବ ରଥ ଭୁବନେସରଙ୍କୁ ସେବାକଲେ। ଭୁବନେସର ଦେବ ପ୍ରସନ୍ନ ହୋଇଥିଲେ। ଏ ବସୁଦେବରଥ ଜଣାଇଲେ କେଶରୀ ରାଜତ୍ୱ ନକରିବେ। ଏଥକୁ ଭୁବନେସର ଦେବ ଆଜ୍ଞା ହୋଇଲା ତୁ ଦକ୍ଷିଣଯାଇ ଗୋକର୍ଣ୍ଣେସରଙ୍କ ବୀର୍ଯରୁ ଯେ ରାଣ୍ଡିପୁଅ ଚୋଡ଼ଗଙ୍ଗ ଅଛି ତାକୁ ଆମ୍ଭ ଆଜ୍ଞାରେ ଆଣି ଓଡ଼ିଶାରେ ରାଜତ୍ୱ କରାଇବୁ। (୧୭)

ଓଭିଡ଼ିଙ୍କ ମେଟାମରଫୋସିସର Nissus, King Minos, Fates, ମିଗାରୋ ଓ ସ୍ୱର୍ଣ୍ଣାଭ କେଶଗୁଚ୍ଛ ସଦୃଶ ରାଧାନାଥ ରାଜା ସୁବର୍ଣ୍ଣକେଶରୀ, ଚୋଡ଼ଗଙ୍ଗଦେବ, ଦେବୀ ଚଣ୍ଡିକା, ବିଦ୍ୟାନାସୀ ଓ ଜୈତ୍ରମଣିର ବର୍ଣ୍ଣନା କରିଛନ୍ତି।

ସିଲା ପିତାଙ୍କ ସ୍ୱର୍ଣ୍ଣାଭ କେଶଗୁଚ୍ଛ ଅପହରଣ କରିଛି :

Her fathers' chammber secretly she entered where alas! that ever maiden should so far the bounds of nature pass! She robbed her father of the hair upon the which the fate depended both of life and death and of his royal state. (୧୮) ଅନୁରୂପ ନନ୍ଦିକା ଜୈତ୍ରମଣି ଚୋରି କରିଛି :

ଅତି ମୃଦୁପଦେ ରାଜସଦ୍ମେ ଯାଇ,
ନେଲା ମଣି ନୃପ ମସ୍ତକୁ ଚୋରାଇ। (୧୯)

ସିଲା ମିନସ୍‌ଙ୍କୁ ଶିବିରରେ ପହଞ୍ଚି ପରିଚୟ ଦେଉଛି :

She thus be spoke: Enforced, O King, by Love against all right I, Scylla, Nisns daughter, do present into thee here

My native soil, my household gods and all that else is dear For this my gift none other thing in recompense I crave Than of thy person which I Love, fruition for have And in assurance of my love receive thau here of me My father's purple hair: and think I give not unto thee A hair, but even my father's head. (୨୦)

ଅନୁରୂପ ରାଧାନାଥଙ୍କ ନନ୍ଦିକା ଚୋଡ଼ଗଙ୍ଗଙ୍କୁ କହିଛି :

ଅଦ୍ଭୁତ ସାହସେ କହଇ ନନ୍ଦିକା,
ପ୍ରେମେ ଶ୍ରୀପୟରେ ହେଲି ମୁହିଁ ବିକା
ନନ୍ଦିକା ଉତ୍କଳ ନରେନ୍ଦ୍ର ନନ୍ଦିନୀ,
ତୁମ୍ଭ ପଦେ ଆଜି ପ୍ରେମ ଭିଖାରିଣୀ ।
ବୀର ପକ୍ଷପାତୀ ସଦା ନାରୀକୁଳ
ନାରୀ ପ୍ରେମେ ସଦା ବୀର୍ଯ୍ୟ ଅନୁକୂଳ ।
ଏହି ଜୈତ୍ରମଣି ଅର୍ପୁଛି ଶ୍ରୀକରେ,
ବିରାଜୁଥିଲା ଯା' ରାଜ ମସ୍ତକରେ ।
ମଣି ନୁହଇ ଏ ପିତାଙ୍କ ଜୀବନ
ତୁମ୍ଭେ ଯେଣୁ ବିଶ୍ୱ ବିଶ୍ୱାସଭାଜନ ।
ନିଶଙ୍କେ ସମର୍ପି ଦେଇ ମୁଁ ସକଳ,
ପ୍ରତିଦାନେ ପ୍ରେମ ମାଗୁଛି କେବଳ (୨୧)

କାଠଯୋଡ଼ି କୂଳ, କନିକା, କୁଜଙ୍ଗ, ଆଳି, କେନ୍ଦ୍ରାପଡ଼ା, ଚଉଦ୍ୱାର, ଦର୍ପଣୀ, ଲଳିତଗିରିର ବର୍ଣ୍ଣନା ରାଧାନାଥଙ୍କ ନନ୍ଦିକେଶ୍ୱରୀକୁ ଅଧିକ ବିଶ୍ୱାସ-ଯୋଗ୍ୟ କରିବାରେ ସମର୍ଥ ହୋଇପାରିଛି । କାବ୍ୟର ପ୍ରଥମାଂଶରେ ଥିବା ସମରସଜ୍ଜା ବାଇରନଙ୍କ ସିଜ୍ ଅଫ୍ କରିନ୍ଥ ଓ ଚୋରଗଙ୍ଗଙ୍କ ଗଙ୍ଗାଙ୍କୁ ଆରାଧନା ତଥା ବର ଲାଭ ଉଇଲିୟମ୍ ମରିସ୍‌ଙ୍କ ଆଟ୍‌ଲାଣ୍ଟା ରେସରେ ଥିବା ହିପୋମିନସ୍‌ଙ୍କ ଭେନସ୍‌କୁ ପୂଜା ଓ ବର ପ୍ରାର୍ଥନାର ଅନୁରୂପ । ପଣ୍ଡିତ ନୀଳକଂଠ ଦାସ କୋଣାର୍କେ କାବ୍ୟରେ ନନ୍ଦିକାର ସ୍ୱରୂପ ସଂପର୍କରେ କହିଛନ୍ତି :

"ଘର ଛାଡ଼ି କିମ୍ପା ଯିବେ ସେ ବୀରବାଳା ନନ୍ଦିକା,
ସହକାର ଦ୍ରୁମ ଗହଳେ ଭେଦି କ୍ଷୀଣ ଚନ୍ଦ୍ରିକା ।" (୨୨)

ଦେଶଦ୍ରୋହ, ରାଜଦ୍ରୋହ ଓ ପିତୃଦ୍ରୋହରେ ନନ୍ଦିକା ଅପରାଧିନୀ । କବିଙ୍କ ଭାଷାରେ :

**"ପବିତ୍ର କେଶରୀ ବଂଶେ ଜାତ ହୋଇ,**
**ଦେଶ ଦ୍ରୋହୀ ରାଜଦ୍ରୋହୀ ପିତୃଦ୍ରୋହୀ ।**
**ତିନି ମହାପାପ ଏକ କରଣିରେ**

ଅଦ୍‌ଭୁତ ସାଧନା ତୋର ଧରଣୀରେ ।
କି ସାହସେ ତୋର ଚିତ୍ତ ବୃତ୍ତି ଗଲା
ଏ ଦାରୁଣ କାର୍ଯ୍ୟେ ତୁ ପୁଣି ଅକଳା ।''(୨୩)

ଦେଶାତ୍ମବୋଧ, ରାଜଭକ୍ତି ବା ପିତୃଭକ୍ତି ନନ୍ଦିକାର ପ୍ରଣୟ ନିକଟରେ ପରାଜୟ ବରଣ କରିଛି ।

୧୮୮୮ ମସିହାରେ କଟକ ଭିକ୍ଟୋରିଆ ପ୍ରେସ୍‌ରୁ ପ୍ରକାଶିତ 'ଉଷା' ଓଭିଡ୍‌ଙ୍କ ମେଟାମୋରଫୋସିସ୍‌ର Hippomens and Atlanta ଓ ଇଂରେଜୀ କବି ଉଇଲିୟମ୍ ମରିସ୍‌ଙ୍କ The Earthly Paradiseରେ ଥିବା Atlanta raceର ପ୍ରଭାବରେ ଲିଖିତ ।

ଓଭିଡ୍‌ଙ୍କ ଆଟ୍‌ଲାଣ୍ଟା କହିଛି :

"I am not to be had quoth she unless ye able be
In running for to vanquish me
Ye must contend with me
In footmanship; and who so wins the wager,
I agree to be his wife,
but if that he be found too slow,
Then he shall lose his head,
This of your game the very law shall be" (୨୪)

ଉଇଲିୟମ୍ ମରିସ୍‌ଙ୍କ ଆଟ୍‌ଲାଣ୍ଟା କହିଛି :

"The maid has vowed even such a man to wed
As in the course her swift feet can outrun
But who so fails here in his days are done." (୨୫)

ଅନୁରୂପ ଭାବରେ ରାଧାନାଥଙ୍କ ଉଷା ପଣ କରିଛି :

"ବିଷମ ପ୍ରତିଜ୍ଞା ମନେ ମନାସିଲା ସୁନ୍ଦରୀ ସାର,
ଗତିବେଗେ ତାକୁ ଯେ ଜିଣିବ ହେବ ପତି ସେ ତାର
ସଙ୍ଗେ ଧାଇଁ ଆଗେ ସ୍ତମ୍ଭକୁ ଛୁଇଁବ ଯେ ଯୁବାମଣି,
ସଭାସ୍ଥଳେ ତାକୁ ବରମାଳା ଦେଇ ବରିବ ଧନୀ
ହାରିଗଲେ ଶିରଛେଦ ଦଣ୍ଡ ତା'ର ହେବ ନିଶ୍ଚୟ ।''(୨୬)

ସେହିପରି ଭେନସ୍‌ଙ୍କ ଦ୍ୱାରା ପ୍ରଦତ୍ତ ସ୍ୱର୍ଣ୍ଣ ଆତ ଓ କାର୍ତ୍ତିକେୟଙ୍କ ସ୍ୱର୍ଣ୍ଣକମଳ ଏକ ପ୍ରକାର ।

"I came and gathered golden apples three

and bearing thence the same within my hand,
immediately to Hippomenes I got.
Invisible to all wights else save me
and taught him what to do with them." (୨୭)

ଉଷାରେ ଅନୁରୂପ ଭାବରେ ଉଲ୍ଲେଖ ଅଛି :

"ଅନ୍ୟେ ଦୃଶ୍ୟନୋହି ସ୍କନ୍ଦ ଉଭାହେଲେ ଭକ୍ତ ଅଗ୍ରତେ
କହିଦେଲେ ବୀର ତରିବ ଯେରୂପେ ଦୁରୂହ ବ୍ରତେ
ମାନସର ଜାତ ତିନି ସ୍ୱର୍ଣ୍ଣପଦ୍ମ ଦେଇଣ କରେ,
ଆଦେଶିଲେ ତାକୁ ପଥେ ଫିଙ୍ଗିବାକୁ ଗତି କାଳରେ।" (୨୮)

ଦ୍ୱାପରଯୁଗରେ ଦୁର୍ବାସାଙ୍କ ଅଭିଶାପରେ ତିଳୋତ୍ତମାର ବାଣାସୁର ନନ୍ଦିନୀ ଉଷାରୂପରେ ଜନ୍ମ ଏବଂ ଅନିରୁଦ୍ଧ ସହ ପ୍ରଣୟ ଆଖ୍ୟାନ ଆଧାରିତ ପୁରାଣ ସମ୍ମତ କଥାଶ୍ରୟରେ ଲୋକମାନସରେ ଅପୂର୍ବ ଧାରା ସୃଷ୍ଟିକରିବା ରାଧାନାଥଙ୍କର ଲକ୍ଷ୍ୟଥିଲା। ତେବେ ପ୍ରେରଣାର ଉତ୍ସ ବିଦେଶୀ ସାହିତ୍ୟ।

ଅନ୍ୟ କାବ୍ୟଗୁଡ଼ିକରେ ରାଧାନାଥ ପ୍ରକୃତି ଚିତ୍ରଣରେ ଗୁରୁତ୍ୱ ଦେଇଥିବାବେଳେ ପାର୍ବତୀରେ ମଣିଷ ଉପରେ ପ୍ରାଧାନ୍ୟ ଦେଇଛନ୍ତି। ଏହାର ଚରିତ୍ର ଦେବତା, ଅପ୍ସରା, ଅତିମାନବ ବା ଆଦର୍ଶାଶ୍ରୟୀ ନହୋଇ ପାପପୁଣ୍ୟର ସାଧାରଣ ମଣିଷ ଭାବରେ ପ୍ରତିଭାତ। ୧୮୯୧ ମସିହାରେ ସୂଢ଼ଳଦେବଙ୍କ ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ ପ୍ରକାଶିତ 'ପାର୍ବତୀ' ଆସ୍କାଇଲାସ୍‌ଙ୍କ ଆଗାମେନନ୍ ଓ ସେକସ୍‌ପିଅରଙ୍କ ହାମଲେଟର ପ୍ରଭାବରେ ଲିଖିତ। ଅଗାମେନନ୍‌ର ଟ୍ରୟ ଅଭିଯାନ ଓ ଗଙ୍ଗେଶ୍ୱରଙ୍କ ରତ୍ନପୁର ଅଭିଯାନ ଏକ ପ୍ରକାରର। ୱାଚ୍‌ମ୍ୟାନ୍ ସହ କଞ୍ଚୁକୀ ମଧ୍ୟ ତୁଳନୀୟ। ପୁନଶ୍ଚ ଅଗାମେନନ୍‌ରେ ଇଡ଼ା ପର୍ବତରୁ ଲେମନ୍‌ସ, ଆଥ୍ରସ, ମାସିଟସ, ମେସାପିଅସ୍, ସିଥାରେନ୍‌ସ, ଏଜିପ୍ଲାଟେସ ଦେଇ ଆରାଚିନ୍ ପର୍ଯ୍ୟନ୍ତ ଅଗ୍ନିର ଗତିପଥ ସଦୃଶ ପାର୍ବତୀରେ ମେଘାସନ ପର୍ବତରୁ ଗନ୍ଧମାର୍ଦ୍ଦନ, ଗୋନାସିକା, ମାଲ୍ୟଗିରି, ବାରା, ବିଶ୍ୱନାଥ ଓ ତାରାଦେବୀ ପର୍ବତ ଦେଇ ନୀଳାଚଳ ପର୍ଯ୍ୟନ୍ତ ଅଗ୍ନିର ଗତିପଥ ପରିବ୍ୟାପ୍ତ। ମାଦଳା ପାଂଜିରେ ବର୍ଣ୍ଣିତ ଗଙ୍ଗେଶ୍ୱର ଦେବଙ୍କ ରାଜ୍ୟଶାସନ ଓ କୌଶଲ୍ୟାଗଙ୍ଗ ପୁଷ୍କରିଣୀ କିମ୍ବଦନ୍ତୀ ଆଧାରିତ। (୨୯) କବି କିମ୍ବଦନ୍ତୀ ସହିତ ପାଶ୍ଚାତ୍ୟ ନାଟକକୁ ଅତି ସଚେତନ ଭାବରେ ଏକୀଭୂତ କରି ପାରିଛନ୍ତି।

୧୮୯୧ ମସିହାରେ ଉତ୍କଳପ୍ରଭାବରେ ପ୍ରକାଶିତ 'ଚିଲିକା' ସ୍କଟ୍‌ଙ୍କ Lady of the lake ପ୍ରେରଣାରେ ସୃଷ୍ଟ। Lady of the Lake ର :

This Little flower, that loves the lea
May will simple emblem be

It drinks heaven's dew as blithie as rose
That in the kings' own garden grows
And when I place it in my hair
Allan a bird is bound to swear
He never saw caronet so fair."(୩୦) ସହିତ ଚିଲିକାର

"ଶିବାଳୟ ଉପକଣ୍ଠେ କନିଅର
ସୁବର୍ଣ୍ଣ ଚଷକଧର ମଧୁପର ।
କର୍ଣ୍ଣପୁର ରୂପେ ପୁଷ୍ପ ଯାର ଦୋଳେ
ପଲ୍ଲୀବିଳାସିନୀ ଅମଳ କପୋଳେ ।" (୩୧) ତୁଳନୀୟ ।

ସେହିପରି

"so the deep anguish of despair,
Burst in fierce jealousy to air"(୩୨) ସହିତ

"ଅଗ୍ରେ ପୃଢ଼ି ଭୀମ ଭବିତବ୍ୟ ଛାୟା
ପଲକେ ତୁଟିଲା ସେ ମୋହନ ମାୟା
ସେ ଛାୟା ଅନ୍ଧାରେ ଦେଖିଲି ଭୀଷଣ
ନୈରାଶ୍ୟ ପ୍ରେତର ବିକଟ ନର୍ତ୍ତନ ।" (୩୩)

ଏବଂ "The desert gave him visions wide
such as night suit he spectre's child
where with black cliffs the torrents toils
He watched to wheeling eddies boil
Till, from their foam, his dazzled eyes
Behold the river Demon rise" (୩୪)ସହିତ

"ରାଜସ୍ଥାନେ ଭ୍ରମି ଭୀମ ମରୁସ୍ଥଳୀ
ଦେଖିଲି ଭୀଷଣ ରୁକ୍ଷ ଶୈଳାବଳୀ
ନୀର-ତରୁ-ହୀନ ବନ୍ଧୁର କର୍କଶ,
କରାଳ ଯେସନ କାଳ ସର୍ବଂକଷ"(୩୫) କୁ ତୁଳନା
କରାଯାଇପାରେ ।

ବାଇରନ୍ ରାଇନ୍ ନଦୀକୂଳରେ ଜୀବନ ଅତିବାହିତ କରିବାପାଇଁ ଆଶାକରି ଲେଖିଛନ୍ତି :

"Through life to dwell delighted here
Nor could on earth a spot be found

To Nature and to me so dear,
Could thy dear eyes in flowing mine
Still sweeten more these banus of Rhine." (୩୬)

ରାଧାନାଥ ଚିଲିକାକୂଳରେ ଜୀବନ ବିତାଇବାପାଇଁ ଆଶାପୋଷଣ କରିଛନ୍ତି :

"କରିଥିଲି ଆଶା କରିବି ଯାପନ,
ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ।" (୩୭)

ବାଇରନ ରାଇନ୍ ନଦୀଠାରୁ ବିଦାୟ ନେଇଛନ୍ତି :

"Adieu to fair Rhine!
How long delighted
The stranger fain would linger on his way
There is a scene alike where souls united
or Lonely contemplation thus might stray." (୩୮)

ରାଧାନାଥ ଚିଲିକାଠାରୁ ମେଲାଣି ନେଇଛନ୍ତି :

"ମାଗୁଛି ଚିଲିକା ମେଲାଣି ତୋଠାରେ,
ବାହୁଡିବି ଏବେ ଦାରୁଣ ସଂସାରେ।" (୩୯)

୧୮୯୨ ମସିହାରେ ପ୍ରକାଶିତ 'ମହାଯାତ୍ରା' କାବ୍ୟରେ ଭାରତୀୟ ଜୀବନ ବା ସଂସ୍କୃତିର ମହାନଗ୍ରନ୍ଥ ମହାଭାରତର ସ୍ୱର୍ଗାରୋହଣ ପର୍ବର ଘଟଣାବଳୀ ବର୍ଣ୍ଣନା କରାଯାଇଥିଲେ ହେଁ ଏହାର ଶିଳ୍ପକୌଶଳ ବିଦେଶୀ। ଏଥିରେ ମିଲ୍‌ଟନ୍‌ଙ୍କ ପାରାଡ଼ାଇଜ୍-ଲଷ୍ଟ ଦାନ୍ତେଙ୍କ ଡିଭାଇନ୍ କମେଡ଼ି ଓ ଭର୍ଜିଲ୍‌ଙ୍କ ଏନିଡ଼ର ପ୍ରଭାବ ପରିଲକ୍ଷିତ ହୁଏ। କାବ୍ୟର ଆରମ୍ଭରେ କବି ପଙ୍କଜବାସିନୀ ଦେବୀ ସାରଳାଙ୍କୁ ଯଦୁବଂଶ ପତନର ଘଟଣା ବର୍ଣ୍ଣନା କରିବାପାଇଁ ଅନୁରୋଧ କରିଛନ୍ତି :

"ପଙ୍କଜବାସିନୀ ଦେବୀ, ଉତ୍କଳ ଭାରତି
ସାରଳେ କି କଲେ, କହ କୁରୁଚୂଡ଼ାମଣି
ଶୁଣିଲେ ଯେକାଳେ ବୀର ବାର୍ତ୍ତାବହ ମୁଖୁ
ପ୍ରଭାସେ ଯାଦବଙ୍କର ଜ୍ଞାତିକ୍ଷୟକାରୀ
ମହାହବ, ଧୀରମଣି ଧୈର୍ଯ୍ୟଧରି ଆହା
କେମନ୍ତେ ଶୁଣିଲେ ସେହି ଦାରୁଣ ବାରତା ?" (୪୦)

ମିଲ୍‌ଟନ୍ ପରାଡ଼ାଇଜଲଷ୍ଟରେ କାବ୍ୟର ଆରମ୍ଭପାଇଁ ବାକ୍‌ଦେବୀ ମିଉଜ୍‌ଙ୍କୁ ଅନୁରୋଧ କରିଛନ୍ତି :

"of man's first disobedinence and the fruit
of that forbidden tree, whose mortal taste

Brought death into the world, and all our woe,
with loss of Eden, till one greater man
Restore us and regain the blissful seat,
sing, Hevenly muse." (୪୧)

ଦାନ୍ତେ ଡିଭାଇନ୍ କମେଡ଼ିରେ କାବ୍ୟର ବର୍ଣ୍ଣନାପାଇଁ ବାକ୍‌ଦେବୀ ମିଉଜ୍‌ଙ୍କ ସାହାଯ୍ୟ ଲୋଡ଼ିଛନ୍ତି :

"O muses! O high genius! now vouchsafe
your aid O Mind! that all I saw hast kept
safe in a writen record, here thy worth
And eminent endowments come to proof." (୪୨)

ଭର୍ଜିଲ ଏନିଡ଼ରେ ବାକ୍‌ଦେବୀ ମିଉଜଙ୍କୁ ଦେଶର ଅତୀତର ଘଟଣାବଳୀ ବର୍ଣ୍ଣନା କରିବାପାଇଁ ନିବେଦନ କରିଛନ୍ତି :

"O muse! the causes and the crime relate,
what goddess was provoked and whence her hate
For what offens the queen of Heav'n began
To persecute so brave, so just a man,
Involved his anxious life in endless cares
Exposed to wants and hurried into wars!" (୪୩)

ଟେନିସନଙ୍କ Passing of Arthurରେ ରାଜା ଆର୍ଥର ସମୁଦ୍ରରେ ଖଡ୍‌ଗ ନିକ୍ଷେପ କରିବାପାଇଁ Kinght sir Bedevereଙ୍କୁ ନିର୍ଦ୍ଦେଶ ଦେବା ସଦୃଶ 'ମହାଯାତ୍ରା'ରେ ଅଗ୍ନିଙ୍କ ନିର୍ଦ୍ଦେଶରେ ଅର୍ଜୁନ ଧନୁ ଓ ତୂଣୀର ସାଗର ଗର୍ଭରେ ନିକ୍ଷେପ କରିଛନ୍ତି। ମିଲଟନଙ୍କ ଦେବଦୂତ ମାଇକେଲ (Michael) ସ୍ୱର୍ଗରୁ ବିଚ୍ୟୁତହୋଇ Adamଙ୍କ ସହଗାମୀ ହୋଇ ପୃଥିବୀର ଭବିତବ୍ୟ ଘଟଣା ଦେଖିବାପାଇଁ Edenର ନିକଟବର୍ତ୍ତୀ ସିନାଇ ପର୍ବତ ଶିଖରକୁ ନେଇ ଅଂଜନଦ୍ୱାରା adamଙ୍କୁ ଦିବ୍ୟଦୃଷ୍ଟି ପ୍ରଦାନ କରିଛନ୍ତି। ଅନୁରୂପ ମହାଯାତ୍ରାରେ ଅଗ୍ନି ଯୁଧିଷ୍ଠିରଙ୍କୁ ସହ୍ୟାଦ୍ରିଶିଖରକୁ ନେଇ ଦିବ୍ୟାଂଜନବଳରେ କଳିଯୁଗର ଦୃଶ୍ୟ ଦେଖାଇଛନ୍ତି। ମହାଭରତରେ କୃଷ୍ଣଦ୍ୱୈପାୟନ ବ୍ୟାସଙ୍କ ଅଂଜନ ସଂଜୟଙ୍କଠାରେ କେବଳ ଦୂରତାର ବ୍ୟବଧାନ ଦୂର କରିଥିବାବେଳେ ମହାଯାତ୍ରାରେ ଅଗ୍ନିଙ୍କ ଅଂଜନ ସମୟର ବ୍ୟବଧାନ ଦୂର କରିପାରିଛି। ଏଥିରେ ମିଲ୍‌ଟନ୍‌ଙ୍କ ପ୍ରଭାବ ପରିଲକ୍ଷିତ ହୁଏ।

Alas, both for the deed and for the cause!
But have I now seen Death? Is this the way

I must return to native dust ? O sight
of terror, foul and ugly to behold
Horrid to think, how horrible to feel." (୪୪)

ମହାଯାତ୍ରାରେ ଅନୁରୂପ ଭାବରେ ଯୁଧିଷ୍ଠିର କହିଛନ୍ତି :

"ବିଷର୍ଣ୍ଣ ଅନ୍ତରେ ତହୁଁ କୌନ୍ତେୟ ସୁମତି
କହିଲେ, ହେ ଦେବ, ବଡ଼ ବିଷମ ଏ କଥା
ଅସହ୍ୟ ଏ ଦୃଶ୍ୟ ମୋର ! ପବିତ୍ର ଭାରତେ
ବ୍ରାହ୍ମଣର ମନ୍ତ୍ରବଳେ କ୍ଷାତ୍ର ବୀର୍ଯ୍ୟବଳେ
ସୁରକ୍ଷିତ ଆର୍ଯ୍ୟଦେଶେ ଘଟିବ ଅନୀତି
ଏତେ ସରି ? ଲାଗେ ବଡ଼ ଅସମ୍ଭବ ମୋତେ ।" (୪୫)

ସ୍ପେନ୍‌ସରଙ୍କ ଫେରିକୁଇନ୍‌ରେ ହତ୍ୟାକ୍ରୋଧର ଅନୁଗାମୀ ହେବା ସଦୃଶ ରାଧାନାଥଙ୍କ ମହାଯାତ୍ରାରେ ହତ୍ୟା ଖଡ଼ଗହସ୍ତରେ ପ୍ରବେଶ କରିଛି :

"And on his dagger still his hand he held,
Trembling through hasty rage,
when choler in him sweld.
His ruffin raiment all was stained with blood." (୪୬)

"ସହଚର ରୂପେ ତାର ଆସଇ ସଙ୍ଗତେ,
ହତ୍ୟା କରବାଳ ହାତେ, ରକ୍ତ ଲିପ୍ତ ବାସେ ।" (୪୭)

ବାଇରନ୍‌ଙ୍କ Childe Harold's PilgrimageରେChild harold ଗ୍ରୀସ୍‌ର ଦୁରବସ୍ଥା ଦେଖି ଦୁଃଖିତ ହେବା ସଦୃଶ ମହାଯାତ୍ରାରେ ଅଗ୍ନି ଭାରତର ଭବିଷ୍ୟତ ଦର୍ଶନ କରି ବ୍ୟଥିତ ହୋଇଛନ୍ତି ।

"Greece ! Change thy lords,
thy state is still the same
Thy glorious day is o'er,
but not thy years of shame." (୪୮)

"ସେହି ଦେଶ, ସେହି ଗିରି ସେହି ନଦନଦୀ
ନଗର ନଗରୀ ତୀର୍ଥ ଆଶ୍ରମାଦି କରି
ସର୍ବେଥିବେ ପୂର୍ବପରି, ମାନବେ କେବଳ
ନାମକୁ ମାନବ ରହି ପଶୁଠାରୁ ହୀନ
ହୋଇଯିବେ ଯୁଗଧର୍ମେ ଭାରତ ମଣ୍ଡଳେ । (୪୯)

ସେହିପରି ମହାଯାତ୍ରାରେ ଅମର୍ଷୀଙ୍କର ଆର୍ଯ୍ୟବୀରଙ୍କୁ ଆହ୍ୱାନ "ମନ୍ତ୍ରର ସାଧନ

ଅବା ଶରୀର ପାତନ/ଆର୍ଯ୍ୟର ଯା' ସାରଧର୍ମ ପାଳ ଆର୍ଯ୍ୟବୀରେ'' (୫୦) ଆଉଲସ୍‌ଙ୍କର ରୋମାନ୍ ସୈନ୍ୟଙ୍କୁ ଉଦ୍‌ବୋଧନ "Roman stand Firm! quoth Aulus/And win this fight or die"(୫୧)ର ଅନୁରୂପ।

୧୮୯୪ ମସିହାରେ ଉତ୍କଳପ୍ରଭାରେ ପ୍ରକାଶିତ 'ଯଯାତିକେଶରୀ'ରେ ସେକ୍‌ସପିୟରଙ୍କ ସିମ୍ବେଲାଇନ୍ (Cymbeline) ନାଟକର ପ୍ରଭାବ ଦେଖିବାକୁ ମିଳେ। ଲୋକ ବିଶ୍ୱାସକୁ ଭିତ୍ତିକରି କବି ଯଯାତି ଓ ଲଳିତାଙ୍କ ମିଳନକୁ ବିଶ୍ୱାସନୀୟ କରାଇ ପାରିଛନ୍ତି। ପ୍ରଣୟଜନିତ ମିଳନ ବିଚ୍ଛେଦର ଚିତ୍ର ଏଥିରେ ଚିତ୍ରିତ।

୧୮୯୪ ମସିହାରେ ବାରବାଟୀ ଦୁର୍ଗରେ ଅନୁଷ୍ଠିତ ଦରବାରକୁ ଲକ୍ଷ୍ୟକରି କବି 'ବୟାସିକୀବାଣୀ' ରଚନା କରିଥିଲେ ଯାହା ୧୮୯୬ରେ 'ଦରବାର' ନାମରେ ପ୍ରକାଶ ପାଇଥିଲା। ଇନ୍ଦ୍ରଧନୁ ବିଜୁଳି କଳହ ମାଧ୍ୟମରେ କବିଙ୍କପ୍ରତି ଯେଉଁ ତିକ୍ତ ମନ୍ତବ୍ୟ ପ୍ରକାଶ ପାଇଥିଲା ଦରବାର ତାହାର ଫଳଶ୍ରୁତି। ବାଇରନଙ୍କ The vision of juidgementରେ ସ୍ୱର୍ଗର ଅଦାଲତର ଚିତ୍ର ବର୍ଣ୍ଣିତ ହେବା ସଦୃଶ କବି ଯମ ଦରବାରର ପରିକଳ୍ପନା କରିଛନ୍ତି। ତେବେ କବି ନିଜକୁ ଏଥିରୁ ଭିନ୍ନ ମନେକରି ନାହାନ୍ତି। କବିଙ୍କର ଭାଷାରେ :

"ଥୋଇ ଏ ମୁକୁର ତୁମ୍ଭ ଆଗେ ଭାଇ,
ନିଜ ମୁଖ ମୁଁକି ନିଜେ ଦେଖୁନାହିଁ?
ପାସୋରି ନାହିଁ ମୁଁ ହେଉ ଅଛୁଁ ବ୍ୟସ୍ତେ,
ଏକା ଅନ୍ଧକୂପେ ଦରାଣ୍ଡି ସମସ୍ତେ। (୫୨)"

ସାମାଜିକ ପୃଷ୍ଠଭୂମିକୁ ଭିତ୍ତିକରି ବ୍ୟଙ୍ଗକବିତା ସୃଷ୍ଟି ଦରବାରରେ ରାଧାନାଥଙ୍କର ଏକ ନୂତନ ପଦକ୍ଷେପ।

ରାଧାନାଥଙ୍କ କାବ୍ୟଗୁଡ଼ିକରେ ଐତିହାସିକ ସତ୍ୟତା ଗୌଣ। ତାଙ୍କର ଲକ୍ଷ୍ୟ ପରିପୂରଣ ଦିଗରେ ଇତିହାସ ଏକ କ୍ଷୀଣ ଅବଲମ୍ବନ ମାତ୍ର। ଇତିହାସ କହିଲେ ଆଜି ଯାହା ବୁଝାଯାଏ, ତତ୍କାଳୀନ ସାହିତ୍ୟ ରାଜ୍ୟରେ ଏପରି ସଂଜ୍ଞା ନିର୍ଣ୍ଣୟ କରିବା ସହଜ ନଥିଲା। ଫଳରେ ରାଧାନାଥଙ୍କ କାବ୍ୟ ତତ୍କାଳୀନ ଐତିହାସିକ ଘଟଣାବଳୀକୁ ଉପାଦାନ କରି ପରିପୁଷ୍ଟ ହୋଇଥିଲା। ନୂତନତ୍ୱର ପ୍ରକାଶଥିଲା କବିଙ୍କ ଲକ୍ଷ୍ୟସ୍ଥଳୀ। ନୂତନ ଯୁଗର ସାହିତ୍ୟ ଭାବରେ କବିଙ୍କ ସୃଷ୍ଟି ସାର୍ଥକତା ଲାଭ କରିଛି। ତାଙ୍କର କାବ୍ୟଗୁଡ଼ିକ ଏକ କ୍ରମ ପରୀକ୍ଷାର ଅଭ୍ରାନ୍ତ ଦର୍ଶନ। ପ୍ରଚଳିତ ଲୋକ ବିଶ୍ୱାସ, କିମ୍ବଦନ୍ତୀ, କାହାଣୀ, ପୁରାଣ, ଇତିହାସ ଓ ପ୍ରକୃତିର ରୂପବିଭବ ସାହଚର୍ଯ୍ୟରେ କବି ଅସତ୍ୟକୁ ସତ୍ୟରୂପେ ପ୍ରତିପାଦନ କରାଇପାରିଛନ୍ତି। ଦେଶୀୟ ବାତାବରଣରେ ବିଦେଶୀ କଥାବସ୍ତୁକୁ ଆରୋପିତ କରିଛନ୍ତି।

କବି ନିଜ ସଂପର୍କରେ କହିଛନ୍ତି "ମୋର ରଚନା ସହିତ ଜୀବନର କୌଣସି

ସମ୍ପର୍କ ନାହିଁ। ମୁଁ କେବଳ ବହିଃସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଘେନି ବ୍ୟାପୃତ ଥିଲି। ପାର୍ବତୀୟ ପ୍ରଦେଶରେ ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ସାହିତ୍ୟ ଆଳାପ ପରିଚୟ ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି। ମୋର ଓଡ଼ିଆ କାବ୍ୟ ଗୁଡ଼ିକ ଉତ୍କଳୀୟ ପ୍ରକୃତିର ପ୍ରତିକୃତି କହିଲେ ଚଳେ।(୫୩) କବି ପ୍ରକୃତିର ବହିଃସୌନ୍ଦର୍ଯ୍ୟ ଚିତ୍ରଣ କରିବା ସମୟରେ କାଳିଦାସ, ଭବଭୂତି ପ୍ରମୁଖ କବିମାନଙ୍କୁ ଅନୁସରଣ କରିଥିବାବେଳେ ଯେଉଁଠାରେ ପ୍ରକୃତି ସହିତ ଭାବ ବିନିମୟ କରିଛନ୍ତି ଅଥବା ପ୍ରକୃତି କୋଳରେ ଜୀବନ ବିତାଇବାକୁ ଚାହିଁଛନ୍ତି ସେଠାରେ ବିଦେଶୀ କବିଙ୍କୁ ଅନୁସରଣ କରିଛନ୍ତି।

ପୁରାତନର କ୍ରମ ତିରୋଧାନ ଓ ନୂତନର କ୍ରମ ଅନୁବର୍ତ୍ତନ ରାଧାନାଥଙ୍କ କାବ୍ୟ ସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ। କବିଙ୍କ ଭାଷା, ଭାବପ୍ରକାଶରେ ନୂତନତା, ଉପଧାମିଳନ, ବହୁଳ ଅଳଙ୍କାର ନିୟମର ପରିବର୍ତ୍ତନ, ପ୍ରାକୃତିକ ସୌନ୍ଦର୍ଯ୍ୟରେ ନୂତନତ୍ୱର ଅନୁସନ୍ଧାନ, ଚରିତ୍ର ଚିତ୍ରଣରେ ଅଭିନବ ଦୃଷ୍ଟିଭଙ୍ଗୀ, ଜାତୀୟତାବୋଧ ଓ ସଂସ୍କାର ମନୋଭାବର କଳାତ୍ମକ ରୂପାୟନ ପ୍ରଭୃତି ରାଧାନାଥଙ୍କ କାବ୍ୟଗୁଡ଼ିକରେ ଦେଖିବାକୁ ମିଳେ। ଏହା ସତ୍ତ୍ୱେ କବିଙ୍କ ସାହିତ୍ୟରେ ଜୀବନର ଛବି ଅଛି କିନ୍ତୁ ଜୀବନ ନାହିଁ। ମନେହୁଏ ତାହା ଏକ ବିରାଟ ସମ୍ଭାବନାରେ ଅଗ୍ରସର ହୋଇ ପରିଣତିରେ ବ୍ୟର୍ଥତା ଆଣିଛି।

**ସଂକେତ ସୂଚୀ :**


୧. ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟ – ଓଡ଼ିଶା ସାହିତ୍ୟ ଏକାଡ଼େମୀ – ପୃ-୨୧/୨୨
୨. ଓଡ଼ିଆ ସାହିତ୍ୟର ଇତିହାସ – ଡଃ. ନଟବର ସାମନ୍ତରାୟ – ପୃ-୨୭୩, ୨୭୪, ୨୭୫
୩. ଡଗର– ରାଧାନାଥ ବିଶେଷାଙ୍କ – ପୃ-୬୧/୬୨
୪. Metamorphoses – Ovid
୫. Selected works – Ovid, page- 155,156,192, 269, 324, 32୪
୬. କେଦାରଗୌରୀ – ପୃ-୩୪, ୩୫
୭. ସଂସ୍କାରକ – ପୃ-୩୫୨
୮. ଆଧୁନିକ ଓଡ଼ିଆ କାବ୍ୟଧାରା – ଡଃ. ନରେନ୍ଦ୍ରନାଥ ମିଶ୍ର – ପୃ-୧୫୨
୯. ଚନ୍ଦ୍ରଭାଗା – ପୃ-୪୪, ୪୫
୧୦. ଓଡ଼ିଶା ଇତିହାସ- ପ୍ୟାରୀମୋହନ ଆଚାର୍ଯ୍ୟ- ପୃ-୬୦
୧୧. ନନ୍ଦିକେଶ୍ୱରୀ- ପୃ- ୫୯, ୬୨, ୬୩
୧୨. କୋଣାର୍କେ- ନୀଳକଣ୍ଠ ଦାସ- ପୃ-୩୧୬

୧୩. ଉଷା – ପୃ-୬୧, ୮୭
୧୪. Atlanta Race—William Morris
୧୫. Poetical Works – Sir Walter scott, P-220, 228
୧୬. ଚିଲିକା – ପୃ-୧୪୦, ୧୪୯, ୧୩୮, ୧୪୮
୧୭. ମହାଯାତ୍ରା – ପୃ-୧୫୫,୧୭୪,୧୯୪
୧୮. ଦରବାର – ପୃ- ୨୬୦
୧୯. Childe Harold's Pilgrimage – Byron, P.217
୨୦. Poetical works – Byron, Page.218
୨୧. Paradise lost – Milton- Book I, IX
୨୨. Divine Comedy – Dante, P,9
୨୩. Aeneid – Virgil- P.73
୨୪. Fairie Queene – Spencer
୨୫. The battle of the lake Regillus – Hard Macaulay
୨୬. ରାଧାନାଥ ଜୀବନୀ – ପୃ.୫୯୨
୨୭. ମାଦଳାପାଞ୍ଜି – ପୃ୨୧, ୨୩, ୨୪

(୨ୟ ପାଞ୍ଜି ମତେ – ଏ ଗୋଦାବରୀଠାରୁ ଗଙ୍ଗା ପର୍ଯ୍ୟନ୍ତ ଏକଛତ୍ର କଲେ। ଏ ରାଜା ବ୍ରାହ୍ମଣମାନଙ୍କୁ ପଚାରିଲେ, ଯେଉଁ ଫଳ ଉପୁଜାଇ ସେ ଫଳ ଖାଇ କି ନ ଖାଇ।' ତହିଁକି ବ୍ରାହ୍ମଣେ ବୋଇଲେ ଯେଉଁ ଫଳ ଉପୁଜାଇ ସେ ଫଳ ଖାଇ। ସେଠାରୁ ରାଜା ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗ ହେଲେ। ସେ ଝିଅ ଗର୍ଭବାସ ହେଲେ। ତହିଁ ସକାସୁଁ ସେ କଥା ପ୍ରଘଟ ହେଲା। ସେଠାରୁ ରାଜା ବ୍ରାହ୍ମଣଙ୍କୁ ପଚାରିଲେ ତହିଁକି ବ୍ରାହ୍ମଣମାନେ କହିଲେ, ତୁମ୍ଭେ ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗ ହେଲ। ଏ କଥା ଗର୍ହିତ ହେଲା। ଏକଥା ଉଚିତ ନୁହଁଇ।' ତହିଁକି ରାଜା ପଚାରିଲେ ଏଥିକି କି ପ୍ରାଶ୍ଚିତ୍ତ। ତହିଁକି ବ୍ରାହ୍ମଣ କହିଲେ, 'ଦୁଇ ମାଠିଆ ପାଣି ଘେନି ଚାଲିଯିବ। ତାହା ଗୋଡ଼ରୁ ଯେଉଁଠାରୁ ରୁଧିର ଜାତ ହେବ ସେହିଠାରେ ଚାରିବାହି ଆୟତନରେ ପୋଖରୀ ଖୋଳାଯିବ। ମଧ୍ୟରେ ଦୀପଦଣ୍ଡି ହେବ। ତହିଁ ଭିତରେ ସେ ଝିଅ ରହିବ। କାହାରି ମୁଖ ନ ଚାହିଁବ। ଏମନ୍ତ ସେ ତାହାଙ୍କୁ ଦିହକ ରହିବ। ଦୀପଦଣ୍ଡି କରି ଝିଅକୁ ଆଣି ତହିଁରେ ରଖିଲେ। ରାଣୀମାନେ ରାଜାଙ୍କ ମୁଣ୍ଡଛେଚି ମାଇଲେ। ସେହିଦିନୁ ପୋଖରୀ କୌସଲ୍ୟାଗଙ୍ଗ ବୋଲାଇଲା।

□ □ □

# ରାଧାନାଥୀୟ ପ୍ରକୃତି – ଚିତ୍ରଣ : ଏକ ଅଧ୍ୟୟନ

ଡ଼କ୍ଟର ରବୀନ୍ଦ୍ର କୁମାର ପ୍ରହରାଜ

(୧)

"To her fair works did Nature link
The human soul that through me ran;
And much it grieved my heart to think
What man has made of man.
(Wordsworth-Lines written in Early Spring)

"ସ୍ନିଗ୍ଧ ରୂପ ତୋର ଚିତ୍ତ ଉଲ୍ଲାସକ,
ସୁମଧୁର ଦ୍ୱୈତ ଭାବର ଦ୍ୟୋତକ"। (ରାଧାନାଥ : ଚିଲିକା)

ପ୍ରକୃତିର ଏତାଦୃଶ ଆବାହନରେ ମାନବପ୍ରାଣର ଚିରନ୍ତନୀ ଅଭୀପ୍ସାର ଯେଉଁ ବାର୍ତ୍ତା ଧ୍ୱନିତ, ତାହା ସାହିତ୍ୟର ଆଦିମ ଉତ୍ସ ରୂପେ ଗୃହୀତ ହେବାରେ ମତଦ୍ୱୈଧତାର ଅବକାଶ ନାହିଁ କହିଲେ ଚଳେ। "ସର୍ବାଦ୍ୟ ଉଚ୍ଚାରିତ ମନ୍ତ୍ର "ଓଁ ଅଗ୍ନିମୀଳେ ପୁରୋହିତମ୍" ଠାରୁ ପବିତ୍ର ଗାୟତ୍ରୀ "ଭୂ ର୍ଭୁବଃ ସ୍ୱଃ ତତ୍‌ସବିତୁର୍ବରେଣ୍ୟମ୍ ଭର୍ଗୋଦେବସ୍ୟ ଧୀମହି ଧିୟୋଯୋନଃ ପ୍ରଚୋଦୟାତ୍ ପର୍ଯ୍ୟନ୍ତ ବୈଦିକ ସାହିତ୍ୟରେ ପ୍ରତ୍ୟକ୍ଷ ଅଥବା ପରୋକ୍ଷ ଭାବରେ ପ୍ରକୃତିର କେବଳ ନୀରାଜନା କରାଯାଇ ନାହିଁ, ଏଥିରୁ ଜୀବନର ସକଳ ସିଦ୍ଧି ସମୃଦ୍ଧି ଓ ଉତ୍ତରଣ ଲାଗି ଅନୁପ୍ରେରଣା ଲାଭର ସନିର୍ବନ୍ଧ ପ୍ରୟାସ ବରଣ କରାଯାଇଛି। କ୍ରମଶଃ ବିଶ୍ୱ ସାହିତ୍ୟର ସ୍ତରେ ସ୍ତରେ ପ୍ରକୃତିର ବୈଚିତ୍ର୍ୟମୟ ଲୀଳା ବିଳାସର ରହସ୍ୟ ଉନ୍ମୋଚନ ଲାଗି କବିମାନଙ୍କର ବ୍ୟାକୁଳତା ପ୍ରସରି ଯାଇଛି ଉଦ୍‌କୂଳ ବନ୍ୟାପ୍ରବାହ ପରି। ପ୍ରକୃତିକୁ ମାଧ୍ୟମ କରି ଏହାର ଆଶ୍ରୟ ଲୋଡ଼ିବାକୁ ଯାଇ କେହି କେହି ନାନ୍ଦନିକ ଚିତ୍ରଶିଳ୍ପର ବର୍ଣ୍ଣୋଲ୍ଲେଖ୍ୟ ଅଙ୍କନ କରିଛନ୍ତି ତ କେହି କେହି ଜୀବନ ଦର୍ଶନର କାଳଜୟୀ ଉଦ୍‌ବୋଧନର ସନ୍ଧାନ କରିଛନ୍ତି। ସୃଜନ ଅନୁରାଗର ବହୁବର୍ଣ୍ଣି ରଙ୍ଗରେ ଅନୁରଂଜିତ ପ୍ରକୃତି ସାହିତ୍ୟ (କାବ୍ୟ) ସାଧନର ପ୍ରମୁଖ ଉପାଦାନ ରୂପେ ସୁପ୍ରତିଷ୍ଠ ହୋଇଯାଇଛି।

ଓଡ଼ିଆ ସାହିତ୍ୟରେ ପ୍ରଥମ ପ୍ରକୃତି-ଆବାହନ ଗୀତିକା ଚର୍ଯ୍ୟାପଦର "ଉଞ୍ଚା ଉଞ୍ଚା ପାବତ ତହିଁ ବସଇ ଶବରୀ ବାଲୀ" ଠାରୁ ରୀତିଯୁଗର ସାୟଂକାଳ ପର୍ଯ୍ୟନ୍ତ କାନନ, ଭୂଧର, ପ୍ରଭାତ, ସଂଧ୍ୟା, ପତ୍ର, ପୁଷ୍ପ, ଫଳ ଓ ଋତୁ ନିଚୟାଦିର ସମାଶ୍ରୟରେ ମନୋଜ୍ଞ ଶିଳ୍ପ-ସମ୍ଭାର ପ୍ରସ୍ତୁତ କରାଯାଇଛି। ମାତ୍ର ଏହା କେବଳ ମାତ୍ର ଶିଳ୍ପ ପ୍ରକରଣର ସୀମିତ ପରିସରରେ ଆବଦ୍ଧ ରହିଯାଇଛି। କବିକର୍ମର ଅନ୍ୟତମ ପ୍ରଧାନ ବିଭାବ ରୂପେ ପ୍ରକୃତି ଚିତ୍ରଣ-ଚାତୁର୍ଯ୍ୟର ଦ୍ୟୋତକ ହୋଇଯାଇଛି। କିଛି କିଛି ପ୍ରସାରଣ ଘଟିଛି କାହିଁ କାହିଁ; ମାତ୍ର ଆତ୍ମିକ ଅଧିଷ୍ଠାନ ସମ୍ଭବ ହୋଇ ନାହିଁ। ତାତ୍ତ୍ୱିକ ଅନୁବନ୍ଧତା ସଂଗେ ସଂଗେ ବର୍ଣ୍ଣ ବିନ୍ୟାସ ବୈଚିତ୍ର୍ୟରେ ସମଧିକ ଶ୍ରମ ଓ ଶକ୍ତି ବିନିଯୋଗ କରିବାକୁ ଯାଇ ପ୍ରାକ୍-ଆଧୁନିକ ଯୁଗର କବି ପ୍ରକୃତିର ସ୍ୱତୋତ୍ସାରିତ ଦୀପ୍ତି, ଦ୍ୟୁତି ଓ ରୂପ-ରସ-ଗନ୍ଧର ଆବେଦନ ପ୍ରତି ନିଃସ୍ପୃହ ରହିଆସିଛି।

ପ୍ରକୃତିର ଯଥାଯୋଗ୍ୟ ଅଭ୍ୟର୍ଚ୍ଚନା ସହ ରାଧାନାଥଙ୍କ ନେତୃତ୍ୱରେ ଓଡ଼ିଆ ସାହିତ୍ୟର ନବ ରୂପାୟନ ଆଧୁନିକତାର ବାର୍ତ୍ତା ବହନ କରି ଆସିଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏ ସାହିତ୍ୟର ପ୍ରାଣଧର୍ମ କେବଳ ମାତ୍ର ପ୍ରକୃତି ଚିତ୍ରଣରେ ପର୍ଯ୍ୟବସିତ ନ ହୋଇ ପ୍ରକୃତି-ଚେତନାରେ ନିର୍ଦ୍ଧିତ ହୋଇଛି। ରାଧାନାଥହିଁ ସମଗ୍ର ଓଡ଼ିଆ ସାହିତ୍ୟରେ ଏହି ଧାରାର ପଥିକୃତ୍। ସ୍ୱଅନୁଧ୍ୟାନ ପ୍ରସୂତ ମୌଳିକ ଭାବୋପାଦାନ ମାନଙ୍କୁ ସଂହତି, ସଂଯୋଗ ଓ ସମନ୍ୱୟ ଯୋଗାଇବାକୁ ଗଲାବେଳେ ବହୁପାଠୀ ରାଧାନାଥଙ୍କର ସ୍ମୃତିକୋଷରୁ ନିଃସରିତ ହୋଇ ଆସିଛି ବିଶ୍ୱ ସାହିତ୍ୟ ବିଶେଷତଃ ସଂସ୍କୃତ ଓ ଇଂରେଜୀ ସାହିତ୍ୟର ପଦ, ପଦାଂଶମାଳା। (ଇଂରାଜୀ ସାହିତ୍ୟ ଲାଗି ଦ୍ରଷ୍ଟବ୍ୟ-ଆଧୁନିକ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ"-ଗବେଷଣା-ନିବନ୍ଧ ସ୍ୱର୍ଗତଃ ଡ଼କ୍ଟର କ୍ଷେତ୍ରବାସୀ ନାୟକ ଓ "ମହାଯାତ୍ରା ଓ ରାଧାନାଥ"- ଅଧ୍ୟାପକ ବେଣୁଧର ରାଉତ ତଥା ସଂସ୍କୃତ ସାହିତ୍ୟ ଲାଗି ଦ୍ରଷ୍ଟବ୍ୟ- 'ଚିଲିକା ଓ ରାଧାନାଥ'- ପ୍ରଥମ ଭାଗ-ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା)।

ରାଧାନାଥ ଦିବ୍ୟଦର୍ଶୀ କବି। କାବ୍ୟ-ଉପଜୀବ୍ୟ-ମାନଙ୍କ ଅସ୍ୱୀକୃତ ଆହରଣ ଯୋଗୁଁ ସେ ସମାଲୋଚନ କ୍ଷୁରଧାରରେ ବାଚମୁଖର କର୍ତ୍ତିତ ହୋଇଥିଲେ ହେଁ ଓଡ଼ିଆ ସାହିତ୍ୟରେ ନବ ଯୁଗର ସ୍ରଷ୍ଟା, ନବଧାରାର ପ୍ରବର୍ତ୍ତକ ଭାବରେ ତାଙ୍କର ସ୍ଥାନ ଯେ ଅବିଚଳିତ ଓ ସେହି ଦୃଷ୍ଟିରୁ ଅବିସମ୍ବାଦିତ ରହି ଆସିଛି, ଏହା ମୂଳରେ ତାଙ୍କର ଅସାଧାରଣ କବିଦୃଷ୍ଟି ସନ୍ନିହିତ। ଏହି କବି ଦୃଷ୍ଟିର ସମ୍ୟକ୍ ଅବବୋଧ ଲାଗି ଯାବତୀୟ ଆହରଣ ସତ୍ତ୍ୱେ ପ୍ରକୃତି-ଚେତନା ଓ ତନ୍ନିର୍ମିତ ପ୍ରକୃତି ଚିତ୍ରଣରେ ତାଙ୍କର ମୌଳିକତା ଲକ୍ଷ୍ୟଣୀୟ। ରାଧାନାଥ ଥିଲେ ସ୍ୱଭାବତଃ ବହୁପାଠୀ। ତାଙ୍କର ପାଣ୍ଡିତ୍ୟ ତାଙ୍କୁ ପ୍ରକୃତି-ଚିତ୍ର ପ୍ରଦାନ କରିବାରେ ପ୍ରଭୂତ ସହାୟତା କରିଥିଲା। ଦୃଷ୍ଟାନ୍ତ ସ୍ୱରୂପ ଚିଲିକାକୁ 'ଦୀର୍ଘିକା' ରୂପେ ଅଭିହିତ କରିବାରେ ତାଙ୍କର ଶାସ୍ତ୍ରଦର୍ଶିତା ତାଙ୍କୁ ସାହାଯ୍ୟ ଯୋଗାଇଥିଲା। ସାଧାରଣ-ଅଭିଧାନ ମାନଙ୍କରେ ଦୀର୍ଘିକାର ଅର୍ଥ ବୃହଦାକାର ଜଳାଶୟ ବା ହ୍ରଦ ବୋଲି ଉଲ୍ଲିଖିତ ଥିଲେ ହେଁ ଏହାର ଶାସ୍ତ୍ରୀୟ ଅର୍ଥ ହେଲା

ଲବଣାକ୍ତ ଜଳ ସମ୍ବଳିତ ବୃହଦ୍ ଜଳାଶୟ। ସେଥି–ଯୋଗୁଁ ହ୍ରଦ ହେଲେ ହେଁ ଅଂଶୁପାକୁ ଦୀର୍ଘିକା ବୋଲି ସମ୍ବୋଧିତ କରିହେବ ନାହିଁ। ଭାବଗ୍ରାହୀ, ବିକର୍ତ୍ତନ ଆଦି ବହୁ ସଂଖ୍ୟକ ଶବ୍ଦ ପ୍ରୟୋଗ କରି ପ୍ରକୃତିକୁ ରାଧାନାଥ ଯଥାଯଥ ଅଭିବ୍ୟଂଜିତ କରିଛନ୍ତି।

ଆହରଣ ସତ୍ତ୍ୱେ ସମନ୍ୱୟ, ସଂଯୋଜନ ଓ ସମ୍ମେଳନରେ ରାଧାନାଥଙ୍କର ସୃଜନ ଅଙ୍ଗନ ମୁଖରିତ। ଦୃଷ୍ଟାନ୍ତ ସ୍ୱରୂପ 'ଚିଲିକା'ରୁ ବଟବୃକ୍ଷ, କନିଅର ଇତ୍ୟାଦି ମାନଙ୍କୁ ଗ୍ରହଣ କରାଯାଇପାରେ। ବଟବୃକ୍ଷ ସେଠାରେ ଜଣେ ବହୁକୁଟୁମ୍ବୀ ଗୃହସ୍ୱାମୀ। କନିଅର ଫୁଲ ମଧୁପର ମଦ୍ୟପାତ୍ର। କେଡ଼େ ବାସ୍ତବ ଏବଂ କେଡ଼େ ହୃଦ୍ୟ। ଏହିପରି ସଂଖ୍ୟାଧିକ ଦୃଷ୍ଟାନ୍ତ ରାଧାନାଥଙ୍କ କାବ୍ୟ-ରାଜ୍ୟରେ ପ୍ରକୀର୍ଣ୍ଣ। ସେ ଗୁଡ଼ିକହିଁ ମୁଖ୍ୟତଃ ରାଧାନାଥଙ୍କ ପ୍ରକୃତି ଚିତ୍ରର ମଧୁଶାଳା।

(୨)

ଭାରତୀୟ କବି କୃତିରେ ଇଂରେଜ ଅପ୍ରଭାବିତ କାଳରେ ପ୍ରକୃତିର ଭୂମିକା ଥିଲା ନିର୍ଦ୍ଦିଷ୍ଟ। କାଳିଦାସ, ଭାରବି, ମାଘ, ଶ୍ରୀହର୍ଷ ଓ ଭବଭୂତି ପ୍ରମୁଖ ଅସାମାନ୍ୟ ପ୍ରତିଭାଧର କବିବୃନ୍ଦ ବେଦ; ପୁରାଣ ବର୍ଣ୍ଣିତ ପ୍ରକୃତି ଚିତ୍ରଣର ଧାରା ଅନୁସରଣ କରିଥିଲେ ହେଁ ବହୁ ପ୍ରୋଜ୍ଜ୍ୱଳ ଭାବଚେତନାର ସ୍ଫୁରଣ ଘଟାଇ ଏହାର ନବନ୍ୟାସ କରିଥିଲେ। ଏହା ସଂଖ୍ୟାଧିକ ସ୍ଥଳରେ ଆଳଂକାରିକତା ମଧ୍ୟରେ ଆଚ୍ଛନ୍ନ ହୋଇ ପଡ଼ିଥିଲେ ହେଁ କାଳିଦାସଙ୍କର ଲେଖନୀର ଦୈବତ ସ୍ପର୍ଶରେ ଅମୃତାୟମାନ ହୋଇଉଠିଲା। ସେ ପ୍ରକୃତିକୁ ନାୟକତ୍ୱ ପ୍ରଦାନ କରିବା ସଂଗେ ସଂଗେ ତାଠାରେ ଆନୁସଙ୍ଗିକ କ୍ରିୟା, ପ୍ରତିକ୍ରିୟା ଓ ସଞ୍ଚରଣଶୀଳତାର ଆରୋପଣ କରି ସେଥିରେ ଜୀବନର ଦ୍ୟୋତନା ଭରିଦେଲେ। ଶ୍ରୀହର୍ଷ କିନ୍ତୁ ଥିଲେ ରୀତିମୁଖର କବି। ତାଙ୍କର କାବ୍ୟସିଦ୍ଧିର କୋଟୀକୁ ଉଠିବା ଲାଗି ଭଂଜ ପ୍ରମୁଖ କବିବୃନ୍ଦଙ୍କର ଥିଲା ଅହର୍ନିଶ ପ୍ରଚେଷ୍ଟା। ଏମାନେ କାବ୍ୟପ୍ରକରଣ ପ୍ରତି ସମଧିକ ଧ୍ୟାନଶୀଳ ଥିବାରୁ ପ୍ରକୃତି-ଚିତ୍ରଣକୁ ସମୁଚିତ ପ୍ରାଧାନ୍ୟ ଦେଇପାରି ନଥିଲେ ବୋଲି ମନେ ହୁଏ। ଏମାନେ ମଧ୍ୟ ସେ ଦିଗ ପ୍ରତି ସଚେତନ ନଥିଲେ। କାଳିଦାସଙ୍କର 'ମେଘଦୂତମ୍' ରାଧାନାଥଙ୍କୁ ଯେଭଳି ଆକୃଷ୍ଟ କରିଥଲା, ତାଙ୍କ ପୂର୍ବବର୍ତ୍ତୀ କବିମାନଙ୍କୁ ତାହା ସେହିଭଳି ପ୍ରଭାବିତ କରିଥିବା ପରି ଦୃଷ୍ଟ ହୁଏ ନାହିଁ।

ବୈଦିକ ସାହିତ୍ୟରୁ ପୁରାଣ ସାହିତ୍ୟ ଓ ତତ୍‌ପରବର୍ତ୍ତୀ ସଂସ୍କୃତ କାବ୍ୟ ସାହିତ୍ୟରେ ଅବିକଳ ମଣିଷ ପରି ପ୍ରକୃତିକୁ ଗ୍ରହଣ କରାଯାଇଥିବାରୁ ପ୍ରକୃତି ସାରସ୍ୱ ପ୍ରକ୍ରିୟାରେ ଅନ୍ତରଙ୍ଗ ସ୍ୱରୂପ ଆହରଣ କରିଥିଲା। କାଳିଦାସ ଏହି ଧାରାକୁ ପୂର୍ଣ୍ଣାଙ୍ଗତା (Perfection) ପ୍ରଦାନ କରିଥିଲେ। କାଳକ୍ରମେ ନାନାଦି କାରଣରୁ କାଳିଦାସୀୟ ଧାରା (School)

ଉପେକ୍ଷିତ ହୋଇ ରୀତି ସର୍ବସ୍ୱତା ପ୍ରମୁଖ ସ୍ଥାନ ଗ୍ରହଣ କରିବାରୁ ପ୍ରକୃତିର ଉପଯୋଗ ଏକ ବାହ୍ୟ ବିଷୟ ରୂପେ ପରିଚିତ ହୋଇଥିଲା। ମାତ୍ର ଦେଶରେ ଇଂରେଜୀ ଶିକ୍ଷା ପ୍ରଚଳନ ମାଧ୍ୟମରେ ଇଂରେଜି କାବ୍ୟ-କବିତାର ପଠନ, ଅନୁଧ୍ୟାନ ଚାଲିବା ପରେ ପ୍ରକୃତିର ପ୍ରଭାବ, ଅବଦାନ ଓ ବିଶେଷତଃ କାବ୍ୟ-କବିତାଦିରେ ଏହାର ଭୂମିକା ନୂତନ ମୂଲ୍ୟମାନରେ ପ୍ରତିଷ୍ଠିତ ହେବାକୁ ଲାଗିଲା। ବିଶ୍ୱ କବି ରବୀନ୍ଦ୍ରନାଥ ଏହାର ସ୍ୱରୂପକୁ ଅନୁଧ୍ୟାନ କରି କହିଛନ୍ତି, ''ପ୍ରକୃତିର ସହିତ ଆମାଦେର ଯେନ ଭାଇବୋନେର ସଂପର୍କ ଏବଂ ଇଂରାଜୀ ଭାବୁକେର ଯେନ ସ୍ତ୍ରୀ-ପୁରୁଷେର ସଂପର୍କ। ଆମରା ଜନ୍ମାବଧିଇ ଆତ୍ମୀୟ, ଆମର ସ୍ୱଭାବତଇ ଏକ, ଆମରା ତାହାର ମଧ୍ୟେ ନବ ନବ୍ୱ ବୈଚିତ୍ର୍ୟପରି ସୂକ୍ଷ୍ମ ଭାବତୟ ଦେଖିତେ ପାଇନା, ଏକ ପ୍ରକାର ଅନ୍ଧ, ଅଚେତନ ସ୍ନେହେ ମାଖା ମାଖି କରିୟା ଥାକି। ଆମରା ଆବିଷ୍କାର କରି ନାଇଁ; କାରଣ ଆମର ସନ୍ଦେହ କରି ନାଇଁ, ପ୍ରଶ୍ନଓ କରିନାଇଁ।''

ପୂର୍ବରୁ ଯାହା ଥାଉ ନା କାହିଁକି, ଇଂରାଜୀ-ସାହିତ୍ୟରେ ରୋମାଣ୍ଟିକ ରିଭାଇଭାଲ (ପୁନରାବିର୍ଭାବନ) ଯୁଗରେ ସାଧ-ନାନିରତ ଥିବା ୱାଡ଼ସ୍‌ୱାର୍ଥ, ଟେନିସନ୍, ସେଲି ଓ କୀଟସ୍ ପ୍ରମୁଖ ପ୍ରଥିତଯଶା କବିବୃନ୍ଦଙ୍କ ଲେଖନୀରେ ପ୍ରକୃତି ଅଭୂତପୂର୍ବ ସୋନ୍ଦର୍ଯ୍ୟଶାଳିତା, ପ୍ରଭାବ ମୁଖରତା ଓ ସେଥିଯୋଗୁଁ ସର୍ବ ଆକର୍ଷଣୀୟ ଭାବସତ୍ତାରେ ଉନ୍ମୁଖ ବିକାଶ ଲାଭ କରିଥିଲା। ଏହା ଇଂରେଜୀ କାବ୍ୟ-ସାହିତ୍ୟର ଏକ ଧାରାରେ ପରିଣତ ହୋଇଯାଇଥିଲା। ସେମାନଙ୍କର ସର୍ଜନାଦର୍ଶକୁ ଆତ୍ମସାତ୍ କରିବାକୁ ଯାଇ ଯେଉଁ ଭାରତୀୟ କବିବୃନ୍ଦ ସେମାନଙ୍କର ଆଞ୍ଚଳିକ ଭୌଗୋଳିକ ବସ୍ତୁସତ୍ତାକୁ କାବ୍ୟ-କବିତାର ସାଧନ-ସାମଗ୍ରୀ ରୂପେ ଆଦରି ନେବାରେ ବ୍ରତୀ ହୋଇଥିଲେ ସେମାନଙ୍କ ମଧ୍ୟରେ ଓଡ଼ିଶାର କବି ରାଧାନାଥଙ୍କର ପ୍ରମୁଖ ସ୍ଥାନ ରହିଥିବା ସୁବିଦିତ।

ଦେଶାତ୍ମବୋଧରେ ଅନୁପ୍ରାଣିତ ନଥିଲେ ରାଧାନାଥ ଉତ୍କଳୀୟ ପ୍ରକୃତିକୁ ଏତେ ସମାଦର କରିନଥାନ୍ତେ ବୋଲି ଯେଉଁ ଅଭିମତ ପ୍ରକାଶ ପାଇଥାଏ, ସେ ସଂପର୍କରେ ମତଦ୍ୱୈଧତାର ଅବକାଶ ଥାଉ ବା ନ ଥାଉ ରାଧାନାଥ ସତ୍‌କବି ସୁଲଭ ପ୍ରକୃତି—ପ୍ରାଣତାର ଅମ୍ଳାନ ପରିଚିତି ସ୍ୱକୃତିମାନଙ୍କ ମଧ୍ୟରେ ଯେ ଦେଇ ଯାଇ ଅଛନ୍ତି ଏହା ସର୍ବୁମନ୍ତେ ସ୍ୱୀକାର୍ଯ୍ୟ। ଅନ୍ୟ ରଚନା ବ୍ୟତୀତ 'ଚିଲିକା'ଟିକୁ ଉକ୍ତ ଅଭିମତର ପୋଷକ ଦୃଷ୍ଟାନ୍ତ ରୂପେ ଅଭିହିତ କରାଯାଇପାରେ। 'ଚିଲିକା' ସ୍କଟ୍‌ଙ୍କର 'ଲେଡ଼ି ଅଫ୍ ଦି ଲେକ୍' ନୁହେଁ; ଏହା 'ଲେଡ଼ି ଦି ଲେକ୍'। ଚିଲିକାର ବର୍ଣ୍ଣନା କେବଳ ଚିଲିକା ପାଇଁ। ସେ ବର୍ଣ୍ଣନା ଜଣେ କବିଯଶପ୍ରାର୍ଥୀ ବ୍ୟକ୍ତିଙ୍କର ନୁହେଁ, ଚିଲିକା ଦ୍ୱାରା ଅନୁପ୍ରାଣିତ, ଚିଲିକାର ମର୍ମସ୍ଥଳକୁ ସନାକ୍ତ କରିଥିବା ଜଣେ ପ୍ରତିଭାଧର କବିଙ୍କର ଲେଖନୀରେ ଯଥାର୍ଥତଃ 'ସୌନ୍ଦର୍ଯ୍ୟର ଆଲେଖ୍ୟ ଶାଳିକା' ରୂପେ ରସୋତ୍ତୀର୍ଣ୍ଣ ବାଙ୍ମୟ ବୈଭବର ପ୍ରମୂର୍ତ୍ତ ସାରସ୍ୱତ କୀର୍ତ୍ତି। ଚିଲିକା ନ ଦେଖିଥିବା ବ୍ୟକ୍ତି 'ଚିଲିକା' ପାଠକଲେ ଯେପରି ଚିଲିକା ହ୍ରଦର ଏକ ହୃଦ୍ୟ ଆଲେଖ୍ୟ ଆଙ୍କି ନେଇପାରେ, ସେ ଭଳି କୃତିଟିଏ

ଆଉ ଦ୍ୱିତୀୟ ଅଛି ବୋଲି ମନେ ହୁଏ ନାହିଁ। ନିବିଡ଼ ରସଘନ ପ୍ରକୃତି-ପ୍ରୀତି ନଥିଲେ ଏ ଭଳି ରଚନା ସହଜ ସମ୍ଭବ ନୁହେଁ। ରାଧାନାଥଙ୍କର ଉତ୍କଳୀୟ ପ୍ରକୃତି ଚିତ୍ରଣଗତ ବ୍ୟାପକତାକୁ ଲକ୍ଷ୍ୟ କରି ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ 'ରାଧାନାଥଙ୍କର କାବ୍ୟାତ୍ମକ ଭୂଗୋଳ' ଶୀର୍ଷକ ଏକ ପ୍ରବନ୍ଧ ରଚନା କରିଛନ୍ତି। ଏହି ପ୍ରବନ୍ଧଟି ସର୍ବ ପ୍ରଥମେ ଧାରାବାହିକ ଭାବରେ 'ଆସନ୍ତାକାଲି' ପତ୍ରିକାରେ ପ୍ରକାଶିତ ହୋଇଥିଲା।

ଓଡ଼ିଶାର ପ୍ରାୟ ପ୍ରଧାନ ପ୍ରଧାନ ଲକ୍ଷ୍ୟଣୀୟ ପ୍ରାକୃତିକ ଶୋଭାମୟ ସ୍ଥଳମାନଙ୍କୁ ରାଧାନାଥ ଆପଣା କାବ୍ୟ ପରିସରରେ ସମ୍ବର୍ଦ୍ଧନା ଜଣାଇଛନ୍ତି; ସେଠି ଅଛନ୍ତି ବଟବୃକ୍ଷଠାରୁ କନିଅର ଫୁଲ ପର୍ଯ୍ୟନ୍ତ, ପୁଣି ଅଛନ୍ତି ଗଦ୍‌ଗଦ୍ ନାଦୀ ଗୋଦାବରୀ, ରୁଦ୍ର-ଭୀଷଣ ସାତକୋଶିଆ ଗଣ୍ଡ ଓ ତତସନ୍ନିକଟ ବନଭୂମି (ମହାଯାତ୍ରା) ଇତ୍ୟାଦି। ଭାଷାସହ ଭାବୋଦ୍ଦୀପନାର ସୁସମଂଜସ ପ୍ରୟୋଗ କୁଶଳତାରେ ପ୍ରକୃତିକୁ ରୂପାୟିତ କରିବା କ୍ଷେତ୍ରରେ ରାଧାନାଥଙ୍କର ଅଦ୍ୱିତୀୟତା ପ୍ରାୟ ଅବିସମ୍ବାଦିତ। ଯଥା "ଗଦ୍‌ଗଦ୍ ଶବଦେ ଗୋଦାବରୀ ଯହିଁ / କୁହୁରେ ପଡୁଛି ଭୃଗୁ ଦେହେ ଝରି"-ଭବଭୂତିଙ୍କର 'ଉତ୍ତର ରାମ ଚରିତ'ରେ ଥିବା "ଏତେ ତେ କୁହରେଷୁ ଗଦ୍‌ଗଦ ନଦଦ୍ ଗୋଦାବରୀ ବାରୟେ।" ଠାରୁ ଅନୁକୃତ ହୋଇଥିଲେହେଁ ରାଧାନାଥଙ୍କର ଚାହାଁଣୀରେ ଚମତ୍କାରିତା ଏ ଭଳି ସ୍ଥଳମାନଙ୍କରେ ସୁସ୍ପଷ୍ଟ ଉପଲବ୍ଧ।

ରାଧାନାଥଙ୍କ ଦୃଷ୍ଟିରେ ପ୍ରକୃତି ଚିର-ସୁନ୍ଦର। ଏହାକୁ ଉପଭୋଗ କରିବାରେ ମଣିଷ କ୍ଲାନ୍ତି ଅନୁଭବ କରେ ନାହିଁ। "A thing of beauty is joy forever (Tennyson-Endymion)। ଏହା ପୁଣି 'ଶିଶୁପାଳ ବଧ'ର 'କ୍ଷଣେ କ୍ଷଣେ ଯନ୍ନବତା ମୁପୈତି, ତଦେବ ରୂପଂ ରମଣୀୟ ତାୟା'ର ପ୍ରତିଧ୍ୱନି ବହନ କରେ। ସାତକୋଶିଆ ଗଣ୍ଡ ବର୍ଣ୍ଣନା ପ୍ରସଂଗରେ ମଧ୍ୟ ସେହି ଆହରଣ ପ୍ରବଣତାର ସ୍ୱର ଧ୍ୱନିତ। ଯଥା

"ବିଜନ ଭୀଷଣ ସ୍ଥଳୀ ବନ ଗଜ ବ୍ରଜ  
କଣ୍ଡୁଳ କପୋଳ ପିଣ୍ଡ ଘର୍ଷଣେ କମ୍ପିତ  
ଦ୍ରୁମାବଳୀ ଦେହୁ ଯହିଁ ଝରଇ ପ୍ରବାହେ  
ସୁରଭି ଅରଣ୍ୟପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ".....(ମହାଯାତ୍ରା)

ଲକ୍ଷ୍ୟଣୀୟ – "କପୋଳକଣ୍ଡୁ କରୀଭିର୍ବିଯେ ତୁଂ  
ବିଘଟ୍ଟିତାନାଂ ସରଳଦ୍ରୁମାଣାଂ  
ଯତ୍ରସ୍ରୁତ କ୍ଷୀରତୟା ପ୍ରସୂତଃ  
ସାନୂନି ଗନ୍ଧଃ ସୁରଭୀ କରୋତି" (କୁମାର ସମ୍ଭବ)

ପ୍ରକୃତି-ସନ୍ଦର୍ଶନ କ୍ଷେତ୍ରରେ କବିଙ୍କର ଦର୍ଶନ 'ଚିଲିକା'ରେ ପ୍ରତିପାଦିତ। 'ସ୍ନିଗ୍ଧରୂପ ତୋର ଚିତ୍ତ ଉଲ୍ଲାସକ, ସୁମଧୁର ଦ୍ୱୈତ ଭାବର ଦ୍ୟୋତକ'। ଏଠାରେ କେବଳ

କଳ୍ପନା ବିଳାସିତାର ପ୍ରାଧାନ୍ୟ ଅସ୍ୱୀକୃତ ହୋଇନାହିଁ, ବାସ୍ତବ ଚେତନାର ଜୟଗାନ କରାଯାଇନାହିଁ, ଦୃଶ୍ୟର ମନୋହାରିତାକୁ ପ୍ରାଣେ ପ୍ରାଣେ ଅନୁଭବରେ ଆଣି ଏକ ସ୍ଥିରତର, ତଟସ୍ଥ, ଅବିଚଳିତ ଆତ୍ମିକ ଆତ୍ମୀୟତାର ସହ ପ୍ରକୃତିକୁ ଗ୍ରହଣ କରିବାର ବଳିଷ୍ଠ ଇଙ୍ଗିତ ପ୍ରଦାନ କରାଯାଇଛି। ସମଗ୍ର ରାଧାନାଥ-ସାହିତ୍ୟରେ ପ୍ରକୃତି-ଚିତ୍ରଣ ଏହି ମତାଦର୍ଶକୁ ହିଁ ବ୍ୟଂଜିତ କରିଛି, କହିବାକୁ ହେବ।

ରାଧାନାଥଙ୍କର ପ୍ରମୁଖ କାବ୍ୟକୃତିମାନଙ୍କୁ ପ୍ରକୃତିର ଚାରୁ ଚିତ୍ରଶାଳା ରୂପେ ସମୀକ୍ଷକମାନେ ଯେଉଁଳି ଗ୍ରହଣ କରିଛନ୍ତି ତାହା ବହୁ ଅଂଶରେ ଯଥାର୍ଥ। କାରଣ ରାଧାନାଥଙ୍କର ପ୍ରକୃତି ଚିତ୍ରଣ ଜଣେ ନିପୁଣ ଫଟୋଗ୍ରାଫର୍‌ର ଫଟୋଗ୍ରାଫି ଭଳି ଏତେ ନିଖୁଣ, ଏତେ ସଜୀବ, ଏତେ ସ୍ୱଚ୍ଛ ଯେ ସେହି ସେହି ପ୍ରାକୃତିକ ବସ୍ତୁ ବା ଦୃଶ୍ୟ ସତ୍ତାର ବହିରଙ୍ଗ ବିଭବ ପାଠକ ସମ୍ମୁଖରେ ପ୍ରାୟଶଃ ଉନ୍ମୁକ୍ତ ହୋଇଯାଇଥାଏ। ଏଥିରେ ରାଧାନାଥଙ୍କର ପ୍ରକୃତି ଚିତ୍ରଣର ସର୍ବୋତ୍ତମ ସାଫଲ୍ୟ ଯେପରି ସନ୍ନିହିତ, ପ୍ରକୃତିକୁ ନୀତି ଶିକ୍ଷକର ଭୂମିକାରେ ପ୍ରଦର୍ଶନ କରାଇବାରେ ସେତେ ନୁହେଁ। ନୀତି-ଶିକ୍ଷଣର ବୟାନ ଏକ ତାତ୍‌କାଳିକ ଯୋଗାଯୋଗ ସ୍ୱଭାବସୁନ୍ଦର ଓ ସ୍ମରଣୀୟ।

'କୁଟୀର ବିରଚି ଜଟିଆ ଚରଣେ'...ରାଧାନାଥଙ୍କର ଜୀବନର ସର୍ବଶ୍ରେଷ୍ଠ, ସର୍ବଶ୍ରେୟ ଅଭିଳାଷ ଥିବାର ସେ ନିଜେହିଁ ସ୍ୱୀକାର କରି ତାଙ୍କର ପ୍ରକୃତି-ପ୍ରୀତିର ଘନିଷ୍ଠ ତଥା ଅନ୍ତରଙ୍ଗ ପରିଚିତି ପ୍ରଦାନ କରିଛନ୍ତି। ଏହି ଅନ୍ତରଙ୍ଗତାର ଅନ୍ୟ ଏକ ଉଚ୍ଚାରଣ ଆମେ ପାଇଥାଉ, ଅଖିଳଚନ୍ଦ୍ର ପାଲିତ୍‌ଙ୍କ ପାଖକୁ ଲିଖିତ ତାଙ୍କର ଏକ ପତ୍ରରୁ। ସେ ଲେଖିଛନ୍ତି, "ମୋ ରଚନା ସହିତ ଜୀବନର କୌଣସି ସଂପର୍କ ନାହିଁ। ମୁଁ କେବଳ ବହିଃ ସଂସାରର ପ୍ରାକୃତିକ ସୌନ୍ଦର୍ଯ୍ୟ ଘେନି ବ୍ୟାପୃତ ଥିଲି।" (କବିଲିପି—୧୯୫୭ ସଂପାଦନା, ଅଧ୍ୟାପକ ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ ବିଶ୍ୱ ଭାରତୀ ପ୍ରକାଶନ) ଏହା ସ୍ରଷ୍ଟାସୁଲଭ ଅପରିତୋଷର ପ୍ରଚ୍ଛନ୍ନ ଇଙ୍ଗିତ ବହନ କରୁଥିଲେହେଁ ରାଧାନାଥଙ୍କର ପ୍ରକୃତି-ଚେତନା ସଂଭୂତ ପ୍ରକୃତି ଚିତ୍ରଣ ପାଟବତାକୁ ମ୍ଳାନ କରିପାରେନାହିଁ। ସେଥିରେ ସେ ଏବେ ବି ଅଦ୍ୱିତୀୟ ସାରସ୍ୱତ ପ୍ରକୃତି ସେବୀ କବି ଭାବରେ ଦେଦୀପ୍ୟମାନ ଏବଂ ଏ କ୍ଷେତ୍ରରେ ଓଡ଼ିଆ ସାହିତ୍ୟରେ ଏକ ପ୍ରବର୍ତ୍ତକ-ପ୍ରତିଭା। ତାଙ୍କର କାବ୍ୟ ଅଙ୍ଗନରେ ଆତଯାତ ହୋଇଥିବା ପାତ୍ର, ପାତ୍ରୀମାନଙ୍କଠାରୁ ପ୍ରକୃତିର ଭୂମିକା ସମଧିକ ମହୀୟାନ୍ ଓ ସେଥିପାଇଁ ସେ ଓଡ଼ିଆ ତଥା ଭାରତୀୟ ସାହିତ୍ୟ-ଜଗତରେ ସ୍ମରଣୀୟ।

ମେୟାର୍ସ (Micrs) ସାହେବ ୱାର୍ଡ଼ସ୍‌ୱାର୍ଥଙ୍କର ଏକ କବିତାର ସମାଲୋଚନା ପ୍ରସଙ୍ଗରେ କହିଛନ୍ତି।

"When we once loose louch with nature and have no eye or ear for her beauty or grandeur, we cease to have a spiritual life and our religion is but a shame." ଅର୍ଥାତ୍ "ପ୍ରକୃତି

ସହିତ ଥରେ ମାତ୍ର ସଂପର୍କ ତୁଟିଗଲେ, ପ୍ରକୃତିର ସୌନ୍ଦର୍ଯ୍ୟ ଓ ମହିମା ଆମ୍ଭମାନଙ୍କର କର୍ଣ୍ଣ ଓ ନୟନ ଉପଭୋଗ୍ୟ ନୋହିଲେ ଆମ୍ଭମାନଙ୍କର ଅଧ୍ୟାତ୍ମ ଜୀବନର ବିଲୟ ଘଟେ ଓ ଆମ୍ଭମାନଙ୍କର ଧର୍ମ ଉପହାସାସ୍ପଦ ବିଷୟରେ ପରିଣତ ହୁଏ।''

ଏ ଦୃଷ୍ଟିରୁ ରାଧାନାଥଙ୍କର ସୃଜନ ମହିମା ପ୍ରକୃତି ଚିତ୍ରଣ ମାଧ୍ୟମରେ-କି ଭଳି ଉପଲବ୍ଧ ହୁଏ, ସହୃଦୟ ପାଠକମାତ୍ରେ କଳ୍ପନା କରି ପାରନ୍ତି।

□ □ □

# ରାଧାନାଥଙ୍କ ସୃଷ୍ଟିରେ ନନ୍ଦନ ତତ୍ତ୍ୱ

ଡଃ କୁଳମଣି ରାଉତ

ଭାରତୀୟ ନନ୍ଦନତତ୍ତ୍ୱ ପ୍ରସଙ୍ଗରେ ନନ୍ଦନ-ତତ୍ତ୍ୱ ଶବ୍ଦଟିର ଅର୍ଥ ହେଉଛି 'ସୂକ୍ଷ୍ମ କଳାର ଦର୍ଶନ ଓ ବିଜ୍ଞାନ'। ଏହି ସୂକ୍ଷ୍ମକଳା ବା ରମ୍ୟକଳା ଇନ୍ଦ୍ରିୟ-ଗ୍ରାହ୍ୟ-ଜଗତ୍‌ରେ ବିଦ୍ୟମାନ ପରମ କାରୁଣିକଙ୍କର ସତ୍ତା ଅନୁଭବ ଓ ନିରୂପଣକାରୀ ଏକ କଳା। ଭାରତୀୟ ନନ୍ଦନତତ୍ତ୍ୱ ବିଶାରଦମାନେ ସ୍ଥାପତ୍ୟ, ସଂଗୀତ ଓ କବିତାକୁ ରମ୍ୟକଳା ଭାବରେ ଗ୍ରହଣ କଲାବେଳେ, ହେଗେଲ୍ ଏଗୁଡ଼ିକ ବ୍ୟତୀତ ଭାସ୍କର୍ଯ୍ୟ ଓ ଚିତ୍ରବିଦ୍ୟାକୁ ମଧ୍ୟ ରମ୍ୟକଳା ଭାବରେ ସ୍ୱୀକୃତି ପ୍ରଦାନ କରିଛନ୍ତି। ସ୍ମର୍ତ୍ତବ୍ୟ ଯେ ପ୍ରାଚ୍ୟ ନନ୍ଦନ-ତତ୍ତ୍ୱବିଦ୍‌ଗଣ ଭାସ୍କର୍ଯ୍ୟ ଓ ଚିତ୍ରବିଦ୍ୟାକୁ ସ୍ଥାପତ୍ୟ କଳାର ଅନ୍ତର୍ଭୁକ୍ତ କରାଇଛନ୍ତି। ନନ୍ଦନ-ତତ୍ତ୍ୱ କଳାର ଦର୍ଶନ ଭାବରେ, ଆଲୋଚ୍ୟ କଳାମାନଙ୍କର ଦାର୍ଶନିକ ତତ୍ତ୍ୱ ଯଥା ରସ ବ୍ରହ୍ମବାଦ, ନାଦବ୍ରହ୍ମବାଦ ଓ ବସ୍ତୁବ୍ରହ୍ମବାଦ ଓ ବିଜ୍ଞାନ ଭାବରେ ପ୍ରତ୍ୟେକ କଳାର ଟେକ୍‌ନିକ୍‌କୁ ଆଲୋଚନା ପରିସରଭୁକ୍ତ କରିଥାଏ।

ସର୍ବବିଧ କଳା ମଧ୍ୟରେ କବିତା ସର୍ବଶ୍ରେଷ୍ଠ ରମ୍ୟ କଳା। ମାନବଜୀବନ ବିଚିତ୍ରବର୍ଣ୍ଣା ସୃଷ୍ଟିରେ ବହୁରଙ୍ଗ ବିଭାଷିତ। ଜୀବନର ଟିକିନିଖି ଘଟଣା ଏଥିରେ ସ୍ଥାନିତ ହୁଏ। ଜୀବନର ବହୁଧା ଅନୁଭୂତି କଳ୍ପନାର ରଙ୍ଗରେ ରଞ୍ଜିତ ହୁଏ। କବିତା ସୁନ୍ଦରୀ ଅର୍ଦ୍ଧେକ ଅନୁଭୂତି ଓ ଅର୍ଦ୍ଧେକ କଳ୍ପନାର ସମାହାରରେ ମୂର୍ତ୍ତିମତୀ ହୋଇଯାନ୍ତି। ବାସ୍ତବ ଧରଣୀ ଓ କଳ୍ପିତ ସ୍ୱର୍ଗର ଅଦ୍ଭୁତ ସମ୍ମିଶ୍ରଣରେ କବିତା ସୃଷ୍ଟି ହୁଏ। ସସୀମ ଓ ଅସୀମର ସେ ଏକ ସୀମାହୀନ ପ୍ରକାଶ।

ପଞ୍ଚେନ୍ଦ୍ରିୟ ମଧ୍ୟରୁ ଦର୍ଶନ ଓ ଶ୍ରବଣେନ୍ଦ୍ରିୟକୁ ମାନବର ସୌନ୍ଦର୍ଯ୍ୟଗ୍ରାହୀ ଇନ୍ଦ୍ରିୟଭାବରେ ଗ୍ରହଣ କରାଯାଏ। ଏହି ଇନ୍ଦ୍ରିୟଦ୍ୱୟ ସକ୍ରିୟ ହୋଇ ମନକୁ ସୌନ୍ଦର୍ଯ୍ୟ ପ୍ରତି ଆକର୍ଷିତ କରନ୍ତି। ମନ ଏକାଗ୍ର ହୋଇଯାଏ। ବିଭୁଦର୍ଶନରେ ଧ୍ୟାନରତ ଭକ୍ତ ପରି ଅସ୍ମିତା ବିସ୍ମୟରେ ନିମଗ୍ନ ହୋଇଯାଏ। କାବ୍ୟରେ ତିନି ଶ୍ରେଣୀର ବ୍ୟକ୍ତି ଲୋଡ଼ା ଯାଇଥାନ୍ତି। ଯଥା – କବି, ପାଠକ ଓ ଶ୍ରୋତା। ପ୍ରଥମ ଦୁଇ ଶ୍ରେଣୀର ବ୍ୟକ୍ତି ନନ୍ଦନତତ୍ତ୍ୱର ମାଧ୍ୟମ ଓ ତୃତୀୟ ଶ୍ରେଣୀ (ଶ୍ରୋତା) କବିତାର ରସଗ୍ରାହୀ ଭୋକ୍ତା। କବିର ମାନସିକ ସ୍ଥିତି ଓ କାବ୍ୟର ବିଶିଷ୍ଟ ଉପାଦାନଗୁଡ଼ିକୁ ଏହି ଚିହ୍ନରାଗ୍ରାହକ ମାନେ ଚର୍ଚ୍ଚା କରି ଆନନ୍ଦ ଉପଭୋଗ କରନ୍ତି।

ପ୍ରାଚୀନ ସାହିତ୍ୟର ପାଠକମାନଙ୍କୁ କବିମାନେ 'ରସିକ, କୋବିଦ, ଅର୍ଥୀଜନ, ସୁଜନ, ସହୃଦୟ' ଇତ୍ୟାଦି ସମ୍ବୋଧନ କରିଛନ୍ତି। ଏମାନେ ସମ୍ବେଦନଶୀଳ। ସେମାନେ କାବ୍ୟପାଠ କାଳରେ, ସଜ୍ଞାନ ଚିତ୍ତରେ ନିଜ ନିଜର ଚେତନ ମନକୁ ନିଷ୍କ୍ରିୟ କରିଦେଇଥାନ୍ତି।' ସଜାଗ ହୋଇଉଠନ୍ତି ସେମାନଙ୍କ ଅଚେତନ ଓ ଅବଚେତନ ମନ। ମୁହୂର୍ତ୍ତକ ପାଇଁ କାବ୍ୟ ସେମାନଙ୍କୁ ବାସ୍ତବ ସଂସାରର ଉର୍ଦ୍ଧ୍ୱକୁ ଉନ୍ନୀତ କରାଏ। 'ସେମାନେ ହୃଦୟରେ ଆହ୍ଲାଦ ଲାଭ କରିଥାନ୍ତି, ଭୁଲିଯାଆନ୍ତି ନିଜକୁ ନିଜର ସ୍ଥିତିକୁ। ନିତିଦିନିଆ ତେଲ, ଲୁଣ ସଂସାରର ସକଳ ଅଭାବ ଅନଟନ, ହାହୁତାଶମୟ ଦହଗଞ୍ଜ ଗୁଡ଼ାକୁ ସେମାନେ ବିସୋରି ଦିଅନ୍ତି। ତୁ, ମୁଁ'ର ଛୋଟ ଛୋଟ ହିଡ଼ ଗୁଡ଼ାକୁ ସେମାନେ ଭାଙ୍ଗି ପକାନ୍ତି, ବାଧା ତ ନ ଥାଏ; ନଥାଏ ମଧ ବନ୍ଧନ। ଏହି ମାନସିକ ପ୍ରସ୍ତୁତି ସେମାନଙ୍କ ହୃଦୟରେ ଆନନ୍ଦ ସୃଷ୍ଟି କରିଥାଏ। ଏ ଆନନ୍ଦ ଐହିକ ସୁଖ ସମୃଦ୍ଧି ଜନିତ ସୁଖ ନୁହେଁ, ବିଳାସ ଜର୍ଜରିତ ଜୀବନର ଖୁସି ମଧ ନୁହେଁ। ଏହା ଜାଗତିକ ସୁଖର ଉର୍ଦ୍ଧ୍ୱରେ ସ୍ଥିତ ଦିବ୍ୟାନନ୍ଦ। ମୁହୂର୍ତ୍ତକପାଇଁ ସେ ସକଳ ଦୁଃଖରୁ ମୁକ୍ତି ଲାଭ କରେ। ହିନିମାନିଆ ଜୀବନର ବନ୍ଦୀଶାଳାରୁ ସେ ନୂତନ ଦିଗର ସଂଧାନ କରେ। ବିନ୍ଦୁରେ ସିନ୍ଧୁକୁ ଲାଭ କରେ, ନିଜ ମଧରେ ସେ ଭୂମାକୁ ଅନୁଭବରେ ଆଣେ। ଏବର ମଳାଗୁଣୀ 'ଋଣପୁର ରାଷ୍ଟ୍ର ସୁଶୋଭିନୀ ମନ୍ଦାକିନୀ'ରେ ପରିଣତ ହୋଇଯାଏ, ଭାଲେରୀ ଶିଖରରେ ଦେବ ବିକର୍ତ୍ତନ ସିଂହାସନ ସଂଧ୍ୟାରାଣୀଙ୍କ ପାଇଁ ପାରି ଦେବା' ମଧରେ କବି କେବଳ ସୂର୍ଯ୍ୟାସ୍ତକୁ ଲକ୍ଷ୍ୟ କରେ ନାହିଁ। ସେ ପରିଦୃଶ୍ୟମାନ ଜଗତ୍‌କୁ ଦେଖି ଆତ୍ମବିସ୍ମୃତ ହୁଅନ୍ତି। ଭକ୍ତ ହୃଦବେଦୀରେ ପରମ କାରୁଣିକଙ୍କର ଆବିର୍ଭାବ ହୋଇଯାଏ। ପବିତ୍ର ସୌନ୍ଦର୍ଯ୍ୟ ସହିତ ଏକୀକାର ହୁଏ। 'ପବିତ୍ର ସୁନ୍ଦର, ସୁନ୍ଦର ପାବନ'ର ସଂଘଟନ ସମ୍ଭବ ହୁଏ।

ସହୃଦୟ ବ୍ୟକ୍ତିର ହୃଦୟକୁ ରସ ସିକ୍ତ କରେ। ରସ ପ୍ରକୃତି ସୃଷ୍ଟ ଆଦୌ ନୁହେଁ, ନାନ୍ଦନିକ ବସ୍ତୁହିଁ 'ରସ। ବହୁଧା ନାନ୍ଦନିକ ବସ୍ତୁର ଜୈବିକ-ସଂହତି ହେଉଛି ରସ। ମାନବ ହୃଦୟରେ ନଅଗୋଟି ସ୍ଥାୟୀ ଭାବ ରହିଥିଲେ ହେଁ, କାବ୍ୟ ବର୍ଣ୍ଣିତ ବିଷୟରେ ଗୋଟିଏ ରସ ପ୍ରମୁଖ ସ୍ଥାନ ଅଧିକାର କରିଥାଏ। ଏହାହିଁ କାବ୍ୟର ଅଙ୍ଗୀରସ। ସ୍ୱୀକାର୍ଯ୍ୟ ଯେ ଏହି ରସ ବ୍ୟତୀତ କାବ୍ୟରେ ଏକ ବା ଏକାଧିକ ଅଙ୍ଗରସର ସଂସ୍ଥାନ ହୋଇଥାଏ। ଏଣୁ କାବ୍ୟ ପାଠ କାଳରେ ପାଠକ ଓ ଶ୍ରୋତାଙ୍କ ହୃଦୟରେ କାବ୍ୟ ବର୍ଣ୍ଣିତ ଅଙ୍ଗରସ ନିର୍ଦ୍ଧାରିତ ସ୍ଥାୟୀ ଭାବଟିକୁ ଉଜ୍ଜୀବିତ କରାଇଥାଏ। ଏହି ସ୍ଥାୟୀଭାବକୁ ଉଦ୍ରିକ୍ତ କରାଇବାପାଇଁ ଆଲମ୍ବନ ଓ ଉଦ୍ଦୀପନ ବିଭାବ ଲୋଡ଼ା ହୁଅନ୍ତି। ଏହାକୁ ଅନୁଭବରେ ଆଣିବା ପାଇଁ ନାୟକ ନାୟିକାଙ୍କ ଅଙ୍ଗଜ ଓ ସ୍ୱଭାବଜ ଅଳଙ୍କାରର ବର୍ଣ୍ଣନା କାବ୍ୟରେ କରାଯାଇଥାଏ।। ସାତ୍ତ୍ୱିକ ଗୁଣର ଆବଶ୍ୟକତା ଏଠାରେ ଆଦୌ ଊଣା ନୁହେଁ। ମାନବ ମନରେ ୩୩ଟି ବ୍ୟଭିଚାରୀ ଭାବ ବିଦ୍ୱାନମାନେ ଲକ୍ଷ୍ୟ କରିଛନ୍ତି। ସମୁଦ୍ରର ଲହରୀମାଳା ପରି ଏହି ଭାବ ଗୋଟିକ ପରେ ଗୋଟିଏ

ଦେଖାଦେଇ ନଷ୍ଟ ହୋଇଯାଇଥାନ୍ତି। ଭାରତୀୟ ବିଦ୍ୱାନଗଣ 'ନବରସ ରୁଚିରା' କହି ରସର ସଂଖ୍ୟା ନ' ବୋଲି କହିଲାବେଳେ ପାଶ୍ଚାତ୍ୟତତ୍ତ୍ୱବିଦ୍‌ଗଣ ଟ୍ରାଜେଡ଼ି ଓ କମେଡ଼ି ଭେଦରେ ଏହାର ସଂଖ୍ୟା ଦୁଇରେ ସୀମିତ ରଖିଛନ୍ତି।

ସୁନ୍ଦର ବସ୍ତୁର ଉପାଦାନ ସକଳ ଆଦୌ ପ୍ରକୃତ ସୃଷ୍ଟ ନୁହନ୍ତି, ସେଗୁଡ଼ିକ କଳାର ସୃଷ୍ଟି। ଏହା ପ୍ରକୃତିର ଅନୁକରଣରୁ କଦାଚନ ସୃଷ୍ଟି ହୁଅନ୍ତି ନାହିଁ। କବି-ମଣିଷର ଅନ୍ତର୍ଦୃଷ୍ଟି ଏହାକୁ ପୁନର୍ବିନ୍ୟାସ କରି ସକଳ ସମ୍ଭାବ୍ୟ ଉପାୟରେ, ସଂପୂର୍ଣ୍ଣ ଭାବରେ ଉପସ୍ଥାପନ କରେ। ରୋଲ୍‌ଡ଼ଗୋଲ୍‌ଡ଼ ହାରଟି ରଙ୍ଗ ଓ ରୂପରେ ସ୍ୱର୍ଣ୍ଣ – ହାରର ଅନୁକୃତି ନିଶ୍ଚୟ, କିନ୍ତୁ ହାରଟି ସ୍ୱର୍ଣ୍ଣ ନୁହେଁ। ତେଣୁ ସୌନ୍ଦର୍ଯ୍ୟ ଯେତେବେଳେ ପ୍ରକୃତିକୁ ଅନୁକରଣ କରେ, ତାହା ପ୍ରକୃତ ବସ୍ତୁର ରୂପ ରଙ୍ଗ ଉପସ୍ଥାପନ କରେ; ମନରେ ଅସତ୍ୟକୁ ସତ୍ୟର ଭ୍ରାନ୍ତିରେ ପରିଣତ କରି ଦେଇଥାଏ। ଅଥଚ ଦର୍ଶକ ହୃଦୟରେ ପାଞ୍ଚଟଙ୍କା ଦେଇ କିଣିଥିବା ରୋଲ୍‌ଡ଼ ଗୋଲ୍‌ଡ଼ ହାରର ନକଲ ତଥ୍ୟଟି ସବୁବେଳ ପାଇଁ ରହିଯାଏ। ନାନ୍ଦନିକ ବସ୍ତୁ କେବଳ ରଙ୍ଗ ବା ରୂପ ନୁହେଁ, ଏହାର ଅନ୍ତର୍ନିହିତ ମୂଲ୍ୟକୁ ବୁଝାଇଥାଏ। ରାଧାନାଥଙ୍କ କଳ୍ପନା ବିଳାସରେ, ସୃଷ୍ଟିରେ ଏହି ନାନ୍ଦନିକ ମୂଲ୍ୟର ବିଚାର ବିମର୍ଶ ନିମ୍ନରେ ଉପସ୍ଥାପନ କରାଯାଉଛି।

ରୂପସୀ ନବଯୌବନା ଚନ୍ଦ୍ରଭାଗା କନ୍ଦୁକ କ୍ରୀଡ଼ାରେ ପ୍ରମତ୍ତ। ପ୍ରତି ଅଙ୍ଗଭଙ୍ଗୀରେ ନବନବ ଶୋଭାତରଙ୍ଗ ସୃଷ୍ଟି ହେଉଅଛି। କନ୍ଦୁକର ଗତି ଆକଳନରେ ଚନ୍ଦ୍ରଭାଗାର କ୍ରୀଡ଼ା-ଲୋଳ-ଲୋଚନର ଚଳ-ଭ୍ରୂ-ଚାରୁନର୍ତ୍ତନ, ସୁଗୋଲ ନିତମ୍ବରେ ହେମ-ମେଖଳାର ବିମ୍ବ, ସ୍ତନଯୁଗ ମଧ୍ୟରେ ମୋତିମାଳା ପଦକର ନର୍ତ୍ତନ, ଶ୍ରବଣରେ କୁଣ୍ଡଳର ଦୋଳନ, ନୀଳ ଅଳକାର କମ୍ପନ, ଲଲାଟରେ ସ୍ୱେଦସିକ୍ତ ସିନ୍ଦୂର ବିନ୍ଦୁ, ନାସିକାର ମଣିର ଅଂଶୁକ, ଚାରୁ ଚିବୁକରେ ମୃଗମଦ ବିନ୍ଦୁ, ସାଗରରେ ଅଧର-ପ୍ରବାଳ ଲତାଧାରିଣୀ ଚନ୍ଦ୍ରଭାଗା ମଥାର କେଶଗୁଚ୍ଛ ଫିଟି ଭୂମି ସ୍ପର୍ଶ କରି ଯାଉଛି;

''ଯେଣେ ଅନାଉଛି ଲଳନା
ଫୁଲ ଯାଏ ବରଷି;''

ଯେଣେ ଅନାଉଛି ଏହି ନବୀନା ରୂପସୀ ଚନ୍ଦ୍ରଭାଗା, ପ୍ରତ୍ୟେକ ଦୃଷ୍ଟିପାତରେ ଅସଂଖ୍ୟ ରଙ୍ଗବେରଙ୍ଗୀ ଫୁଲର ବର୍ଷା, ବସନ୍ତ ମହୁଆ ନିଶା ଓ ଉଦ୍ଦାମ ରୂପ ଯୌବନର ଝରଣା ଛୁଟିଛି। ଏ ସୌନ୍ଦର୍ଯ୍ୟ ପାଇଁ ଆଦୌ ପାଗଳ ହୋଇ ନାହାନ୍ତି ବିପ୍ରବେଶୀ ମିହିର। ସୌନ୍ଦର୍ଯ୍ୟନିହିତ* ଥିବା ଚନ୍ଦ୍ରଭାଗା ପାଇଁ ଦେବତା ଦାନବରେ ପରିଣତ ହୋଇଛି। ଏଥିରେ ପ୍ରଣୟର ଶୁଚିତା ନାହିଁ, ନାହିଁ ମଧ୍ୟ ଆଦର୍ଶ; କାମନାର ଉତ୍କଟ ଦୁର୍ଗନ୍ଧ ରହିଛି, ରହିଯାଇଛି ନାରୀ-ରଙ୍କ ତେଜସ୍ୱୀ ତପନଙ୍କର ସ୍ତ୍ରୈଣଜନୋଚିତ

'କାବେର୍ନ୍ତର୍ଗତମ୍ ଭାବମ୍ ଭାବୟାନ୍ ଭାବ ଉଚ୍ୟତେ।' ଭରତ ମୁନି ନାଟ୍ୟଶାସ୍ତ୍ର ୭୯।
'ତ୍ରୈଲୋକ୍ୟାସ୍ୟାସ ସର୍ବସ୍ୟଂନାଟ୍ୟମ୍ ଭାବାନୁକୀର୍ତ୍ତନମ୍' - ଏକ୍ସନ- ୮।

କାମୁକ ବ୍ୟବହାର। ଏଠାରେ ବଳତ୍କାରର ସକଳ ସମ୍ଭାବନା ରହିଛି। ତେଣୁ ସୂର୍ଯ୍ୟ ଚନ୍ଦ୍ରଭାଗାର ସଂପର୍କ ସଞ୍ଚାଣ ହଳଦୀ ବସନ୍ତର, ଖାଦକ ଓ ଖାଦ୍ୟର।*

ନୈତିକ ଓ ପ୍ରଜ୍ଞାବାଦୀ ଭେଦରେ ସୌନ୍ଦର୍ଯ୍ୟ ଦ୍ୱିବିଧ। ଏହି ସୌନ୍ଦର୍ଯ୍ୟ ମାନବ ସକଳଙ୍କୁ ସ୍ୱଭାବ ଦୃଷ୍ଟିରୁ ତିନି ଭାଗରେ ବିଭକ୍ତ କରାଯାଇଛି। ଯଥା— ଉତ୍ତମ, ଆମ୍ଭମାନଙ୍କ ପରି ସାଧାରଣ ଓ ଆମ୍ଭମାନଙ୍କ ଅପେକ୍ଷା ହୀନ।** ଦୁଃଖାନ୍ତ କାବ୍ୟରେ ଅପରାଧୀ ଚରିତ୍ର ଗୁଡ଼ିକ ହୀନ ଶ୍ରେଣୀର ଏବଂ କୌଣସି ଅପରାଧ ନ କରି ଜୀବନ ଯୁଦ୍ଧରେ ପରାଜିତ ନାୟକ ନାୟିକା ଉତ୍ତମ ବର୍ଗର ଲୋକ। ଏମାନେ ପ୍ରତ୍ୟେକେ ସୌନ୍ଦର୍ଯ୍ୟର ପ୍ରତୀକ। ମାନବ ପ୍ରଜ୍ଞାଦ୍ୱାରା ଏହି ସୌନ୍ଦର୍ଯ୍ୟର ଆକଳନ କଲାବେଳେ ତାହାର ମସ୍ତିଷ୍କକୁ ଶିରାଦ୍ୱାରା ଅଧିକ ଶୋଣିତ ପ୍ରବାହିତ ହୋଇଥାଏ। ଏହାଦ୍ୱାରା ମସ୍ତିଷ୍କରେ ମୃଦୁ କଂପନ ସୃଷ୍ଟିହୁଏ। ଏହି କଂପନ ତାହାର କଳ୍ପନା ଶକ୍ତିକୁ ତୀବ୍ରତର କରେ। ହୃଦଚକ୍ରରେ ମନୁଷ୍ୟ ଏହି ଅବସ୍ଥାରେ ସାଧନା ରତ। ଶରୀରରେ ଏହା ଉତ୍ତେଜନା ସୃଷ୍ଟି କରାଏ। ସୌନ୍ଦର୍ଯ୍ୟର ଆକଳନ ମଧ୍ୟରେ ସୌନ୍ଦର୍ଯ୍ୟନିହିତ ବସ୍ତୁ ବା ବ୍ୟକ୍ତି ପ୍ରତି ଦର୍ଶକର ଇନ୍ଦ୍ରିୟ ଆସକ୍ତି ସୃଷ୍ଟି ହୁଏ। ହୃଦଚକ୍ରରୁ ସେ ଅଧୋଗାମୀ ହୁଏ। ଉତ୍ତମ ଓ ସାଧାରଣ ଶ୍ରେଣୀର ଲୋକେ ନୈତିକ ଶକ୍ତି ଦ୍ୱାରା ନିଜ ନିଜକୁ ସଂଯତ କରି, ବ୍ୟକ୍ତି ବା ବସ୍ତୁପ୍ରତି ଆକର୍ଷିତ ନହୋଇ ସୌନ୍ଦର୍ଯ୍ୟର ଉପାସନା କରିଥାନ୍ତି। ହୀନ ଶ୍ରେଣୀର ଲୋକେ ପ୍ରଜ୍ଞାବାଦୀ ସୌନ୍ଦର୍ଯ୍ୟ ପ୍ରତି ପ୍ରାଥମିକ ସ୍ତରରେ ଧ୍ୟାନ ଦେଇ ବ୍ୟକ୍ତି ବା ବସ୍ତୁକୁ ଯେ କୌଣସି ଉପାୟରେ ଲାଭ କରିବାପାଇଁ ଚଞ୍ଚଳ ହୋଇ ଉଠନ୍ତି। ଏହାର ପରିଣତି ହୁଏ ଭୟାନକ। ରାଧାନାଥଙ୍କ ଦୁଃଖାନ୍ତ କାବ୍ୟସମୂହ ଏହି ନୈତିକ ପ୍ରଜ୍ଞାବାଦୀ ସୌନ୍ଦର୍ଯ୍ୟ ବିଷୟ ବର୍ଣ୍ଣନା କରିଛନ୍ତି; ଏଥିରେ ସୂଚିତ ହୋଇନାହିଁ ଇନ୍ଦ୍ରିୟ ଉପଭୁକ୍ତ ସୌନ୍ଦର୍ଯ୍ୟର ବିଷୟ। ସୌନ୍ଦର୍ଯ୍ୟର ସ୍ନିଗ୍ଧ ରୂପ ଚିତ୍ତ ଉଲ୍ଲସିତ କରେ। ଏହା ସୁମଧୁର ଦ୍ୱୈତ ଭାବର ଦ୍ୟୋତକ। ସୁନ୍ଦର ମଧ୍ୟରେ ଶିବର ସଂଧାନ କରାଯାଏ। ଦର୍ଶକ ମନରେ ଐଶୀ ଶକ୍ତିରେ ବିଶ୍ୱାସ ସୃଷ୍ଟି ହୁଏ। 'ଧୂଳି ମାଟିର ସଂସାର ଅମୃତୋପମ ହୋଇଯାଏ। ଜୀବନ ହୋଇଯାଏ ମଧୁମୟ ହୃଦୟରେ କରୁଣା ଜାତ ହୁଏ। ସୌନ୍ଦର୍ଯ୍ୟ ମନରେ ଶାନ୍ତିର ପ୍ରଲେପ ଦିଏ। ଏହି ନାନ୍ଦନିକ ଅନୁଭୂତି ପ୍ରସୂତ ସ୍ୱାର୍ଥ-ବିରହିତ ଆନନ୍ଦହିଁ ସୌନ୍ଦର୍ଯ୍ୟ।

'ନନ୍ଦିକେଶରୀ' କାବ୍ୟର ନାୟକ ଯୁଦ୍ଧବୀର ଚୋରଗଙ୍ଗ ଜମାରୁ ଧର୍ମବୀର ନୁହନ୍ତି। ଯୁଦ୍ଧଭୂମିରେ ବାଜୀ-ପୃଷ୍ଠାସୀନ ଚୋରଗଙ୍ଗଙ୍କ ଅଙ୍ଗରେ ବର୍ମ, ଶିରରେ ସ୍ୱର୍ଣ୍ଣ-ଶିରସ୍ତ୍ରାଣ, ଦକ୍ଷିଣ ହସ୍ତରେ କୃପାଣ ସଜ୍ଜିତ। ଚକ୍ରାକାରରେ ଗତି କରି ସେ ଧନୁରୁ ଶର

---

* ତୁଳନୀୟ ଗଙ୍ଗାଧର ମେହେରଙ୍କ 'କୀଚକବଧ'ର (ଚତୁର୍ଥ ସର୍ଗ),
''ମୃଗୀ ପଳାଏ ଯେହ୍ନେ ଦେଖିଲେ ବାଘ'',

** ଆରିଷ୍ଟୋଟଲଙ୍କ କାବ୍ୟତତ୍ତ୍ୱ-ଅନୁବାଦକ ଡ଼ଃ ଅନନ୍ତ ଚରଣ ଶୁକ୍ଳ

ବିନ୍ଧିବାରେ ବ୍ୟସ୍ତ। ଶତ ମହିଷୀର ଉତ୍ସଙ୍ଗ–ଲାଳିତା ଏକମାତ୍ର କନ୍ୟା ନନ୍ଦିକାଙ୍କ ଚକ୍ଷୁ ସମକ୍ଷରେ ଚାପରୁ ଶର ନିକ୍ଷେପୁଥିବା ଚୋରଗଙ୍ଗ ପୁଷ୍ପଧନ୍ୱାଙ୍କ ପରି ଦେଖାଯାଉଥିଲେ। ତାହାଙ୍କ ଯୋଦ୍ଧୃବେଶ ନନ୍ଦିକାଙ୍କୁ ଆନମନା କରାଉଥିଲା। ଶତ୍ରୁ ପ୍ରତି ନିଜର ପ୍ରଣୟ ସୃଷ୍ଟି ହୋଇଗଲା ଅଜ୍ଞାତସାରରେ।

''ଗଲା ହୃଦୟ ନ ଆସିବ ବାହୁଡ଼ି
ପକ୍ଷଥିଲେ ଦେହ ଯାଆନ୍ତା ଉଡ଼ି।''

ଘୃଣା, ବିଦ୍ୱେଷ ଓ ବିରୋଧରୁ, ସକଳ ନେତିବାଚକ ପରିସ୍ଥିତି ଓ ନଞ୍ଚାତ୍ମକ ପରିବେଶ ମଧ୍ୟରେ ବହିରାଗତ ଆକ୍ରମଣକାରୀ ଚୋରଗଙ୍ଗଙ୍କ ପାଇଁ ନନ୍ଦିକାଙ୍କ ହୃଦୟରେ ସରାଗ ସୋହଗ ସୃଷ୍ଟି ହୋଇଛି। ପିତାଙ୍କର ଜୈତ୍ରମଣି ଘେନି ଯାଇ ନନ୍ଦିକା ରାଜବାଟୀରୁ ଚାଲି ଚାଲି ଶତ୍ରୁ ଶିବିରରେ ପହଞ୍ଚିଛନ୍ତି।

ତାଙ୍କର ଅଲକ୍ତକ ରଞ୍ଜିତ ଚରଣ ପ୍ରତି ପଦକ୍ଷେପରେ ପ୍ରସ୍ଫୁଟିତ ସ୍ଥଳ କମଳର ଭ୍ରାନ୍ତି ସୃଷ୍ଟି କରିଛି। ଅତ୍ୟଳ୍ପ ତାରାମାନଙ୍କ ମଧ୍ୟରେ ପୂର୍ଣ୍ଣମାସୀ ତୁଲ୍ୟ ସ୍ୱଳ୍ପ ଭୂଷଣରେ ଶୋଭା ପାଉଥିଲେ ମତକାଶୀ। ଜ୍ୟୋତ୍ସ୍ନାର ମୂର୍ତ୍ତିମତୀ ଜୀବନ୍ତ ପ୍ରତିମାପରି ସେ ପ୍ରତୀୟମାନା ହେଉଥିଲେ। ପଥକ୍ଳାନ୍ତି ଜନିତ ସ୍ୱେଦବିନ୍ଦୁ ମୁଖମଣ୍ଡଳରୁ ଝରିଗଲାବେଳେ ଚନ୍ଦ୍ରରୁ ସୁଧାଧାରା ପ୍ରବାହିତ ହେଲା ପରି ଜଣା ପଡୁଥିଲା। ହୀରକ ନିର୍ମିତ କର୍ଣ୍ଣଫୁଲ, ମୁଖ ଚନ୍ଦ୍ର ନିକଟରେ ଦେବଗୁରୁ ଓ କାବ୍ୟତାରା ପରି ଝଟକୁ ଥିଲେ। ଶରତର ନିର୍ମଳ ନୀଳ ଆକାଶରେ ଚନ୍ଦ୍ର ପରି ତାହାଙ୍କ ମୁଖ ଶୋଭା ପାଉଥିଲା। ଗ୍ରୀବା ଦେଶ ସାମାନ୍ୟ ବଙ୍କିମ ଠାଣିରେ ରହିଥିଲା ବେଳେ, ଜଳରେ ଭାସୁଥିବା ଶତଦଳର ଭ୍ରାନ୍ତି ଜାତ କରୁଥିଲା। ସେହି ବଙ୍କିମ ଠାଣି ମଧ୍ୟରେ ଭ୍ରୂଲତା ମଧ୍ୟରେ ତରଙ୍ଗ ଚାହାଣି କ୍ରୀଡ଼ାରତ ସର୍ପ ସଦୃଶ ପ୍ରତୀୟମାନ ହେଉଥିଲା। କରଯୁଗରେ ମର୍କତ ଚୂଡ଼ି ଚମ୍ପାରେ ଭ୍ରମର ବସିଥିବାର ସନ୍ଦେହ ଉପଜାଉ ଥିଲା। କମଳ କଳିକା ତୁଲ୍ୟ ଉରୁ ଦେଶକୁ ବନ୍ଧୁରିତ କରି ଯୌବନର ସ୍ମାରକୀ ବିଦ୍ୟମାନ। ନନ୍ଦିକାର ସୌନ୍ଦର୍ଯ୍ୟର ଏ ରସ-ଘନ ବର୍ଣ୍ଣନା ପାଠ କଲାବେଳେ ମନେ ହୁଏ, 'ଜଗତେ ତୁଳନା ସେହି ତାର ସିନା।' ରାଧାନାଥଙ୍କ କଳ୍ପନା ବିଳାସ ଅତୁଳନୀୟ। କବିର ଲେଖନୀ ସାର୍ଥକ ହୋଇଛି, ପାଠକେ ଲାଭ କରିଛନ୍ତି ଦିବ୍ୟାନନ୍ଦ। ଏ ସୌନ୍ଦର୍ଯ୍ୟ ଦର୍ଶନରେ ଦର୍ଶକ ମନରେ ଅବସାଦ ଆସେ ନାହିଁ। ଏହାକୁ ଯେତେ ଦେଖୁଥିଲେ ନୂଆ ଦିଶୁଥାଇ।

''ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦର ପଣର ଚିରନ୍ତନ ରୀତି।'' (ଚିଲିକା)

ରାଧାନାଥ ରସତତ୍ତ୍ୱର ମଧ୍ୟଯୁଗୀୟ କାବ୍ୟ ପରଂପରାରେ ପରିବର୍ତ୍ତନ ଆଣିଥିଲେ। ପରିଣତି ଦୃଷ୍ଟିରୁ ଏକମାତ୍ର 'ଯଯାତିକେଶରୀ' କାବ୍ୟର କଥାବସ୍ତୁ ଶୁଭାନ୍ତ। ଅନ୍ୟଗୁଡ଼ିକ ଦୁଃଖାନ୍ତ। ଆମେ ଏଠାରେ ରାଧାନାଥଙ୍କର କଥାବସ୍ତୁର ଆହରଣ, ଏ ଦେଶ ମାଟିର ତାହାର ଆରୋପଣ ଓ ସମୀକରଣ ବିଷୟକୁ ଚର୍ଚ୍ଚା କରୁନାହିଁ। ଏଠାରେ ଉଲ୍ଲେଖନୀୟ

ଯେ ସେ ଆହୃତ ଶୁଭାନ୍ତ କଥାବସ୍ତୁକୁ ନିଜ କାବ୍ୟରେ ଦୁଃଖାନ୍ତ କରିଦେଇଛନ୍ତି। (ଉଷା)

ପୁରୁଷାନୁକ୍ରମିକ ପାରିବାରିକ କଳହ ସତ୍ତ୍ୱେ କେଦାରଗୌରୀଙ୍କ କୈଶୋର ଜୀବନରେ ପ୍ରଣୟ ସମ୍ପର୍କିଛି ଓ ପରିଣତିରେ ନାୟକ ନାୟିକା ମୃତ୍ୟୁ ବରଣ କରିଛନ୍ତି। ଚନ୍ଦ୍ରଭାଗାର ସାଗରବକ୍ଷରେ ଝାସଦେଇ ଇହଲୀଳା ସମ୍ବରଣ କଲାବେଳେ ନନ୍ଦିକା ଆତ୍ମହତ୍ୟା କରିଛି। ବିବାହ ବେଦୀର ଉଷା ଜୟନ୍ତଙ୍କର ମୃତ୍ୟୁ, କୌଶଲ୍ୟାଙ୍କ ହତ୍ୟା (ଗଙ୍ଗେଶ୍ୱରଙ୍କ ହତ୍ୟା ଏବଂ ଅନ୍ନପୂର୍ଣ୍ଣା ଓ ପାର୍ବତୀଙ୍କର ଆତ୍ମହତ୍ୟା) ପାଠକଙ୍କ ହୃଦୟରେ କରୁଣରସର ଉଦ୍‌ବୋଧନ କରାଇଛି। ଏହି ରସର ସ୍ଥାୟୀଭାବ ଶୋକ। ସାହିତ୍ୟର ଚିରନ୍ତନ ଉଦ୍ଦେଶ୍ୟ ଆନନ୍ଦ ଦାନ। କାନ୍ତାସମ୍ମିତ ଲକ୍ଷଣା ଏହାର ରଚନା-ଶୈଳୀ। ରାଧାନାଥ କାବ୍ୟସମୂହ ଏଠାରେ କିପରି ଆନନ୍ଦ ଦାନର ବୈପରୀତ୍ୟ ସାଧନ କରୁନାହିଁ, ତାହାହିଁ ବିଚାର କରାଯିବା ବିଧେୟ।

ମାନବର ତିନିଗୋଟି ମନ ମଧ୍ୟରୁ, ସାହିତ୍ୟ ପାଠ କାଳରେ ଚେତନ ମନଟି ନିଷ୍କ୍ରିୟ ରହିଥାଏ। ପାଞ୍ଚଗୋଟି ଇନ୍ଦ୍ରିୟ ମଧ୍ୟରୁ ଦର୍ଶନ ଓ ଶ୍ରବଣେନ୍ଦ୍ରିୟ ଉଜ୍ଜାଗର ରହି ମନକୁ କାବ୍ୟବର୍ଣ୍ଣିତ ବିଷୟ ପ୍ରତି ଏକନିଷ୍ଠ କରନ୍ତି। ଶରୀରର ଛଅଟି ଚକ୍ର ମଧ୍ୟରୁ ଗୁହ୍ୟ, ଲିଙ୍ଗ ଓ ନାଭିଚକ୍ରହିଁ ସକଳ ପାପାଚାରର ଅଧିଷ୍ଠାନ ସ୍ଥଳ। ପ୍ରତ୍ୟେକ ଚକ୍ରରୁ ଦୁଇଟି ରିପୁର ସୃଷ୍ଟି। ଲୋଭମୋହ, କାମକ୍ରୋଧ ଓ ମଦମାତ୍ସର୍ଯ୍ୟ ଯଥାକ୍ରମେ ଏହି ତ୍ରିଚକ୍ରରୁ ଜାତ ହୋଇଥାନ୍ତି। ଏଗୁଡ଼ିକ ସଂଗୁପ୍ତ ଭାବରେ ଅବଚେତନ ମନ ସହିତ ଆବେଶିତ। ଏହି ମନ ଅସୂର୍ଯ୍ୟ ଉପନିବେଶ। ଅବଚେତନ ମନର ଅନ୍ଧାରୀକୋଣରୁ ଅପରାଧ ପ୍ରବୃତ୍ତି ରୂପକ ଫଂପଟା ଫଣା ଟେକି ଫଁ ଫଁ କରୁଥାଏ। ସୁଯୋଗ ମିଳିଲେ ପାପ କରିବା ପାଇଁ ଅପରାଧୀର ମନ ବଡ଼ବେଶି ଆତୁର ହୁଏ। ସେ ପାପ କରେ। ରାଧାନାଥଙ୍କର ଦୁଃଖାନ୍ତ କାବ୍ୟର ନାୟକ, ନାୟିକା ବା ଉଭୟ ଏହାର ଶରବ୍ୟ। ହୋଇଯାଉନ୍ତି ସେମାନେ କେଦାର ଗୌରୀ, ସେମାନଙ୍କ ପିତାମାତା, ବିଶ୍ୱଚକ୍ଷୁ ତପନ, ନନ୍ଦିକା, ଅଭିଶପ୍ତ ଉଷାଜୟନ୍ତ, ଗଙ୍ଗେଶ୍ୱର।

ଅପରାଧ ତ୍ରିବିଧ। ଯଥା – ଜ୍ଞାତକୃତ, ଅଜ୍ଞାତକୃତ ଓ ଦୈବୀକୃତ। ମନୁଷ୍ୟ ଏହି ତ୍ରିବିଧ ପାପ ମଧ୍ୟରୁ ସାଧାରଣତଃ ଗୋଟିଏ ପାପ କରି ତାହାର ପ୍ରାୟଶ୍ଚିତ୍ତ କରିଥାଏ। ସୂର୍ଯ୍ୟ, ନନ୍ଦିକା ଓ ଗଙ୍ଗେଶ୍ୱର ଜ୍ଞାତକୃତ ପାପ, କେଦାର ଗୌରୀ ଅଜ୍ଞାତକୃତ ପାପ (ଗୌରୀକୁ ବାଘ ଖାଇଯାଇ ଥିବାର ଧାରଣା), ଉଷା ଜୟନ୍ତଙ୍କର ଦୈବୀକୃତ ପାପ (ପୂର୍ବଜନ୍ମର ଅପରାଧ ଯୋଗୁଁ ଅଭିଶାପ) ଦଣ୍ଡିତ ହୋଇଛନ୍ତି।

ପାଠକ ଓ ଶ୍ରୋତା ସାଧାରଣ ମଣିଷ। ଦୁର୍ବଳତା ସେମାନଙ୍କର ମୋଟେ ଗୁଣ ନୁହେଁ। ପ୍ରତିଶୋଧ ଓ ପ୍ରତିହିଂସା ପ୍ରବୃତ୍ତି ତଥା ଯୌନେଚ୍ଛା ପୂର୍ତ୍ତିର ଅଭିଳାଷ ସେମାନଙ୍କ ଅବଚେତନ ମନରେ ଲୁକ୍କାୟିତ। ପ୍ରାତ୍ୟହିକ ଜୀବନରେ ଅଭାବ ଅନଟନ, ଶୋଷଣ ପେଷଣ, ଲାଞ୍ଛନ ଓ ନିର୍ଯ୍ୟାତନ ମାନବ ନୈରାଶ୍ୟ ପ୍ରେତର ବିକଟ ନର୍ତ୍ତନ ଦର୍ଶାଇଥାଏ। ରାଧାନାଥଙ୍କର ପୂର୍ବ ବର୍ଣ୍ଣିତ କାବ୍ୟଗୁଡ଼ିକରେ ଉପସ୍ଥାପିତ ଅପରାଧୀ ଓ ନିରପରାଧ

ଚରିତ୍ର ମାନଙ୍କ ମଧ୍ୟରେ ପାଠକ, ଶ୍ରୋତାଗଣ ଆପଣା ଆପଣାକୁ ଖୋଜି ପାରିଥାନ୍ତି। କେଦ୍ଦାର, ଗୌରୀ, ଚନ୍ଦ୍ରଭାଗା, ନନ୍ଦିକା, କୌଶଲ୍ୟା, ଉଷା, ଜୟନ୍ତ ଚରିତ୍ର ଅନୁଶୀଳନ କଲାବେଳେ ଲକ୍ଷ୍ୟ କରାଯାଏ ଖଳନାୟକ ହୁଏତ ଦଣ୍ଡ ପାଇଛନ୍ତି, କିନ୍ତୁ ନିରୀହା ଚନ୍ଦ୍ରଭାଗା, କୌଶଲ୍ୟାର ଅସହାୟତା ନନ୍ଦିକାର ପ୍ରଣୟଶୁଚିତା, ପ୍ରଣୟ ପାଇଁ କେଦାର ଗୌରୀଙ୍କ ଆତ୍ମତ୍ୟାଗ, ପୁଣି ରୁଦ୍ର-ସୁନ୍ଦର ଉଷାର ଜୟନ୍ତଙ୍କ ପ୍ରତି ଆକର୍ଷଣ ଓ ପ୍ରତିଦ୍ୱନ୍ଦିତାରେ ଗତିବେଗ ଶିଥିଳତା ପାଠକକୁ ମୁଗ୍ଧଚକିତ କରାଇଥାନ୍ତି। ରାଧାନାଥଙ୍କ ଲେଖନୀ ସେମାନଙ୍କୁ କାବ୍ୟିକ-ନ୍ୟାୟ ଦେଇ ପାରି ନାହିଁ। ସେମାନଙ୍କ ଜୀବନର ପରିଣତିକୁ ଲକ୍ଷ୍ୟ କଲାବେଳେ ଅନେକ ଅନ୍ୟାୟ, ଅସତ୍ୟ, ଅଧର୍ମର ଦୁଷ୍ପରିଣତିର ସାମ୍ୟ ପାଠକ ଓ ଶ୍ରୋତା ନିଜନିଜର ବ୍ୟକ୍ତିଗତ ଅନୁଭୂତିରେ ଆଣିଥାନ୍ତି। ଆମ ସମାଜର ବହୁ ଲୋକଙ୍କ ପରି ରାଧାନାଥଙ୍କ ନାୟକ ନାୟିକା ସାମାଜିକ, ବିବେକାନୁମୋଦିତ କିମ୍ବା ଅଦାଲତି ନ୍ୟାୟ ପାଇ ପାରି ନାହାନ୍ତି। ସେମାନେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କଠୋର ଜୀବନ ଯୁଦ୍ଧର ସମ୍ମୁଖୀନ ହୋଇ ପରାଜିତ ହୋଇଛନ୍ତି।

"ସୁଖେ ପଡ଼େ ପୁଣି ଏଭଳି ବିପାକ ଏଡ଼େ ବେଗରେ
କେ କହିବ କାହିଁ ଏ ବଜ୍ର ପଡ଼ିଲା ବିନା ମେଘରେ।" (ଉଷା)

ମଣିଷ ଜୀବନରେ ସର୍ବଦା ଏହିପରି ବଜ୍ର ପଡ଼ିଥାଏ। ଦୁଃଖାନ୍ତ କାବ୍ୟ ପଠନରେ ବା ଶ୍ରବଣରେ ପାଠକ ଓ ଶ୍ରୋତାଙ୍କ ହୃଦୟରେ କାବ୍ୟ ବର୍ଣ୍ଣିତ ଆଲୋଚ୍ୟ ଚରିତ୍ରମାନଙ୍କ ପ୍ରତି ସମବେଦନା ସୃଷ୍ଟି ହୁଏ। ପାଠକମାନଙ୍କ ଅବଚେତନ ମନରୁ ଅପରାଧ ପ୍ରବଣତା, ପ୍ରତିଶୋଧ ଓ ପ୍ରତିହିଂସା ପରାୟଣତା ତଥା ଶୋଣିତ ତୃଷା ରେଚିତ ହୋଇଯାଏ। ଏହା ରାଧାନାଥଙ୍କ ଦୁଃଖାନ୍ତ କାବ୍ୟଗୁଡ଼ିକର ଉତ୍କର୍ଷ ଓ ବୈଶିଷ୍ଟ୍ୟ। ସମବେଦନଶୀଳ ପାଠକ ଚରିତ୍ରମାନଙ୍କର ଦୁଃଖ ଦୁର୍ଦ୍ଦଶା ପଢ଼ି ଅନୁଭବରେ ଆଣିଲାବେଳେ, ବ୍ୟକ୍ତିଗତ ଜୀବନର ଯନ୍ତ୍ରଣା ଗୁଡ଼ାକ ଲାଘବ ହୋଇଯାନ୍ତି, ଦୁଃଖ ଦୂରୀଭୂତ ହୁଏ; ସେମାନେ ପରିଣତିରେ ଆନନ୍ଦ ଲାଭ କରନ୍ତି। ଏହାହିଁ ବ୍ରହ୍ମାନନ୍ଦ ସହୋଦର।

କରୁଣା ଓ ସମ୍ବେଦନଶୀଳତା, ପ୍ରାଣର ବ୍ୟାପ୍ତି ଓ ବିଶାଳତା ମଣିଷକୁ ସୌନ୍ଦର୍ଯ୍ୟ ପ୍ରତି ଅଧିକ ସମବେଦନଶୀଳ କରାଇଥାଏ। ସେ ହୋଇଯାଏ ସହୃଦୟ ଓ ରସିକ। ନନ୍ଦନତତ୍ତ୍ୱ କଳା, ଦର୍ଶନ, ସଂଗୀତ, ମନସ୍ତତ୍ତ୍ୱ ଓ ଇତିହାସ ସହିତ ମାନବର କଳ୍ପନା, ସ୍ୱପ୍ନ, ରୁଚି ଓ ଅଭିଜ୍ଞତା ଇତ୍ୟାଦିକୁ ଆପଣାର ପରିସରଭୁକ୍ତ କରାଇଥାଏ। କବି ମଣିଷର ସହଜାତ ସ୍ନେହ, ପ୍ରେମ, ଆନନ୍ଦ, ବିଷାଦ, ଭୟ, ବିସ୍ମୟ ଓ ଜିଜ୍ଞାସାବୋଧକୁ ଘେନି ଗତିକରେ। (ଡେକାର୍ଟେ) ସୌନ୍ଦର୍ଯ୍ୟ ଉପଲବ୍ଧିର ମୌଳିକ ଲକ୍ଷ୍ୟ ହୋଇଯାଏ ସତ୍ୟାନୁସନ୍ଧାନ।

**ମଣିଷର ଦୁର୍ବଳତମ ମୁହୂର୍ତ୍ତରେ ଦୁଃଖାନ୍ତ କାବ୍ୟ ତାହାଙ୍କୁ ପୂର୍ଣ୍ଣ ତୃପ୍ତି ପ୍ରଦାନ କରିଥାଏ। କରୁଣତମ ଭାବ ସକଳ କେବଳ ମଧୁରତର ସଂଗୀତରେ ପ୍ରକାଶ ଲାଭ ପାଇଥାନ୍ତି। ସଂଗୀତର କରୁଣ ମୂର୍ଚ୍ଛନା ହୃଦୟକୁ ଗଭୀର ଭାବରେ ସ୍ପର୍ଶ କରି ଆଲୋଡ଼ନ**

ସୃଷ୍ଟି କରିଥାଏ । କରୁଣ ହେଉଛି ଏକମାତ୍ର ରସ ଯାହା ଯେ କୌଣସି ପାଠକ ବା ଦର୍ଶକ ହୃଦୟକୁ ସର୍ବାଧିକ ସ୍ପର୍ଶ କରିଥାଏ ।*

ସୌନ୍ଦର୍ଯ୍ୟ ନନ୍ଦନତତ୍ତ୍ୱକୁ ଧରାବତରଣ କରାଇବାର ପ୍ରକୃଷ୍ଟ ମାଧ୍ୟମ । ସୌନ୍ଦର୍ଯ୍ୟ କେବେହେଲେ ଜାଗତିକ ବସ୍ତୁ ହୋଇ ନପାରେ । ଏହା ମାନବର ମନ ଓ ପ୍ରଜ୍ଞାରେ ନିହିତ ଥାଏ । କବି-ମଣିଷଟିର ଆଧ୍ୟାତ୍ମିକ ଶକ୍ତିଦ୍ୱାରା ଏହା ପ୍ରକାଶିତ ହୋଇଥାଏ । ଏହା କବିର ଜନ୍ମ ଜନ୍ମାନ୍ତରର ସତ୍‌କୃତ । ମନୁଷ୍ୟମନର ଯୁଗଯୁଗର ଅବଦମିତ ବ୍ୟକ୍ତିତ୍ୱର ଚୈତନିକ ପ୍ରକାଶ ହେଉଛି ସରସ ସୁନ୍ଦର ସର୍ଜନଶୀଳ କଳା । ମନୋବୈଜ୍ଞାନିକ ସିଗ୍‌ମଣ୍ଡ ଫ୍ରଏଡ଼ ମାନବ ମନର ଚେତନ, ଅଚେତନ ଓ ଅବଚେତନ ଅବସ୍ଥା ଜୀବନର ବହୁ ବୈଶିଷ୍ଟ୍ୟ ପ୍ରତିପାଦନ କରିଥାନ୍ତି । ମାନବର ଅପୂର୍ଣ୍ଣ ଓ ଅବଦମିତ କାମନା ଅଧିକାଂଶ ସମୟରେ ଦିବାସ୍ୱପ୍ନ, ସ୍ୱପ୍ନ ଓ କଳାତ୍ମକ ସୃଷ୍ଟି ମାଧ୍ୟମରେ ପରିପ୍ରକାଶ ଲାଭ କରିଥାନ୍ତି । ଏହି କଳାକୃତିଗୁଡ଼ିକ କେବଳ ଯେ ଅବଦମିତ ବିଦ୍ରୋହୀ ଅଚେତନାମୟ ଯୌନେଚ୍ଛାର ଅଭିବ୍ୟକ୍ତି, ଏହା ନୁହେଁ । ବରଂ କହିଲେ ଯଥାର୍ଥ ହେବ ଯେ ଏହା ଏକ ସ୍ୱାର୍ଥ ବିରହିତ ଆନନ୍ଦମୟ ଭୂମା ବ୍ୟକ୍ତିତ୍ୱର ସାନ୍ନିଧ ପାଇଁ ଗଭୀର ସଦିଚ୍ଛାର ପରିପ୍ରକାଶ । [ଇମାନୁଏଲ୍‌ କାଣ୍ଟ] କବିବର ରାଧାନାଥ କାବ୍ୟଗୁଡ଼ିକର ବିଷୟବସ୍ତୁ ଓ ଚରିତ୍ରସମୂହ ଉପରୋକ୍ତ ସଂଜ୍ଞାୟ ମାନଦଣ୍ଡରେ ଆଲୋଚିତ ।

ବାଲ୍ୟକାଳରେ ମାତୃବିୟୋଗ, ପିତାଙ୍କର ଶାସନ-ଶୃଙ୍ଖଳ ଓ ଶ୍ୱାସ ରୋଗର ପୀଡ଼ା ରାଧାନାଥଙ୍କ ଜୀବନରେ ନୈରାଶ୍ୟ ଓ ବ୍ୟଥା ସୃଷ୍ଟି କରିଥିଲା । ଜୀବନରେ ପତ୍ନୀଟିଏ ହୁଏତ ସେ ପାଇଥିଲେ, ଅଥଚ ଅବଚେତନ ମନରେ ପ୍ରେମିକାଟିଏ ପାଇବାର ସ୍ୱପ୍ନକୁ ସେ ଏଡ଼ାଇ ଦେଇ ପାରି ନଥିଲେ । ଗୋଟିଏ ପୁତ୍ରର ମୃତ୍ୟୁ ଓ ପରବର୍ତ୍ତୀକାଳରେ ଏକମାତ୍ର ପୁତ୍ର ଶଶୀଭୂଷଣ ମୂର୍ଚ୍ଛା ରୋଗରେ ପୀଡ଼ିତ ହେବାରୁ, ତାହାଙ୍କ ଜୀବନ ଦୁଃଖାଭିଭୂତ ହୋଇଥିଲା । ଓଡ଼ିଶାର ସ୍କୁଲସମୂହର ସହ-ପରିଦର୍ଶକ ଓ ପରେ ପରିଦର୍ଶକ ପଦବୀରେ ଅବସ୍ଥାପିତ ହୋଇଥିଲେ ରାଧାନାଥ । ବୀରବର ଉପେନ୍ଦ୍ର ଓ ରାଧାନାଥଙ୍କୁ ଭିତ୍ତିକରି, 'ବିଜୁଳି' ଓ 'ଇନ୍ଦ୍ରଧନୁ' ମାଧ୍ୟମରେ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ଏକ ମସିଯୁଦ୍ଧ ଆରମ୍ଭ ହୋଇଥିଲା । ଏହି କାଳରେ ଉପେନ୍ଦ୍ର ଜୀବିତ ନଥିଲେ, ଅଥଚ ରାଧାନାଥ ବଡ଼ବେଶି ଆଘାତ ପାଇଥିଲେ ଏହି ମସିଯୁଦ୍ଧରୁ । ଗାର୍ହସ୍ଥ୍ୟ ଜୀବନର ଦୁର୍ଦ୍ଦଶାଗୁଡ଼ାକ ତାହାଙ୍କୁ ଅସୁମାରି ବ୍ୟଥା ଓ ବେଦନା ଦେଇଥିଲା । ଏଣୁ ସେ କହୁଥିଲେ ଜନନେତ୍ରରେ ସୁଖ ବୋଲି ଦିଶୁଥିବା ପଦାର୍ଥଗୁଡ଼ାକ ହାତକୁ ଆସି ଆକସ୍ମିକ ଭାବରେ ହାତରୁ ଖସିଯାନ୍ତି । ଜୀବନରେ ଶାନ୍ତି ତାଙ୍କର ଏକମାତ୍ର କାମନା ଥିଲା ।** ଜୀବନରୁ

---

* "ଏକୋ ରସଃ କରୁଣ ଏବ ନିମିତ୍ତ ଭେଦାଦ୍‌ ଭିନ୍ନଃ ପୃଥକ୍‌ ପୃଥଗିବାଶ୍ରୟତେ ବିବର୍ତ୍ତାନ୍‌ ।
ଆବର୍ତ୍ତବୁଦ୍‌ବୁଦ୍‌ ତରଙ୍ଗ ମୟାନ୍ବିକାର ନମ୍ଭୋ ଯଥା ସଲିଳ-ମେବହି ତତ୍ସମସ୍ତନ୍‌ ।"
(ଭବଭୂତି, ଉତ୍ତର ରାମଚରିତଂ/୪୭)

ସେ ପଳାୟନ କରିବାକୁ ଚାହିଁଥିଲେ। ଜଟିଆ ଚରଣରେ କୁଟୀର ବିରଚି, ଶେଷ ଜୀବନକୁ ନିକାଞ୍ଚନରେ ବିତାଇବାକୁ ସେ ଇଚ୍ଛା କରିଥିଲେ। 'ଲକ୍ଷ୍ୟ ଥିଲା ମୋର ତୋର ତୀର ଗୁହା'- କହିଲାବେଳେ କଳରୋଳ ପୂର୍ଣ୍ଣ, କୋଳାହଳମୟ ସାଂସାରିକ ଜୀବନକୁ ସେ କିପରି ନାପସନ୍ଦ କରୁଥିଲେ, ତାହା ଜଣାପଡ଼ିଥାଏ।**

ଜୀବନକୁ ବଡ଼ ବେଶ ଭଲ ପାଉଥିବା ମଣିଷଟା କେବେ କଣ ଦୁଃଖବାଦୀ ହୋଇପାରେ? ଜୀବନକୁ ମହୋତ୍ସବ ମନେକରି, ହସି ଖେଳି ସମୟ ବିତାଉଥିବା ଲୋକଙ୍କୁ ସେ ଆକ୍ଷେପ କରିଛନ୍ତି କାହିଁକି? ଭାଗ୍ୟବାଦ ଉପରେ ଏତେ ବଡ଼ ଆସ୍ଥା ଆସିଲା କିପରି? ତାହାଙ୍କ ଜୀବନ କଣ ସତରେ ଆନ ଉପାଦାନରେ ଗଢ଼ା? ଚିରଦିନ ଦୁଃଖ ପ୍ରହାରରେ ଜର୍ଜରିତ ହୋଇଥିବାରୁ ସେ ଦୁଃଖ ଗୁରୁଙ୍କର ପଟ୍ଟଶିଷ୍ୟ। ଦଦରା ବୋଇତରେ ଦିଗ୍‌ଭ୍ରାନ୍ତ ସଂଯାତ୍ରିକଗଣ ବସିଛନ୍ତି। କବି ମଧ୍ୟ ନିଜେ ଏଥିରେ ଉପସ୍ଥିତ। ଅନ୍ୟ ଯାତ୍ରୀ ଓ ତାହାଙ୍କ ମଧ୍ୟରେ ପାର୍ଥକ୍ୟ ରହିଛି ନିଶ୍ଚୟ। କାରଣ ଗୁଣ-ବୃକ୍ଷ-ଚୂଳେ ଭାଗ୍ୟକ୍ରମେ ସେ ବସିଛନ୍ତି। ଅଧିକ ହଲୁଥିବାରୁ ସାଂସାରିକ-ତୋଫାନର ଶକ୍ତି ସେ ଅଧିକ କଳନା କରିପାରିଛନ୍ତି। ଏହା ଜ୍ଞାନୀର ଗରିମା ନୁହେଁ। ସମଦୁଃଖୀଠାରେ ଦୁଃଖ-ଆର୍ତ୍ତନାଦ ମାତ୍ର। ଏଣୁ ରାଧାନାଥଙ୍କୁ ପଳାୟନବାଦୀ କହିବା, ଯେତେଦୂର ମନେହୁଏ ଯଥାର୍ଥ ନୁହେଁ। ଏହା ସଂସାରରୁ ପଳାୟନ ନୁହେଁ, ବରଂ ଏହା ରାଧାନାଥଙ୍କର ଜୀବନପ୍ରତି ପଳାୟନ। କେତେକେ କହନ୍ତି ଯେ ପାଶ୍ଚାତ୍ୟ ସାହିତ୍ୟର ରୋମାଣ୍ଟିକ୍ ଯୁଗର କାବ୍ୟ-ସଂପଦ ଓ କବିମାନଙ୍କ ବିଷାଦବାଦ ଦ୍ୱାରା ସେ ପ୍ରଭାବିତ ହୋଇଛନ୍ତି। ସ୍ୱୀକାର୍ଯ୍ୟ ଯେ ରାଧାନାଥଙ୍କ ବିଷାଦବାଦ ଆଦୌ ଅକାରଣ ନୁହେଁ।

ପୂର୍ବରୁ ସୂଚିତ ହୋଇଛି ଯେ ସୌନ୍ଦର୍ଯ୍ୟରୁ ଆନନ୍ଦର ସୃଷ୍ଟି। କିନ୍ତୁ ଯେଉଁ ଆନନ୍ଦକୁ ବେଦନା ସ୍ପର୍ଶ କରିନାହିଁ, ଆନନ୍ଦର ଅନ୍ତରାଳରେ ବିଷାଦ କରାଳ ମୁଖବ୍ୟାଦାନ କରିନାହିଁ, ଆନନ୍ଦର ନେପଥ୍ୟରେ କରୁଣ ରାଗର ଝଙ୍କାର ନାହିଁ, ତାହା ହୋଇଯାଏ ସୌଖୀନ ବିଳାସ କିମ୍ବା ଶୃଙ୍ଗାରିକତା। ଆନନ୍ଦର ବର୍ଣ୍ଣୋଜ୍ଜ୍ୱଳ ଆଲେଖ୍ୟ ଫିକା ପଡ଼ିଯାଏ। ପାର୍ଥିବ ପ୍ରଣୟର ମୂଲ୍ୟ କେବଳ ଦେବତାମାନେ ହିଁ ବୁଝନ୍ତି। କେଦାରଗୌରୀଙ୍କର ମୃତ୍ୟୁ ପରେ, ସେମାନଙ୍କ ଶବ ଉପରେ ସତେ ଅବା ବନଦେବତାଗଣ ବନଫୁଲ ଥାପି ଦେଇଯାଇଛନ୍ତି। ସ୍ୱପ୍ନାଦିଷ୍ଟ ରାଜା ପ୍ରଭାତରେ ଦେଖୁଛନ୍ତି—

> "ସଂଧ୍ୟା ରାଗବୋଳା ରଥାଙ୍ଗମିଥୁନ ମୃତ କି ନବ ବିଚ୍ଛେଦେ
> ଶ୍ରୀମୁଖ ଲାବଣ୍ୟ ଦିଶେ ସୁପ୍ରସନ୍ନ ମୃତ୍ୟୁ ଛୁଇଁ ନାହିଁ ଖେଦେ।" (କେଦାର ଗୌରୀ)

---

* ରାଧାନାଥଙ୍କ ପତ୍ର ତା୧୦.୩.୧୮୯୬- 'Peace at anyprice is, however my motto, xxxxx I am really tired of this world:

** ରାଧାନାଥଙ୍କ ପତ୍ର ତା୬.୫.୧୮୯୬- "I am therefore disposed to prefer solitude to company however pleasant."

ଅଥବା 'ଉଷା'ରେ

"ଶୋଇଛନ୍ତି ବେନି ବରକନ୍ୟାବେଶେ ଅବନୀପରେ
ପଡ଼ିଛି କି ଆହା କିଂଶୁକ ଯୋଡ଼ିଏ ବନ ଭିତରେ,
ଲାବଣ୍ୟ ଝଟକ ଛାଡ଼ିନାହିଁ ତନୁ ହେଲେ ହେଁ ଫିକା
ମୁକ୍ତା-ହୀନ ହୋଇ ଝଟକେ ନାହିଁ କି ମୁକ୍ତା-ଶୁକ୍ତିକା।"

ପାର୍ବତୀ ଗଙ୍ଗେଶ୍ୱରଙ୍କର ପତ୍ନୀ-ପ୍ରେୟସୀ। ପୁଣି ସେ ଏକଜାତ ଓ କୌଶଲ୍ୟାଙ୍କର ଜନନୀ। ଜୀବନରୁ ତାଙ୍କର ବାସନାର ଚାଞ୍ଚଲ୍ୟ ଦୂର ହୋଇଛି। ପ୍ରେତିନୀ ପ୍ରଦତ୍ତ କୌଶଲ୍ୟାର ମୃତ୍ୟୁ ସମ୍ବାଦର ବେଦନା ତାହାଙ୍କ ପାଇଁ ତପସ୍ୟାରେ ପରିଣତ ହୋଇଛି। କ୍ରୋଧ, ଗାମ୍ଭୀର୍ଯ୍ୟ ଓ ପ୍ରତିଶୋଧ ପ୍ରବଣତା ସହିତ ରୁଧିର ତୃଷ୍ଣା ଏକାକାର ହୋଇ ଯାଇଛି ପାର୍ବତୀଙ୍କ ହୃଦୟରେ। ପତି ହତ୍ୟା ଶ୍ରେୟ, ବରଂ ବୈଧବ୍ୟ ବରଣୀୟ-ଏହାହିଁ ତାଙ୍କର ଧ୍ରୁବ ଶପଥ। ଏଠାରେ ଅଶାନ୍ତି ଓ ଅଶିବର ଦୂରୀକରଣ ନିମିତ୍ତ ପତ୍ନୀର ରୌଦ୍ରରୂପ ଜନନୀର ସୌନ୍ଦର୍ଯ୍ୟର ପରିଣତ ହୋଇଛି।

ସୌନ୍ଦର୍ଯ୍ୟ ସଂଗେ ପ୍ରଖର ଶୌର୍ଯ୍ୟ ମିଳିତ ହୋଇ ଉଷାଙ୍କୁ ରୁଦ୍ର-ସୁନ୍ଦର କରିଥିଲେ। ଏହି ସୁନ୍ଦରୀ ଶିରଭୂଷା ଉଷା ବିଷମ ପ୍ରତିଜ୍ଞା କରିଥିଲେ– ଗତିବେଗେ ତାହାଙ୍କୁ ଯେଉଁ ଯୁବାମଣି ଜିଣିବ, ସେ ତାହାର ପତି ହେବେ। କେତେ ଯୁବାବୀର ଏହି ପ୍ରତିଦ୍ୱନ୍ଦିତାରେ ପରାଜିତ ହୋଇ ପ୍ରାଣ ଦେଲେ। ପରିଣତିରେ ଉଷା ନିରାଶ ହୋଇ ମନରୁ ପ୍ରଣୟ ପ୍ରସଙ୍ଗ ଦୂର କରିଥିଲେ। ଜୀବନର ରକ୍ଷାକର୍ତ୍ତା ଜୟନ୍ତକୁ ପ୍ରତିଦ୍ୱନ୍ଦିତାରେ ଅଂଶ ଗ୍ରହଣ କରୁଥିବାର ଲକ୍ଷ୍ୟ କରି ଉଷାର –

"ତନୁ ପୁଲକିଲା ଅଭିନବ ପ୍ରେମ-ମୋହନ ବଳେ
ସୁରଞ୍ଜିତ ହେଲା ଅମଳ-କପୋଳ ଲାଜ-ପାଟଳେ।"

ବିଶ୍ୱମୋହିନୀ ସୌନ୍ଦର୍ଯ୍ୟଲକ୍ଷ୍ମୀର ଅନ୍ତରଶାୟିନୀ ପ୍ରଣୟବୀଣାରେ ଜୟନ୍ତ ରୂପର ସ୍ପର୍ଶ ଲାଗିଗଲା। ପ୍ରଣୟର ବନ୍ଦନାଗାନ ତାଙ୍କ ଶରୀରରେ ଉକୁଟି ଉଠିଲା।

ରାଧାନାଥଙ୍କ ଜୀବନ ପାତ୍ରରେ ଦୁଃଖ ସୁଖ, ପ୍ରୀତି ବିଦ୍ୱେଷ, ଭୟ କ୍ରୋଧ ଓ ବୀଭତ୍ସତା ଭରି ରହିଛି। ଜୀବନର ହାହାକାର, ବିରହର ଅନ୍ତହୀନ ବେଦନା ଉପସ୍ଥାପିତ ହୋଇଛି ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, କୌଶଲ୍ୟା ଓ ଗୌରୀଙ୍କ ଜୀବନରେ। ସେମାନେ ଅସୀମପଥର ଯାତ୍ରୀ ହୋଇଛନ୍ତି ମୃତ୍ୟୁର ହାତ ଧରି। ଅଥଚ କେଦାର ଗୌରୀଙ୍କର ମୃତ୍ୟୁର ଗଭୀର ବେଦନା ପାଠକଙ୍କ ହୃଦୟକୁ ସ୍ତବ୍ଧ କରିଦିଏ ନାହିଁ। ଉଷା ଜୟନ୍ତଙ୍କ ମୃତ୍ୟୁରେ ସେମାନଙ୍କ ଆତ୍ମା ପ୍ରଣୟର ଅରୁଣାଲୋକୁ ବହନ କରି ଘେନି ଯାଇଛି ଅମର ଲୋକକୁ। ନନ୍ଦିକାର ଆତ୍ମହତ୍ୟା ଦୁଃଖର ଆତ୍ୟନ୍ତିକ ହାହାକାରକୁ ବହନ କରିଥିଲେ ସୁଦ୍ଧା ପ୍ରଣୟ-ଜୀବନର ଗତିଶୀଳତାର ନୃତ୍ୟ ଚପଳ ଛନ୍ଦକୁ ସ୍ପନ୍ଦିତ କରି ଆସିଛି ମହାନଦୀ ପଠା ମଧ୍ୟସ୍ଥ ସମାଧି ମଧ୍ୟରେ। କାଞ୍ଚିବିଜୟୀ ପୁରୁଷୋତ୍ତମ ରାଜଜେମା ପଦ୍ମାବତୀଙ୍କ ଗହଣରେ ଫେରୁଛନ୍ତି ଓଡ଼ିଶାକୁ। ଚିଲିକାରେ ତରୀରେ ଆସୀନା

ପଦ୍ମାବତୀ। ପିତାଙ୍କ ପରାଜୟରେ ତାହାଙ୍କ ମୁଖମଣ୍ଡଳ ମ୍ଳାନ ଓ ବିଷାଦିତ ହୋଇଯାଇଛି। ଅଥଚ ପ୍ରଣୟୀଙ୍କ ବିଜୟରେ ଏବଂ ମନର ମଣିଷକୁ ପାଖରେ ଦେଖିଲାବେଳେ, ତାହାଙ୍କ ଚକ୍ଷୁରେ ଲଜ୍ଜାରେ ପାଟଳିମା ପ୍ରକାଶ ପାଇଛି –

"ମ୍ଳାନ ମୁଖଛବି ବିଷାଦ ରେଖାରେ
ଭ୍ରୂଲତା ଅଙ୍କା କି ଲଜ୍ଜା ତୂଳିକାରେ।" (ଚିଲିକା)

ପଦ୍ମାବତୀଙ୍କର ବିଷାଦ ଓ ଲଜ୍ଜା ତାହାଙ୍କୁ ଅଧିକ ରୂପମତୀ କରିଛି। ଏ ସୌନ୍ଦର୍ଯ୍ୟ କବି ରାଧାନାଥଙ୍କର ନାନ୍ଦନିକ ଦୃଷ୍ଟିକୋଣରୁ ସୃଷ୍ଟ। ସୌନ୍ଦର୍ଯ୍ୟ ଜୀବନର ଅନ୍ତିମ ଓ ଚରମ ଲକ୍ଷ୍ୟ। ଏହି କଳାଗତ ସୌନ୍ଦର୍ଯ୍ୟର ଲକ୍ଷ୍ୟଥିଲା ଉଦ୍ଦେଶ୍ୟ ବିହୀନ ଆନନ୍ଦ ପ୍ରଦାନ।

ପ୍ରଥମ ଦର୍ଶନରେ ଉର୍ବଶୀ ପୁରୁରବାଙ୍କ ହୃଦୟରେ ପ୍ରଣୟଜାତ ହୋଇଛି। ପର ମୁହୂର୍ତ୍ତରେ ସଖୀଙ୍କ ସହ ଉର୍ବଶୀ ବିଦାୟ ଘେନିଛନ୍ତି ନାୟକଙ୍କ ନିକଟରୁ। ଦୂରତ୍ୱର ବ୍ୟବଧାନ ରହିଲାନାହିଁ, ଦେବତା ମଣିଷର ପାର୍ଥକ୍ୟ ରହିଲା ନାହିଁ। ମନପ୍ରାଣରେ ନାୟିକା ନାୟକ ହୋଇଛନ୍ତି ବଂଧନଯୁକ୍ତ। ଉର୍ବଶୀ ଶେଷଥରପାଇଁ ବିଦାୟ ନେଲାବେଳେ –

"ମଣିଲି ମୋ ଭ୍ରମ ଏବେ
ଦୈବସଂଗେ ନାଥ ଲୁଚୁକାଳି ଖେଳ
କିଏ ଜାଣିଥିଲା କେବେ।"
(ଉର୍ବଶୀ, ରାଧାନାଥ ଗ୍ରନ୍ଥାବଳୀ, ଖ୍ରୀ ୧୯୧୩, ପୃ ୪୫୭)

ବିଚ୍ଛେଦରେ ପ୍ରଣୟର ମହତ୍ତ୍ୱ ବିକଶିତ ହୁଏ। ବିଷାଦ ରୂପକ କଷଟି ପଥରରେ ସୌନ୍ଦର୍ଯ୍ୟ ପରୀକ୍ଷିତ ହୋଇ ଆନନ୍ଦର ସ୍ୱର୍ଣ୍ଣରେଖା ଉକୁଟାଇଥାଏ। ରାଧାନାଥଙ୍କ ବିଷାଦବାଦୀ ଦୃଷ୍ଟିକୋଣର ଅନ୍ତରାଳରେ ରହିଛି ସୁଖର ଅନ୍ୱେଷା, ଜୀବନାନନ୍ଦର ଜିଜ୍ଞାସା, ଆଧ୍ୟାତ୍ମିକ ଆନନ୍ଦ ପ୍ରାପ୍ତିର ଲକ୍ଷ୍ୟ। କଳାଗତ ଏକମାତ୍ର ଉଦ୍ଦେଶ୍ୟ ଆନନ୍ଦ ବିଧାନ।

ରାଧାନାଥଙ୍କ କବି-ମନୀଷାର ସର୍ବ ପ୍ରଥମ ଆବେଗମୟ ଅନୁଭୂତି ହେଉଛି ସୌନ୍ଦର୍ଯ୍ୟାନୁଭୂତି। ସେ ଏହି ଅନୁଭୂତି ଲାଭ କରିଛନ୍ତି ଅସୀମରୁ। ଅସୀମର ଦୁଇଟି ଦିଗ-ପ୍ରଜ୍ଞାର ଦୁରାଧିଗମ୍ୟତା ଓ ବୈଚିତ୍ର୍ୟ। ସୌନ୍ଦର୍ଯ୍ୟ ବସ୍ତୁର ଏକ ଗୁଣ ନୁହେଁ, ଏହା ଦ୍ରଷ୍ଟାର ଦୃଷ୍ଟିକୋଣ ମାତ୍ର। ଏହି ଦୃଷ୍ଟି–କୋଣ ବସ୍ତୁ ଉପରେ ସୌନ୍ଦର୍ଯ୍ୟର ଆରୋପଣ କରିଥାଏ। କୁହାଯାଇଛି 'ଶିଶୁପାଳବଧ'ରେ

"ଦୃଷ୍ଟୋପି ଶୈଳଃ ସ ମୁହୁର୍ମୁରାରେ ଅପୂର୍ବବତ୍ ବିସ୍ମୟ ମାତତାନ
କ୍ଷଣେ କ୍ଷଣେ ଯନ୍ନବତା ମୁପୈତି ତଦେବରୂପଂ ରମଣୀୟତାୟାଃ।"

ରାଧାନାଥଙ୍କ ନନ୍ଦନତତ୍ତ୍ୱରେ କାବ୍ୟ କଳାଗତ ପ୍ରାକୃତିକ ସୌନ୍ଦର୍ଯ୍ୟଠାରୁ ହୋଇଯାଇଛି ମହତ୍ତର। କଳା ଅନୁକୃତ ହୋଇ ମଧ୍ୟ ହୋଇଯାଏ ଅପୂର୍ବ, ଆହୃତ ହେଲେହେଁ ଅତୁଳନୀୟ, ସମୀକୃତ ହୋଇଥିଲେ ବି ଅନନ୍ୟ। କବି କୃତିରେ ଏହି କଳାଗତ

ସୌନ୍ଦର୍ଯ୍ୟ କେତେବେଳେ ଉଦାତ୍ତ, କେବେ ଅବା ବୃହତ୍ତ। ପାଠକ ପାଏ ଚମତ୍କାରିତାର ଆନନ୍ଦ। ପୁରାତନରେ ନୂତନତା, ଆହରଣରେ ମୌଳିକତା ପ୍ରତିଫଳିତ କରିବାର ପ୍ରତିଭାର ବିଧି-ପ୍ରତିପାଦିତ ଅଧିକାର ଅଟେ। 'କୀଚକବଧ' କାବ୍ୟର 'ମନ୍ତବ୍ୟ' ଶୀର୍ଷକରେ ରାଧାନାଥଙ୍କର ଏହି ଉକ୍ତି ତାହାଙ୍କ ପ୍ରତି ଏଠାରେ ସ୍ୱମତ ମଣ୍ଡନ ପାଇଁ ଆମେ ଉଦ୍ଧାର କଲୁ।

□ □ □

# ରାଧାନାଥଙ୍କ କାବ୍ୟରେ ପ୍ରେମବିରହର ସ୍ୱରୂପ

ଡଃ. ଆରତୀ ମହାନ୍ତ

ପ୍ରତୀଚୀରେ ରୀତି ସାହିତ୍ୟର ସୂର୍ଯ୍ୟାସ୍ତର ଅମା ଅନ୍ଧକାର ପରେ ପ୍ରାଚୀ ନଭରେ ନୂତନ ଉଷାର କନକ କିରଣରେ ଆଧୁନିକ ଓଡ଼ିଆ ସାହିତ୍ୟରେ ସୃଷ୍ଟି ହୋଇଛି ବର୍ଣ୍ଣବିଭା। ଇନ୍ଦ୍ରଧନୁର ସପ୍ତରଙ୍ଗରେ ବର୍ଣ୍ଣିଳ ହୋଇଛି ଆଧୁନିକ ଓଡ଼ିଆ ସାହିତ୍ୟ। କବି ରାଧାନାଥ ରାୟ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ପ୍ରବର୍ତ୍ତକ। ତାଙ୍କ ପ୍ରତିଭାର କାଉଁରୀ କାଠିର ସ୍ପର୍ଶରେ ଆଧୁନିକ ସାହିତ୍ୟ ସକଳ ଦିଗରେ ହୋଇଛି ବିକଶିତ, କୁସୁମିତ, ସୁବାସିତ। ଓଡ଼ିଆ ସାହିତ୍ୟର ଐତିହାସିକ ବିକାଶଧାରାରେ ସେ ଫଳପ୍ରସୂ ପରିବର୍ତ୍ତନ ଆଣି ପାରିଥିଲେ। ସେ ଆଧୁନିକତାର ବାର୍ତ୍ତାବାହକ। ଉଭୟ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଉପବନରେ ଭ୍ରମଣ କରି ସେ ବାଛି ବାଛି ଚୟନ କରିଛନ୍ତି ସୁବାସିତ କୁସୁମ। ଉଭୟ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ କୁସୁମର ସମ୍ମିଶ୍ରଣରେ ସେ ଗୁନ୍ଥିଛନ୍ତି କାବ୍ୟ ମାଳା । ସେହି ଅନିନ୍ଦ୍ୟ କାବ୍ୟ ମାଳାରେ ସେ ପୂଜିଛନ୍ତି ଉତ୍କଳ ଭାରତୀଙ୍କୁ। କବି ରାଧାନାଥ ରାୟ ଉତ୍କଳ ଭାରତୀଙ୍କର ଶ୍ରେଷ୍ଠ ବରପୁତ୍ର। ଓଡ଼ିଆ ସାହିତ୍ୟ, କଳା, ଶିଳ୍ପ, ସଂସ୍କୃତି ପ୍ରତି ତାଙ୍କର ଥିଲା ବିଶେଷ ଅନୁରାଗ। ସେ ଉତ୍କଳର ନୀରବ ଶିଳ୍ପୀ, ନୀରବ ସାଧକ। ସେ ନିଜ ହୃଦ କକ୍ଷର ସକଳ ବାତାୟନ ଖୋଲି ଦେଇ ସାହିତ୍ୟର ସମସ୍ତ ଦିଗରେ ଲେଖନୀ ଚାଳନା କରିଛନ୍ତି। ସେ ଥିଲେ ସତ୍ୟ-ଶିବ-ସୁନ୍ଦରର ଉପାସକ। ସେ ଥିଲେ ପ୍ରେମର ପୂଜାରୀ।

ବାଲେଶ୍ୱର ଜିଲ୍ଲାର କେଦାର-ପୁର ଗ୍ରାମରେ ୧୮୪୮ ମସିହା ସେପ୍ଟେମ୍ବର ମାସର ୨୮ ତାରିଖରେ ଏକ ବଙ୍ଗାଳୀ ପରିବାରରେ ରାଧାନାଥ ରାୟଙ୍କର ଜନ୍ମ ହୁଏ। ଏକ ଶୁଭ ମୁହୂର୍ତ୍ତରେ ଏକ ଶୁଭ ବେଳାରେ ଏକ ଶୁଭ ଲଗ୍ନରେ କବିଙ୍କର ଉତ୍କଳ ମାଟିରେ ହୁଏ ଆବିର୍ଭାବ। ଦିବ୍ୟ ଅନୁଭବୀ ଦିବ୍ୟ ଦ୍ରଷ୍ଟା କବି ରାଧାନାଥ ବଙ୍ଗାଳୀ ପରିବାରରେ ଜନ୍ମ ଗ୍ରହଣ କଲେ ମଧ୍ୟ ଉତ୍କଳ ମାତାର କ୍ରୋଡ଼ରେ ପଦପାତ କରିଛନ୍ତି। ଉତ୍କଳ ମାଟିରେ ଧୂଳି ଖେଳିଛନ୍ତି। ଉତ୍କଳର ପାଣି ପବନରେ ବଢ଼ିଛନ୍ତି ଏବଂ ନିଜକୁ ଗଢ଼ିଛନ୍ତି। କବି ଉତ୍କଳର 'ବଡ଼ ଠାକୁର ଦାରୁଦେବତା ଜଗନ୍ନାଥଙ୍କ ନିକଟରେ ନିଜକୁ ଉତ୍ସର୍ଗ କରିଛନ୍ତି। ଯାର ଶରୀରର ପ୍ରତି ଧମନୀରେ ଉତ୍କଳୀୟ ରକ୍ତ ପ୍ରବାହିତ, ଯିଏ ଉତ୍କଳୀୟ ଲେଖନୀ ଧରି ନିଜର ସୃଜନ ବୃନ୍ତରୁ ଝରାଇଛନ୍ତି

ଅଗଣିତ ସୁବାସିତ କୁସୁମ, ଯାର ଦିବ୍ୟ ସୁରଭିରେ ଆଜି ଓଡ଼ିଆ ସାହିତ୍ୟ କାନନ ପୁଷ୍ପିତ, କୁସୁମିତ ଓ ସୁବାସିତ, ସେ ଯୁଗଜ୍ୟୋତି, ଯୁଗ ପ୍ରବର୍ତ୍ତକ ରାଧାନାଥ ଭାବେ ଆଜି ଉତ୍କଳର ଘରେ ଘରେ ପୂଜିତ।

ରାଧାନାଥ ଉଭୟ ଗଦ୍ୟ ଏବଂ ପଦ୍ୟରେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇ ପାରିଛନ୍ତି। ଗଦ୍ୟ ସ୍ରଷ୍ଟା ଫକୀର ମୋହନଙ୍କ ସମୟରେ ସେ ଜଣେ ବିଶିଷ୍ଟ କାବ୍ୟଶିଳ୍ପୀ। ଓଡ଼ିଆ ଭାଷାର ଘଡ଼ିସନ୍ଧି ମୁହୂର୍ତ୍ତରେ ଜନ୍ମଗ୍ରହଣ କରି ଲେଖନୀ ଚାଳନା କରି ଏ ଜାତିର ଭାଷା ସାହିତ୍ୟକୁ ମୃତ୍ୟୁସଞ୍ଜିବନୀ ସିଂଚନ କରି ପୁନର୍ଜୀବିତ କରି ଗଢ଼ିତୋଳିଛନ୍ତି।

ଓଡ଼ିଆ କାବ୍ୟ ସାହିତ୍ୟକୁ କବି ରାଧାନାଥ ନିଜସ୍ୱ ସୃଷ୍ଟି ସମ୍ପଦର ଅତୁଳନୀୟ ଦାନରେ କରିଛନ୍ତି ପରିପୂର୍ଣ୍ଣ। ସମକାଳୀନ ଓଡ଼ିଶାର କାବ୍ୟ ଧାରାରେ ସେ ଝରାଇଛନ୍ତି ପ୍ରେମର ମନ୍ଦାକିନୀ। ତାଙ୍କ କାବ୍ୟ ସାହିତ୍ୟର କଥାବସ୍ତୁକୁ ବିଷୟ ବୈଚିତ୍ର୍ୟରେ ସମ୍ପଦଶାଳୀ କରି ଗଢ଼ି ତୋଳିଛନ୍ତି।

"ଜନମିଲେ ଦିନେ ଅଛି ଅବଶ୍ୟ ମରଣ
ଅମର ଯେ ଲୋକେ ତାକୁ କରନ୍ତି ସ୍ମରଣ।"

ମଣିଷ ମରଣଶୀଳ କିନ୍ତୁ ପ୍ରତିଭା ଅମର। ଏହିପରି ଏକ ଯୋଗଜନ୍ମା ଥିଲେ ରାଧାନାଥ ରାୟ। ଯାର ଜନ୍ମ ଅନ୍ୟର ହିତ ପାଇଁ, ଯାର ଜନ୍ମ ଅନ୍ୟର ମଙ୍ଗଳ ପାଇଁ, ଯାହାର ଜନ୍ମ ଅନ୍ୟର କଲ୍ୟାଣ ପାଇଁ ମୃତ୍ୟୁରେ ମଧ ସେ ଅମର ହୋଇ ରହେ। ଯୋଗଜନ୍ମା ରାଧାନାଥ ରାୟଙ୍କ ମୃଣ୍ମୟ ଶରୀର ବହୁ ଦିନରୁ ମାଟିରେ ମିଶି ଯାଇଛି। ତାଙ୍କ ଜୀବନର ମହାଦୀପ ୧୯୦୮ ମସିହାର ଲିଭି ଯାଇଛି। ତଥାପି ସେ ଆମ ନିକଟରେ ଚିରସ୍ମରଣୀୟ, ଚିରନମନୀୟ, ଚିରପୂଜ୍ୟନୀୟ ଚିର ବନ୍ଦନୀୟ ହୋଇ ରହିବେ। ସେ ଏ ଓଡ଼ିଆ ଜାତିର ସାହିତ୍ୟାକାଶରେ ଧ୍ରୁବତାରାରେ ରୂପାନ୍ତରିତ ହୋଇ ରହିଛନ୍ତି।

ରାଧାନାଥଙ୍କ କାବ୍ୟ ସାହିତ୍ୟ ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତାଧାରାର ଅମୃତମୟ ମଧୁଭଣ୍ଡାର । ଆଧୁନିକ ଶିକ୍ଷାର ପ୍ରସାର ଫଳରେ ଏ ଦେଶରେ ନୂତନ ରୁଚିବୋଧ ସୃଷ୍ଟି ହୋଇଥିଲା। ଫଳରେ ରାଧାନାଥ ଏକ ନୂତନ କାବ୍ୟ ଚେତନା ସୃଷ୍ଟିକଲେ। ପାଶ୍ଚାତ୍ୟ ସଭ୍ୟତା ଓ ସାହିତ୍ୟର ଗର୍ଭରୁ ଉତ୍ତମ ରୂପେ ବିଷୟ ବସ୍ତୁ ସଂଗ୍ରହ କରି କବି ଏ ଦେଶବାସୀଙ୍କ ପାଇଁ ଦେଶୀୟ ଭାଷାରେ ଯେଉଁ ନୂତନ କାବ୍ୟ କୋଣାର୍କ ସୃଷ୍ଟି କଲେ ତାହା ଯଥାର୍ଥରେ ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତାଧାରାର ଏକ ମଧୁମୟ ଫଳ। କବି ପ୍ରାଚୀନତାକୁ ପରିହାର କରିଛନ୍ତି। ଏଠାରେ ପଠାଣି ପଟ୍ଟନାୟକଙ୍କ ମତ ଉଲ୍ଲେଖ ଯୋଗ୍ୟ –
ପ୍ରାଚୀନ କାବ୍ୟର ଉଦ୍ଦେଶ୍ୟ ଥିଲା କେବଳ ରସର ପରିବେଷଣ। ରାଧାନାଥ ତାଙ୍କର ଏକାଧିକ କାବ୍ୟରେ ଏହି ରସାନୁଭୂତି ସୃଷ୍ଟି କରିବାପାଇଁ ସଚେତନ ଅଛନ୍ତି ମାତ୍ର ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା ଚରିତ୍ର ଚିତ୍ରଣ। ଉତ୍କଳ ସାହିତ୍ୟର ଆଳଙ୍କାରିକ

ନିଗଡ଼ ବନ୍ଧନରୁ ରାଧାନାଥ ମୁକ୍ତିଲାଭ କରିବା ସହଜ ନ ଥିଲା। ତଥାପି ସେ ଏହି ନବଯୁଗର କାବ୍ୟସୁନ୍ଦରୀଙ୍କୁ ଶବ୍ଦାଳଙ୍କାର ପରିହାର କରି ଯୁଗରୁଚିର ଅନୁରୋଧରେ ଅର୍ଥାଳଙ୍କାରରେ ମଣ୍ଡିତ କରିଛନ୍ତି।(୧)

କବି ରାଧାନାଥ ରାୟଙ୍କ ସୃଜନ ବୃନ୍ତରୁ ବିକଶିତ ହୋଇଛି 'କେଦାର ଗୌରୀ' (୧୮୮୬), 'ଚନ୍ଦ୍ରଭାଗା' (୧୮୮୬), 'ନନ୍ଦିକେଶରୀ' (୧୮୮୭), 'ଉଷା' (୧୮୮୮), 'ପାର୍ବତୀ' (୧୮୯୦), 'ଚିଲିକା' (୧୮୯୨), 'ମହାଯାତ୍ରା' (୧୮୯୩), 'ଦରବାର' (୧୮୯୬)। ଏଗୁଡ଼ିକ ରାଧାନାଥ ସାହିତ୍ୟ ସୃଷ୍ଟି ଉପବନର ଗୋଟିଏ ଗୋଟିଏ ଅମ୍ଳାନ ପୁଷ୍ପ। ଏହା ପୂର୍ବରୁ ରାଧାନାଥ ବିବେକୀ ପ୍ରବନ୍ଧ ୧୮୭୩ରେ ରଚନା କରିଥିଲେ। ନିଜେ ଓଡ଼ିଆ କାବ୍ୟ–ସ୍ରଷ୍ଟା ଭାବେ ପରିଚିତ ହେବା ପୂର୍ବରୁ ସେ ପ୍ରଥମେ ବଙ୍ଗଳା ଭାଷାରେ କବିତାବଳୀ ପ୍ରଥମ ଭାଗ ଓ କବିତାବଳୀ ଦ୍ୱିତୀୟଭାଗ ରଚନା କରି ନିଜର ପ୍ରତିଭାର ପରିଚୟ ଦେଇଥିଲେ।

ଆଧୁନିକ ଯୁଗର ପୁରୋଭାଗରେ କବି ରାଧାନାଥଙ୍କର ପ୍ରତ୍ୟେକଟି କାବ୍ୟ ଉଚ୍ଚକୋଟୀର ସଫଳ କାବ୍ୟକୃତି ରୂପେ ଦଣ୍ଡାୟମାନ। ରାଧାନାଥଙ୍କ କାବ୍ୟ ବୀଣାରୁ କରୁଣ ରସର ସ୍ୱର ଝଙ୍କୃତ ହୋଇଛି। ପ୍ରାଚ୍ୟ-ପାଶ୍ଚାତ୍ୟ ସଭ୍ୟତାର ମିଶ୍ରଣରୁ କବିଙ୍କର କବି ମାନସରୁ ଯେଉଁ ମହାର୍ଘ ଅର୍ଘ୍ୟ ବାଢ଼ିଥିଲେ ତାହା କାଳଜୟୀ। ଏ ଦେଶର ପୁରାଣ, ଇତିହାସ, କିମ୍ବଦନ୍ତୀର କଙ୍କାଳରେ ବିଦେଶୀ ସାହିତ୍ୟର ରକ୍ତ-ମାଂସ ଓ ପ୍ରାଣଶକ୍ତି ସଞ୍ଚାରିତ-କରି କବି ରାଧାନାଥ ନୂତନ କାବ୍ୟ କୀର୍ତ୍ତି ପ୍ରତିଷ୍ଠା କରିଛନ୍ତି। ଏହା ଯେପରି ଅଭିନବ ତଦ୍‌ରୂପ ରାଧାନାଥଙ୍କ କବି କଳ୍ପନାର ନୂତନ ମୌଳିକ ଚିନ୍ତା, ଚେତନା ଓ ଦୃଷ୍ଟିଭଙ୍ଗୀର ପରିଚାୟକ।

ରାଧାନାଥଙ୍କ କବି ପ୍ରତିଭା କାବ୍ୟରେ ନୂତନତାର ମଧୁ ସନ୍ଧାନ ଦେଇଛି। ଗତାନୁଗତିକ କାବ୍ୟ ପରମ୍ପରାର ତାହା ହୋଇଛି ବ୍ୟତିକ୍ରମ। କାବ୍ୟରାଣୀ ନୂତନ ବର୍ଣ୍ଣରେ ହୋଇଛି ବର୍ଣ୍ଣିଳ। କବିଙ୍କ ରଚିତ ସମସ୍ତ କାବ୍ୟ ହୋଇଛି ବିୟୋଗାନ୍ତକ, କିନ୍ତୁ ଏ ଦେଶର ପ୍ରାଚୀନ କାବ୍ୟ ପରମ୍ପରା ଥିଲା ମିଳନାନ୍ତକ। ଇଂରେଜୀ ସାହିତ୍ୟ ପ୍ରଭାବ କବିଙ୍କ ଉପରେ ଯଥେଷ୍ଟ ପଡ଼ିଥିଲା। କବିଙ୍କର କାବ୍ୟ ସୃଷ୍ଟି ମୂଳରେ ପାଶ୍ଚାତ୍ୟ ସାହିତ୍ୟର ପ୍ରେରଣା ଯଥେଷ୍ଟ ବେଶି ଥିଲା। ଅପାରମ୍ପରିକ ଚରିତ୍ର ସୃଷ୍ଟିକରି, କଥାବସ୍ତୁ ବର୍ଣ୍ଣନା କରିଥିବାର ପ୍ରତୀତି ଏଥିରୁ ଜାତ ହୁଏ। ରାଧାନାଥଙ୍କ କବି ପ୍ରତିଭା ଓ କଳାକୁଶଳତାମଣ୍ଡିତ ସୌନ୍ଦର୍ଯ୍ୟରେ କାବ୍ୟ ସମୂହର ବିଷୟ ବସ୍ତୁ ଅପାରମ୍ପରିକତା ଓ ଅପାରମ୍ପରିକ ଚରିତ୍ର ସୃଷ୍ଟି ସାହିତ୍ୟର ନୂତନତାର ଯାଦୁକରୀ ସ୍ପର୍ଶରେ ବର୍ଣ୍ଣିଳ ହୋଇ ଉଠିଛି। ରାଧାନାଥ ଥିଲେ କଳାର ପୂଜାରୀ, କଳାର ଉପାସକ। କାବ୍ୟରେ କଳାର ନୂତନ ଦିଗନ୍ତ ଓ ସୌନ୍ଦର୍ଯ୍ୟର ଅଭିନବତ୍ୱ ସୃଷ୍ଟି କରିବା ପାଇଁ ସେ ଲେଖନୀ

୧. ପଠାଣି ପଟ୍ଟନାୟକ - ଓଡ଼ିଆ ସାହିତ୍ୟର ଇତିହାସ ପୃଷ୍ଠା- ୪୧୯

ଧାରଣ କରିଥିଲେ। କଳା ଥିଲା କବିଙ୍କର କାବ୍ୟର କଳେବର, କଳା ଥିଲା କବିଙ୍କର ଜୀବନ, କଳା ଥିଲା କବିଙ୍କର ଆତ୍ମା ଆଉ କଳା ଥିଲା ତାଙ୍କର ସୃଜନ ବୃନ୍ତର ମୂଳ ଉତ୍ସ।

କବିଙ୍କର ସୃଷ୍ଟି-ସମ୍ପଦ ମଧ୍ୟରୁ କରୁଣ ରସର ରାଗିଣୀ ଝଙ୍କୃତ ହୋଇ ନୂତନ କାବ୍ୟ ପରମ୍ପରା ସୃଷ୍ଟି କରିଛି। ତାଙ୍କର ସମସ୍ତ କାବ୍ୟ କରୁଣ ରସପ୍ଲାବିତ କରିଛି। କେତେବେଳେ ଏହି କରୁଣରସ କୂଳପ୍ଲାବନୀ ଜାହ୍ନବୀ ତ କେତେବେଳେ ପୁଣି ଅନ୍ତଃସଲିଳା ଫଲ୍‌ଗୁ। କବି କରୁଣ ରସର ମଧୁର ମୂର୍ଚ୍ଛନାରେ ପାଠକ ପାଠିକାଙ୍କୁ ବିମୋହିତ କରିଛନ୍ତି।

କବି ରାଧାନାଥ ପ୍ରଣୟ ଓ ବିରହ ବର୍ଣ୍ଣନାରେ ସ୍ୱକୀୟ ସୃଷ୍ଟିରେ ଅଭୂତ-ପୂର୍ବ ଦକ୍ଷତା ଫୁଟାଇଛନ୍ତି। କବି ପ୍ରାଚୀନ ପରମ୍ପରାର ପ୍ରଣୟ ଚିତ୍ରକୁ ପରିହାର କରି ନୂତନ ପ୍ରଣୟର ଚିତ୍ର ଉପସ୍ଥାପନ କରିବାରେ କୁଶଳତାର ପରିଚୟ ପ୍ରଦାନ କରିଛନ୍ତି। ତାଙ୍କର ଅମର ଲେଖନୀ ଗତାନୁଗତିକ ପ୍ରଣୟ ଚିତ୍ରକୁ ପରିହାର କରି କାବ୍ୟ କ୍ଷେତ୍ରରେ ପ୍ରଣୟର ସ୍ୱତନ୍ତ୍ର ଲୋଭନୀୟ ବର୍ଣ୍ଣନାପୂର୍ଣ୍ଣ ସୌନ୍ଦର୍ଯ୍ୟରେ ବିଭବମଣ୍ଡିତ ହୋଇଅଛି। ପ୍ରଣୟ ଚିତ୍ରଣରେ କବି ନୂତନତା ପ୍ରଦର୍ଶନ କରିଛନ୍ତି। ପ୍ରଣୟର ମଧୁର ରୂପଶୋଭା ବର୍ଣ୍ଣନା କରି କବି ନୂତନ ଶିଳ୍ପ ସୌନ୍ଦର୍ଯ୍ୟ ସୃଷ୍ଟିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି।

ପ୍ରେମ ହେଉଛି ସ୍ୱର୍ଗୀୟ। ପ୍ରେମ ହେଉଛି ଶାଶ୍ୱତ। ପ୍ରେମ ହେଉଛି ସତ୍ୟ-ଶିବ-ସୁନ୍ଦରର ପରିପ୍ରକାଶ। ପ୍ରେମ ଜୀବନକୁ କରେ ମଧୁମୟ। ପ୍ରେମ ଜୀବନକୁ କରେ ଅମୃତମୟ। ପ୍ରେମ ବିନା ଜୀବନ ହୁଏ ମରୁଭୂମିର ମରୀଚିକା। ପ୍ରେମହିଁ ଜୀବନକୁ କରିଥାଏ ସାର୍ଥକ। ଦେହ ବିନା ପ୍ରେମର ଅସ୍ତିତ୍ୱ ନାହିଁ। ଦେହ ବିନା ପ୍ରଣୟର କଳ୍ପନା ଅସମ୍ଭବ। ନାରୀ ପୁରୁଷକୁ ଭଲ ପାଇବ ପ୍ରେମ କରିବ। ନିଜର ପ୍ରଣୟର ବନ୍ଧନରେ ପ୍ରେମକୁ କରେ ଚିରସ୍ଥାୟୀ। ପୁରୁଷର ବଳିଷ୍ଠ ବାହୁବନ୍ଧନରେ ସେ ନିଜକୁ ହଜାଇ ଦେବାକୁ ଚାହେଁ। ସେ ହେଉ ପଛେ ଜନପଦର ନିଃସ୍ୱ ଭିକାରୁଣୀ ବା ହେଉ ପଛେ ସେ ରାଜବାଳା। ନାରୀ ପୁରୁଷର ପ୍ରଣୟ ନିକଟରେ ନିଜର ଅସ୍ତିତ୍ୱ ହରାଇ ବସେ। ଠିକ୍ ଯେପରି ନଦୀ ସାଗର ସହିତ ମିଳିତ ହୋଇ ନିଜର ମଧୁର ଜଳକୁ ଲବଣାକ୍ତ କରେ। ସାଗର ନିକଟରେ ନିଜର ସତ୍ତା ହରାଇ ବସେ। ନାରୀ ତାର ପ୍ରଥମ ଏବଂ ପ୍ରଧାନ ଧର୍ମ ହେଉଛି ପୁରୁଷକୁ ପ୍ରେମ କରିବା। ତେଣୁ ସଚ୍ଚିଦାନନ୍ଦ ରାଉତରାୟ ତାଙ୍କ ଅସମାପିକା କବିତାରେ ଲେଖିଛନ୍ତି --

"କେବେ ଏକ ରାଜାର କୁମାରୀ
ଦୁନିଆକୁ କହିଥିଲା, "ମୁହିଁ ନାରୀ, ଆଗେ ମୁହିଁ ନାରୀ "
(ସଚ୍ଚିଦାନନ୍ଦ ରାଉତରାୟ- ଅସମାପିକା (ପାଣ୍ଡୁଲିପି, ପୃଷ୍ଠା - ୭୮)

ଆଧୁନିକ ଯୁଗଚେତନାର ସଫଳ ପ୍ରତିନିଧିତ୍ୱ କରିଛନ୍ତି ରାଧାନାଥ ରାୟ।

କେଦାର-ଗୌରୀ କବିଙ୍କର ଏକ ମନୋଜ୍ଞ ପ୍ରଣୟସ୍ନିଗ୍ଧ କାବ୍ୟ କିନ୍ତୁ ବିୟୋଗାନ୍ତକ। ଗୌରୀର ପ୍ରେମମୟ ଆହ୍ୱାନ ରାଧାନାଥଙ୍କୁ କରିଛି ଜର୍ଜରିତ। କେଦାରର ମୃତ୍ୟୁରେ କାବ୍ୟଟି ହୋଇ ଉଠିଛି କରୁଣାତ୍ମକ। ପ୍ରେମର ସାର୍ଥକତା ଘଟେ ବିରହରେ। ପ୍ରେମ ଚିରଂଜୀବୀ ହୁଏ ବିରହରେ।

ରାଧାନାଥଙ୍କ କାବ୍ୟ ଉପବନର ଆଦ୍ୟ ପ୍ରସ୍ଫୁଟିତ ସୁବାସିତ କୁସୁମ ''କେଦାର ଗୌରୀ।'' ଏହା ଏକ ସାର୍ଥକ ମହାନ ପ୍ରେମ କାବ୍ୟ। ଜୀବନଠାରୁ ଯେ ପ୍ରଣୟ ମହତ୍ତର ଏହି ସତ୍ୟ ଉପରେ ଆଧାରିତ ହୋଇଛି 'କେଦାର ଗୌରୀ' କାବ୍ୟ। ପ୍ରଣୟୀ ଓ ପ୍ରଣୟିନୀ ଉଭୟଙ୍କର ତ୍ୟାଗରେ ପ୍ରଣୟ ହୋଇଛି ସ୍ୱର୍ଗୀୟ।

ଗ୍ରୀସ୍ କବି ଓଭିଡ଼୍‌ଙ୍କ ମେଟାମରଫସିସ୍ କାବ୍ୟରୁ କେଦାର-ଗୌରୀ କାବ୍ୟ ଗୃହୀତ। କେଦାରଗୌରୀର ବିଷୟବସ୍ତୁ ଏକ ପ୍ରଣୟ ମୂଳକ ଦୁଃଖାନ୍ତ କାହାଣୀ। ହେମାଚଳ ଶିରରେ ଲଲାଟେନ୍ଦୁ କେଶରୀ ଏକ ସୁନ୍ଦର ମନୋହର ନଗର ସ୍ଥାପନ କଲେ। ତାହା ଭୁବନେଶ୍ୱର ନାମରେ ଖ୍ୟାତି ଲାଭ କଲା।

ଭୁବନେଶ୍ୱରରେ କେଦାର ଓ ଗୌରୀ ନାମରେ ଜଣେ ଯୁବକ ଓ ଜଣେ ଯୁବତୀ ବାସ କରୁଥିଲେ। ଦୁହିଁଙ୍କର ସୌନ୍ଦର୍ଯ୍ୟ ଅତୁଳନୀୟ ଥିଲା। ବାଲ୍ୟ କାଳରୁ ହିଁ ଉଭୟ ଉଭୟଙ୍କୁ ଭଲ ପାଉଥିଲେ। ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ଭଲ ପାଇବା ପ୍ରଣୟରେ ପରିଣତ ହେଲା। ଉଭୟଙ୍କ ପିତା ମାତା ଉଭୟଙ୍କ ମଧ୍ୟରେ ପ୍ରଣୟର ପ୍ରତିବନ୍ଧକ ସୃଷ୍ଟି କଲେ। ତାଙ୍କ ସାକ୍ଷାତ ନିଷିଦ୍ଧ ହେଲା। କେଦାର ଓ ଗୌରୀ ଦୁହେଁ ପରସ୍ପରକୁ ଭେଟିବା ପାଇଁ ବ୍ୟଗ୍ର ହୋଇ ଉଠୁଥାନ୍ତି। ଗୃହ ମଧ୍ୟରେ ଥିବା ଏକ କାନ୍ଥର ରନ୍ଧ୍ରରେ ରାତିରେ ସେମାନେ ପରସ୍ପର ନିଜର ଅକୁହା ବେଦନାକୁ ବ୍ୟକ୍ତ କଲେ। ଶେଷରେ ସେମାନେ ସ୍ଥିର କଲେ ଘରଛାଡ଼ି ପଳାଇ ଯାଇ ତାଙ୍କର ପ୍ରେମକୁ ସାର୍ଥକ କରିବେ।

ନିର୍ଦ୍ଦିଷ୍ଟ ଦିବସରେ ଗୌରୀ ଘରଛାଡ଼ି ଯାଇ ପୂର୍ବ ନିର୍ଦ୍ଧାରିତ ସ୍ଥାନରେ କେଦାରକୁ ଅପେକ୍ଷା କଲା। ଏହି ସମୟରେ ସେହି ପଥରେ ବ୍ୟାଘ୍ର ଜଳ ପାନ ନିମନ୍ତେ ଆସିଲା। ଭୟଭୀତ ହୋଇ ଗୌରୀ ଏକ ଗୁହାରେ ନିଜକୁ ଲୁକାୟିତ ରଖିଲା। ଭୟଭୀତ ହୋଇ ଯିବାବେଳେ ଗୌରୀର ଉତ୍ତରୀୟଟି ଭୂମିରେ ପଡ଼ିଗଲା। ବ୍ୟାଘ୍ର ତାକୁ ଚିକି ଚିକି କରି ଛିଡ଼ାଇ ଦେଲା। ତତ୍‌ପଶ୍ଚାତ୍ କେଦାର ଆସି ଦେଖେ ରକ୍ତାକ୍ତ ଓ ଛିନ୍ନ ଉତ୍ତରୀୟ। ଗୌରୀକୁ ବାଘ ମାରି ଦେଇଛି ଭାବି ନିଜର ପ୍ରଣୟର ସାର୍ଥକତା ନିମନ୍ତେ କୃପାଣରେ ନିଜକୁ ଭୁଷି ମୃତ୍ୟୁ ବରଣ କରି ଅମର ପ୍ରେମର ପରିଚୟ ଦେଇଛି। ଏହି ଘଟଣା ପରେ ଗୌରୀ ଗୁହାରୁ ବାହାରି ଆସି ନିଜ ପ୍ରଣୟୀ କେଦାରର ମୃତ୍ୟୁପିଣ୍ଡ ଦେଖି ଦୁଃଖରେ ବିଚଳିତ ହୋଇ ସେ ସେହି କୃପାଣରେ ନିଜର ପ୍ରାଣ ବିସର୍ଜନ କରିଛି। କେଦାର ଓ ଗୌରୀଙ୍କର ମାଟିର ମର ଶରୀର ମାଟିରେ ମିଶି ଯାଇଛି। କିନ୍ତୁ ତାଙ୍କର ପ୍ରେମ ହୋଇଛି ଅମର। ତାଙ୍କର ପ୍ରଣୟ

ହୋଇଛି କାଳଜୟୀ, ପ୍ରଣୟୀ କେଦାର ଏବଂ ପ୍ରଣୟିନୀ ଗୌରୀର ମୃତପିଣ୍ଡ ଏକ ସ୍ଥାନରେ ପଡ଼ି ରହିଛି। ସ୍ୱପ୍ନାଦେଶ ପାଇ ରାଜା ପ୍ରତ୍ୟୁଷରେ ସେ ସ୍ଥାନକୁ ଯାଇ ଉଭୟ ଶବର ସତ୍କାର କରି କେଦାର ଗୌରୀ ନାମରେ ପ୍ରତିମା ସ୍ଥାପନ କଲେ।

କେଦାର ଯେଉଁ ସମୟରେ ସଙ୍କେତ ସ୍ଥଳରେ ଆସି ପହଞ୍ଚିଛି ସେତେବେଳେ ଯାହା ଘଟଣା ଘଟିଛି କବିଙ୍କ ଭାଷାରେ –

''ସଙ୍କେତ ସ୍ଥଳରେ ରକ୍ତାକ୍ତ ଓଢ଼ଣା
ଭେଟି ପଡ଼ିଗଲା ଭ୍ରମେ
ତୁଟିଲା ଛଟକେ ହୃଦୟର ତନ୍ତ୍ର
ଶଲ୍ୟ ଫୁଟିଲା ମରମେ,
ଗୌରୀକି ସମ୍ବୋଧି କହେ ବୀର କାନ୍ଦି
ଆହାରେ ପରାଣେଶ୍ୱରୀ
ତୋ ନିଧନ ଭାଗୀ ମୁହିଁ ସିନା, ଯେଣୁ
ନ ଆସିଲି ବେଗ କରି।'' (କେଦାର ଗୌରୀ-ପୃ.୪୨)

କେଦାର ଗୌରୀ କାବ୍ୟରେ ପ୍ରେମର ବର୍ଣ୍ଣନା ଜୀବନ୍ତ ହୋଇ ଉଠିଛି। ନାୟକ ନାୟିକାଙ୍କ ପ୍ରେମ ଦେହଜ କାମନା, ବାସନାରେ ସୀମିତ ହୋଇ ରହିନାହିଁ। ଭଲ ପାଇବାର ଗଭୀରତାରେ ଏହା ହୋଇଛି ବ୍ୟାପକ ଓ ଆବେଗଧର୍ମୀ। ତ୍ୟାଗହିଁ ପ୍ରେମର ସ୍ୱର୍ଗୀୟ ପରିପ୍ରକାଶ। କବିଙ୍କ ଭାଷାରେ –

''ଆଦରେ କେଦାର ହୃଦେ ଜଡ଼ାଇଲା
ରୁଧିରେ ଆର୍ଦ୍ର ଓଢ଼ଣା
ଦର ଦର ବାରି ନୟନୁ ଝରିଲା
ସରିଲା ସର୍ବ ବାସନା।
କୃପାଣ ଉଦରେ ଭୁଷି ଦେଇପୁଣି
ନିଜ କରେ ନେଲା କାଢ଼ି
ରକ୍ତ ସ୍ରୋତେ ତିନି ଅବଶେ ଅବନି
ତଳେ ପଡ଼ିଲା କଚାଡ଼ି।'' (କେଦାର ଗୌରୀ ପୃ. ୪୩)

କେଦାରର ଗୌରୀ ପ୍ରତି ଭଲ ପାଇବାର ଗଭୀରତା ଉକ୍ତ ଉଦ୍ଧୃତିରୁ ସ୍ପଷ୍ଟ ରୂପେ ପ୍ରତିପାଦିତ ହୋଇଅଛି।

ରାଧାନାଥ ତାଙ୍କ କେଦାର ଗୌରୀ କାବ୍ୟରେ ପ୍ରଣୟ ଓ ବିରହର ଏକ ନୂତନ ପରମ୍ପରା ସୃଷ୍ଟି କରି ସଫଳତା ଲାଭ କରିଛନ୍ତି। ଏଠାରେ ଡ଼ଃ ନଟବର ସାମନ୍ତରାୟଙ୍କ ମତ ଉଲ୍ଲେଖଯୋଗ୍ୟ। କେଦାରେଶ୍ୱର ମନ୍ଦିର ଓ ଗୌରୀ କୁଣ୍ଡ ଖୁବ୍ ପୁରାତନ, ଏମାନଙ୍କୁ ପାଶ୍ଚାତ୍ୟ ଉପାଦାନରେ ଯେଉଁ ରୂପ ଦିଆଯାଇଛି, ତାହାହିଁ ହେଉଛି ରଧାନାଥଙ୍କ

କେଦାରଗୌରୀ କବିତା। ବିଷୟବସ୍ତୁର ସୁସମ୍ବନ୍ଧ ବିନ୍ୟାସ, ଘଟଣା ସ୍ରୋତର ଅତୀବ ପ୍ରାକୃତିକତା, ମାନବ ହୃଦତନ୍ତ୍ରୀର ସହଜ ପ୍ରକାଶ– ଏଇମାନଙ୍କ ସହଯୋଗରେ ପ୍ରାଚ୍ୟ-ପାଶ୍ଚାତ୍ୟ ବିଷୟବସ୍ତୁର ସମୀକରଣ ହୋଇଛି ଅତୀବ ସାର୍ଥକ ଓ ମୁଗ୍ଧକର।" (ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ - ପୃ. ୪୧, ଡ଼ଃ. ନଟବର ସାମନ୍ତରାୟ)

Our sweetest songs are those that tells us the saddest thoughts. ଆମର ପ୍ରିୟ କବିତା-ଗୁଡ଼ିକ ଆମ ମନରେ ଦୁଃଖର ରେଖାପାତ କରିଥାଏ। କେଦାରଗୌରୀ କାବ୍ୟ କବି ପ୍ରତିଭାର ଆଦ୍ୟ ସଂକେତ ହେଲେ ମଧ୍ୟ ପ୍ରଣୟ ଓ ବିରହର ସ୍ୱର୍ଣ୍ଣସେତୁ ରୂପେ ଏ ଦେଶର ଅଗଣିତ ଜନତାର ହୃଦୟକୁ ସ୍ପର୍ଶ କରି ପାରିଛି।

ରାଧାନାଥଙ୍କ ସାହିତ୍ୟ ଉପବନର ଦ୍ୱିତୀୟ ପ୍ରସ୍ଫୁଟିତ ସୁବାସିତ କୁସୁମ 'ଚନ୍ଦ୍ରଭାଗା'। ଏହା ଓଭିଡ଼ଙ୍କ ମେଟାମରଫସିସ୍‌ରୁ ଗ୍ରହଣ କରାଯାଇଥିଲେ ମଧ୍ୟ ସ୍ୱକୀୟ ମୌଳିକତାରେ କାବ୍ୟଟି ସର୍ବାଙ୍ଗ ସୁନ୍ଦର ହୋଇଛି। ସୌନ୍ଦର୍ଯ୍ୟ ସମସ୍ତଙ୍କୁ କରେ ବଶୀଭୂତ ଓ ଆକର୍ଷିତ। ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟରେ ସୂର୍ଯ୍ୟଦେବ ହୋଇଛନ୍ତି ଆକୃଷ୍ଟ। ସେ ଚନ୍ଦ୍ରଭାଗା ନିକଟରେ ପ୍ରେମଭିକ୍ଷା କରିଛନ୍ତି। ସୁନ୍ଦରୀ, ଲାବଣ୍ୟମୟୀ ଚନ୍ଦ୍ରଭାଗା ସୂର୍ଯ୍ୟଦେବଙ୍କର ଏ ପ୍ରେମଭିକ୍ଷାକୁ ସ୍ୱୀକାର କରି ନାହାନ୍ତି। ଚନ୍ଦ୍ରଭାଗା ବିରାଗରେ ଜର୍ଜରିତ ହୋଇ ସେଠାରୁ ପଳାୟନ କରିବାକୁ ଲାଗିଛି। ତାର ପଳାୟନରେ ସୂର୍ଯ୍ୟ ଦେବତାଙ୍କ ପ୍ରେମ ଦ୍ୱିଗୁଣିତ ହୋଇଛି। ସୂର୍ଯ୍ୟ ଦେବତା ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟର ଜୟଗାନ କରିଛନ୍ତି–

"କିନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ
କେବେ ରସିକ ଛାଡ଼େ ?
ମଧୁ ଥିଲେ ପୁଷ୍ପେ ଯତନେ
ଖୋଜି ମଧୁପ କାଢ଼େ।"

ସୂର୍ଯ୍ୟ ଦେବତା ଚନ୍ଦ୍ରଭାଗାର ରୂପମାଧୁରୀରେ ମୁଗ୍ଧ ହୋଇ ନିଜର ପ୍ରଣୟ ନିବେଦନ କରିଛନ୍ତି ଚନ୍ଦ୍ରଭାଗା ନିକଟରେ। କବିଙ୍କ ଭାଷାରେ–

"ମନ୍ତ୍ରବଳେ କୁନ୍ତୀ ଆକର୍ଷି
ମୋତେ ଆଣିଣ ଥିଲା
ଆଣିଲୁ ଲାବଣ୍ୟ-ରଜ୍ଜୁରେ
ବାନ୍ଧି ତୁହି ଛଇଳା।"

ଚନ୍ଦ୍ରଭାଗା ସୂର୍ଯ୍ୟଙ୍କର କଥାରେ କର୍ଣ୍ଣପାତ ନ କରି ପଳାୟନ କରିଛି। ଶେଷରେ ଚନ୍ଦ୍ରଭାଗା ଅତିଷ୍ଠା ହୋଇ ନିଜର ସାଗର ଅପ୍‌ସରୀ ମାତାଙ୍କୁ ଅନୁରୋଧ କରିଛି ତାକୁ ଏ ବିପଦରୁ ରକ୍ଷା କରିବା ନିମନ୍ତେ ଉଦ୍ଧାର କରିବା ନିମନ୍ତେ। ଫଳରେ ତାହୁଁ ତାହୁଁ ବିଶ୍ୱଗ୍ରାସୀ ତରଙ୍ଗ ମାଡ଼ି ଆସିଛି। ଚନ୍ଦ୍ରଭାଗା ସାଗରର ସେହି ତରଙ୍ଗରେ ନିଜକୁ ହଜାଇ ଦେଇଛି। ସୂର୍ଯ୍ୟଙ୍କର କାର୍ଯ୍ୟକଳାପରେ କ୍ରୋଧିତ ହୋଇ ସୁମନ୍ୟୁ

ଋଷି ଅଭିଶାପ ଦେଇଛନ୍ତି ସୂର୍ଯ୍ୟ ଦେବତାଙ୍କୁ ଫଳରେ ତାଙ୍କର କୋଣାର୍କ ମନ୍ଦିର ମାଟିରେ ମିଶି ଯାଇଛି।

ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁ ବିଦେଶୀ ସାହିତ୍ୟରୁ ଗ୍ରହଣ କରାଯାଇଛି। ରାଧାନାଥ ଓଭିଡ଼ଙ୍କ କାବ୍ୟ ବର୍ଣ୍ଣିତ କଥାବସ୍ତୁର ଅନୁସରଣରେ ଏହି କାବ୍ୟ ରଚନା କରିଛନ୍ତି ଏ କଥା ଆଲୋଚକମାନେ ଗ୍ରହଣ କରିଛନ୍ତି। ଆଲୋଚନାର ପରିସରକୁ ଆହୁରି ଅଧିକ ବ୍ୟାପକ କରିବାକୁ ଯାଇ ପଣ୍ଡିତ ବିନାୟକ ମିଶ୍ର ମତ ପ୍ରଦାନ କରିଛନ୍ତି– "ମୃତ ବ୍ୟକ୍ତିର ଅସ୍ଥି ସାଇତି ରଖିବା ପାଇଁ କୈଠି ଖଞ୍ଜା ଗୋଲାକାର ମୃର୍ତ୍ତିକା ପାତ୍ର ପ୍ରାଚୀନ କାଳରେ ଗ୍ରୀସ ଦେଶରେ ବ୍ୟବହୃତ ହେଉଥିଲା। ଏପରି ଏକ ପାତ୍ରର ଗାତ୍ରରେ ଏକ କୁମାରୀ ଓ ତାହାକୁ ଧରିବା ପାଇଁ ଗୋଡ଼ାଇବା ଯୁବକର ଚିତ୍ରଥିଲା। ଏହି ପାତ୍ର ଗ୍ରୀସ୍‌ର ଅରଣ୍ୟରେ ଥିଲା। ଏହାକୁ ଦେଖି ପ୍ରଶଂସିତ ଶୈଳୀ ଓ ଛନ୍ଦରେ କୀଟ୍‌ସ କବିତା ଲେଖିଥିଲେ। ଏହି କବିତା ପଢ଼ି ହେଉ ବା ଗ୍ରୀକ୍ ପ୍ରାଚୀନ ଗଳ୍ପ ପଢ଼ିହେଉ, କଥାବସ୍ତୁର ମୂଳଭାବ ରାଧାନାଥଙ୍କ ଚିତ୍ତରେ ଜାତ ହୋଇଥିଲା। ଆମ ଦେଶର ପୁରାଣରେ ସମୁଦ୍ର ମନ୍ଥନ କାଳରେ ମୋହିନୀ ରୂପରେ ବିଷ୍ଣୁ ଅସୁରଙ୍କୁ ମୁଗ୍ଧ କରି ରଖିଥିବାରୁ ଦେବତାମାନେ ନିର୍ବିବାଦରେ ସମୁଦ୍ର ମନ୍ଥନ କରି ଅମୃତ ପାଇଲେ। ବିଷ୍ଣୁଙ୍କ ମୋହିନୀ ମୂର୍ତ୍ତି ପଛରେ ଶିବ ଗୋଡ଼ାଇଥିବାର ପ୍ରବାଦ ବଳରାମ ଦାସ ଲେଖିଛନ୍ତି, କିନ୍ତୁ ଏସବୁ ଆଖ୍ୟାନ ସହିତ କୋଣାର୍କ ମନ୍ଦିରର କୌଣସି ସମ୍ପର୍କ ନାହିଁ। ତଥାପି ନିଜର କଳ୍ପନାରୁ ଆଖ୍ୟାନ କଳ୍ପନା କରିବା ପାଇଁ ଅନ୍ୟ ସାହିତ୍ୟର ଆଖ୍ୟାନମାନଙ୍କରୁ ରାଧାନାଥ ଆଭାସ ପାଇଥିବେ, କିନ୍ତୁ ମୁସଲମାନ ଧର୍ମର ପ୍ରଭାବରେ ସେତେବେଳେ ଦେବଦେବୀ ପ୍ରତି ଭକ୍ତି ଓଡ଼ିଆ ହୃଦୟରେ ଊଣା ହୋଇଥିଲା। ବ୍ୟକ୍ତିଗତ ପ୍ରତିଭା ପ୍ରତି କାହାରି ସମ୍ମାନ ନ ଥିଲା। ଶିଳ୍ପର ପତନ ଘଟିଥିଲା। ଏଣୁ ମନ୍ଦିର ଏପରି ନିର୍ମାଣ କରାଯାଇଥିଲା ଯେ, ତାହା ଆପେ ଆପେ ଭାଙ୍ଗି ପଡ଼ିଥିଲା।" (ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ-ପଣ୍ଡିତ ବିନାୟକ ମିଶ୍ର - ପୃ. ୪୭)

ଚନ୍ଦ୍ରଭାଗା କାବ୍ୟର ପ୍ରତ୍ୟେକ ଛତ୍ରରେ କବି ପ୍ରତିଭାର କାଉଁରୀ କାଠିରେ ମୌଳିକତାର ସ୍ପର୍ଶ ଦେଇ ନିଜସ୍ୱ ଗାରିମାରେ ସୃଷ୍ଟି ସମ୍ପଦକୁ ମହୀୟାନ କରିଛନ୍ତି।

ରାଧାନାଥଙ୍କ କାବ୍ୟ ଉପବନର ତୃତୀୟ କୁସୁମିତ କାବ୍ୟ କୁସୁମ 'ନନ୍ଦି କେଶ୍ୱରୀ'। ଏହା କରୁଣ ବିୟୋଗାନ୍ତକ କାବ୍ୟ। ଐତିହାସିକ ପୃଷ୍ଠଭୂମି ଉପରେ ଆଧାରିତ ଗ୍ରୀକ୍ ପୁରାଣର ସିଲା ଓ ବାଇରନଙ୍କ 'ସିଜ୍ ଅଫ୍ କୋରିନ୍ଥ' କାବ୍ୟର ଅନୁସରଣରେ ରଚିତ। ଚତୁର କବି ରାଧାନାଥ ଚତୁରତାର ସହିତ ବିଦେଶୀ ସିଲାକୁ ଉତ୍କଳୀୟ ନାରୀ ଧର୍ମରେ ଦୀକ୍ଷିତ କରି ନନ୍ଦିକା ରୂପେ ଉପସ୍ଥାପନା କରିଛନ୍ତି। ବୀର ଚୋଡ଼ଗଙ୍ଗଦେବ ଉତ୍କଳର ରାଜା ସୁବର୍ଣ୍ଣ କେଶରୀଙ୍କ ବିଡ଼ାନାସୀଗଡ଼ ଅବରୋଧ କରିଛନ୍ତି। ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହୋଇଛି। ଶେଷରେ ଚୋଡ଼ଗଙ୍ଗ ଦେବ ନିରାଶ ହୋଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବାକୁ ଚାହିଁଛନ୍ତି। ରାଜବାଳା ନନ୍ଦିକା ଚୋଡ଼ଗଙ୍ଗ ଦେବଙ୍କ

ବୀରତ୍ୱ ଓ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପ୍ରଣୟାସକ୍ତ ହୋଇଛି। ନନ୍ଦିକା ରାଜବାଳା ହେଲେ ବି ସେ ନାରୀ, ନାରୀର ଧର୍ମ ସେ ପୁରୁଷକୁ ଭଲ ପାଇବ। ପୁରୁଷକୁ ପ୍ରେମ କରିବ। ପ୍ରେମ ନିକଟରେ ଜାତି, ବର୍ଣ୍ଣ, ଧର୍ମ, ଶତ୍ରୁ ମିତ୍ରର କୌଣସି ପାର୍ଥକ୍ୟ ନାହିଁ। ରାଜବାଳା ନନ୍ଦିକା ନିଜର ପ୍ରଣୟ ଆବେଦନ କରିଛି ପିତାଙ୍କର ଶତ୍ରୁ ନିକଟରେ। Love is blind. ପ୍ରେମ ବିଦଗ୍ଧ ଅନ୍ତର ତାଙ୍କର ଚୋଡ଼ଗଙ୍ଗଙ୍କ ଦେହ, ମନ, ପ୍ରାଣ ସ୍ପର୍ଶ କରିବା ନିମନ୍ତେ ଉତ୍ତୁଙ୍ଗ ସାଗର ଲହରୀ ତୁଲ୍ୟ କୂଳ ପ୍ଲାବନ କରିଛି। ନନ୍ଦିକାର ମନ ଗହନର ଅନ୍ତର ତଳର ଗୁପ୍ତ ଭାବକୁ କବି ଅତି ସୁନ୍ଦର ରୂପେ ନିଜ ଭାଷାରେ ରୂପାୟିତ କରିଛନ୍ତି –

"ନାରୀମନ ଚୋର ଚୋର ମହାବୀର
ଚୋରନାମ ତେଣୁ ବହିଛି ମହୀର
ଗଲା ହୃଦୟ ନ ଆସିବ ବାହୁଡ଼ି
ପକ୍ଷ ଥିଲେ ଦେହ ଯାଇଥାନ୍ତା ଉଡ଼ି।"

ନନ୍ଦିକାର ପ୍ରେମପୂର୍ଣ୍ଣ ଆବେଦନ ନାରୀ ଧର୍ମର ଶ୍ରେଷ୍ଠ ସମ୍ପଦ। ରାଜନନ୍ଦିନୀ ନନ୍ଦିକା ଚିତ୍ତରେ କେବଳ ଚୋଡ଼ଗଙ୍ଗଙ୍କୁ ପାଇବାପାଇଁ କାମନା ବାସନା ଜାଗି ଉଠିଛି। ଯିଏ ନିଜର ଛାୟା ଦର୍ଶନରେ ଶଙ୍କାଜଡ଼ିତ ସେ ଆଜି ପ୍ରେମବଳରେ ଭୟଶୂନ୍ୟା। ତାମସୀ ବୁକୁରେ ସେ ଚାଲିଛନ୍ତି ନିଜର ମନର ମଣିଷକୁ ଭେଟିବା ପାଇଁ କେତେ ବ୍ୟାକୁଳିତ ହୋଇ। ନିଜର ପ୍ରେମ ନିବେଦନ କରିବାକୁ ଯାଇ ନନ୍ଦିକା ପ୍ରକାଶ କରିଛନ୍ତି –

"ନନ୍ଦିକା ଉତ୍କଳ ନରେନ୍ଦ୍ର ନନ୍ଦିନୀ
ତୁମ ପଦେ ଆଜ ପ୍ରେମ ଭିକାରିଣୀ
ବୀର ପକ୍ଷପାତ ସଦା ନାରୀକୁଳ
ନାରୀ ପ୍ରେମେ ସଦା ବୀର୍ଯ୍ୟ ଅନୁକୂଳ।"

ନନ୍ଦିକାର ପବିତ୍ର ପ୍ରେମରେ ପ୍ରେମିକା କୁଳ ହୋଇଛି ଗରିୟାନ। କାୟ, ମନ ବାକ୍ୟରେ ସେ ଯାହାକୁ ପତିରୂପେ ଗ୍ରହଣ କରିଛି ତା ବ୍ୟତୀତ ଅନ୍ୟକଥା କଳ୍ପନା ବି କରିନାହିଁ। ସେ ଆଦର୍ଶ ପ୍ରଣୟିନୀ। ପାଷାଣ ହୃଦୟ ଚୋଡ଼ଗଙ୍ଗ ଦେବ ତାକୁ ପ୍ରତ୍ୟାଖାନ କରିଛନ୍ତି। ତାଙ୍କୁ ଭର୍ତ୍ସନା କରିଛନ୍ତି। ଚୋଡ଼ଗଙ୍ଗ ଦେବ ରାଜା ହୋଇ ପାରନ୍ତି, ବୀର ହୋଇ ପାରନ୍ତି, ଶ୍ରେଷ୍ଠ ଯୋଦ୍ଧା ହୋଇ ପାରନ୍ତି କିନ୍ତୁ ନାରୀ ହୃଦୟର ବ୍ୟାଥାକୁ ସେ ଚିହ୍ନି ନାହାନ୍ତି। କିମ୍ବା ଚିହ୍ନିବାକୁ ଚେଷ୍ଟା ମଧ୍ୟ କରି ନାହାନ୍ତି। କବି ନନ୍ଦିକାକୁ ତିରସ୍କାର କରି କହିଛନ୍ତି -

"ପବିତ୍ର କେଶରୀ ବଂଶେ ଜାତ ହୋଇ
ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ
ତିନି ମହାପାପ ଏକ କରଣୀରେ
ଅଦ୍ଭୁତ ସାଧନ ତୋର ଧରଣୀରେ

କି ସାହସେ ତୋର ଚିତ୍ତ ବୃତ୍ତିଗଲା
ଏ ଦାରୁଣ କାର୍ଯ୍ୟେ, ତୁ ପୁଣି ଅବଳା ।''

ନାରୀର ସହଜାତ ଉଦାର ଓ କ୍ଷମା ଗୁଣରେ ସେ ଚୋରଗଙ୍ଗ ଦେବଙ୍କୁ ଅଭିଶାପ ଦେଇ ନାହିଁ କିମ୍ବା କ୍ରୋଧିତ ହୋଇ ନାହିଁ କିମ୍ବା ପ୍ରତିଶୋଧ ନେଇ ନାହିଁ। ନନ୍ଦିକା ଯେ ନାରୀ। ସେ ଯେ କଲ୍ୟାଣୀ। ମୃତ୍ୟୁ କାଳରେ ମଧ୍ୟ ନନ୍ଦିକା ଚୋରଙ୍କୁ ନିଜର ଆପଣାର ପତିରୂପେ ସ୍ୱୀକାର କରିଛି। ନନ୍ଦିକାର ଏହି ସ୍ୱୀକାରୋକ୍ତି ହିଁ ଚୋରଗଙ୍ଗ ଦେବଙ୍କୁ ଉତ୍କଳର ସ୍ୱର୍ଣ୍ଣ ସିଂହାସନରେ ଉପବେଶନ କରିବାର ଗୌରବ ଆଣି ଦେଇଛି। ପ୍ରଣୟିନୀ ନନ୍ଦିକାର ମୃତ୍ୟୁରେ ହିଁ ତାର ପ୍ରେମର ମହାନତା ପ୍ରସ୍ଫୁଟିତ ହୋଇଛି। ନନ୍ଦିକାର ପ୍ରେମ ଥିଲା ସ୍ୱଚ୍ଛ, ଶୁଭ୍ର, ନିର୍ମଳ, ପବିତ୍ର ଗଙ୍ଗାଜଳ ସଦୃଶ। 'ନନ୍ଦି କେଶରୀ' କାବ୍ୟରେ ନନ୍ଦିକାର ସ୍ୱର୍ଗୀୟ ଶାଶ୍ୱତ ପ୍ରେମ ହୋଇଛି ଦେଦୀପ୍ୟମାନ। ଆପଣାର ମୃତ୍ୟୁରେ ପ୍ରେମ ଧର୍ମକୁ ମହିମା ମଣ୍ଡିତ କରିଛି।

ରାଧାନାଥଙ୍କ 'ଉଷା' ଏକ ଉଲ୍ଲେଖନୀୟ କାବ୍ୟ। ଏଥିରେ ପାଶ୍ଚାତ୍ୟ କାବ୍ୟ-ସାହିତ୍ୟର ପ୍ରଭାବ ପଡ଼ିଥିଲେ ମଧ୍ୟ ପରିବେଶ ଓ ପରିବେଷଣରେ ଏହା ଆର୍ଯ୍ୟାବର୍ତ୍ତର ସ୍ୱକୀୟ ମହିମାରେ ମହିମାନ୍ୱିତ ହୋଇଅଛି। ଦେବଭୂମି, ପବିତ୍ର ଭୂମି ଆର୍ଯ୍ୟାବର୍ତ୍ତରେ କାବ୍ୟ ନାୟକ ଓ କାବ୍ୟ ନାୟିକା ମନୁଷ୍ୟ ରୂପେ ଜନ୍ମ ଗ୍ରହଣ କରିଥିଲେ ହେଁ ସେମାନେ ବହୁ ସମୟରେ ସ୍ୱର୍ଗରୁ ଅଭିଶପ୍ତ ହୋଇ ଏହି ମର୍ତ୍ତ୍ୟ ମଣ୍ଡଳରେ ଅବତୀର୍ଣ୍ଣ ହୋଇଥାନ୍ତି। କବି ରାଧାନାଥଙ୍କ ଉଷା କାବ୍ୟ ଏହାର ନିଦର୍ଶନ। ଉଷା ଓ ଜୟନ୍ତ ରାଜପରିବାରରେ ଜନ୍ମଗ୍ରହଣ କରି ଲାଳିତ ପାଳିତ ହୋଇ ଯୌବନରେ ପଦାର୍ପଣ କରିଛନ୍ତି। ସୁନ୍ଦରୀ ଉଷାର ସର୍ତ୍ତ ଥିଲା ଯେଉଁ ଯୁବକ ତାକୁ ଦୌଡ଼ ପ୍ରତିଯୋଗିତାରେ ପରାସ୍ତ କରିବ ସେ ହିଁ ହେବ ତାର ସ୍ୱାମୀ। ଉଷା ଥିଲା 'ଅପରୂପା ସୁନ୍ଦରୀ। ଉଷାର 'ରୂପ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ଅନେକ ଯୁବକ ଦୌଡ଼ ପ୍ରତିଯୋଗିତାରେ ଭାଗ ନେଇଛନ୍ତି ଓ ପରାସ୍ତ ହୋଇ ମୃତ୍ୟୁ ବରଣ କରିଛନ୍ତି। ଜୟନ୍ତ ଉଷାର ରୂପ ମାଧୁରୀରେ ବିମୋହିତ ହୋଇ ତାକୁ ପାଇବା ପାଇଁ ବ୍ୟଗ୍ର ହୋଇ ଉଠିଛି। ପ୍ରଥମ ଦେଖାରୁ ହିଁ ଜୟନ୍ତ ଉଷାକୁ ଭଲ ପାଇଛି। Love at first sight. ଜୟନ୍ତ ଥିଲା ବୀର। ସେ ରୂପର ପୂଜାରୀ। ସେ ସୌନ୍ଦର୍ଯ୍ୟର ଉପାସକ। ସେ କାୟ, ମନ, ବାକ୍ୟରେ ଚାହିଁଛି ଉଷାକୁ। କବି ରାଧାନାଥଙ୍କ ଭାଷାରେ –

''ଉଷାଗତ ପ୍ରାଣ, ଉଷା ତାର ଧ୍ୟାନ, ଉଷା ଯେ ଗତି
ଉଷା ନ ଲଭିଲେ ପାରିବ କି ପ୍ରାଣେ ତିଳେ ବରତି ?
ପ୍ରଥମ ଦର୍ଶନ ବେଳୁ କରିଥିଲା ମନକୁ ଦୃଢ଼,
କାଳ-ସ୍ୱୟମ୍ବରେ ଅବହେଳେ କଲା ପ୍ରାଣକୁ ହୁଡ଼ ''

ଜୟନ୍ତନିଜର ସାଧନା ଓ କର୍ତ୍ତବ୍ୟ ପଥରେ ଅଟଳ ରହି ସିଦ୍ଧି ଲାଭ କରିଛି।

ପ୍ରେମରେ ବିରାଗ ଆଣିଥିବା ଉଷା ପ୍ରଥମରୁ ଜୟନ୍ତକୁ ଦେଖି ତା ମନରେ ପ୍ରଣୟର ଅଙ୍କୁରୋଦ୍‌ଗମ ହୋଇଛି। ତା ହୃଦୟରେ ପ୍ରେମର ଆଲୋଡ଼ନ ସୃଷ୍ଟି ହୋଇଛି। ବିଜୟ ଗୌରବର ସ୍ୱପ୍ନ ଦେଖୁଥିବା ନାରୀ ଉଷା ଜୟନ୍ତକୁ ଦେଖିବା ପରେ ପରାଜୟ ହିଁ କାମନା କରିଛି। କଠୋର ପାଷାଣ ହୃଦୟା ଉଷା ମନରେ ପ୍ରେମର ଫଲ୍‌ଗୁ ପ୍ରବାହିତ ହୋଇଛି। କବି ରାଧାନାଥଙ୍କ ଭାଷାରେ –

"କେତେ ଯୁବା ଆସି ଅକାରଣେ ପ୍ରାଣ ଦେଲେ ଏ ଦେଶେ
ଅଶ୍ରୁ ବୁହାଇଲେ କେବଳ; ନୟନେ ନ ରୁଚି ଲେଶେ;
ଏ ରୂପମାଧୁରୀ କାହିଁ ଥିଲା ପୁଣି ଭୁବନେ ଲୁଚି।
ଥରେ ପିଇ ଆହା ପାରିବ କି ତାହା ନେତ୍ର ମୁରୁଛି।"

ଉଷା ଓ ଜୟନ୍ତ ଦୌଡ଼ିବା ସମୟରେ ଉଷା ଆଗେଇ ଯିବାରୁ ଜୟନ୍ତ ଗୋଟି ଗୋଟି କରି ଦେବଦତ୍ତ ସ୍ୱର୍ଣ୍ଣ–ପଦ୍ମକୁ ଉଷା ନିକଟକୁ ଫିଙ୍ଗିବାରୁ ଉଷା ସେଥିପ୍ରତି ଆକୃଷ୍ଟ ହୋଇ ଆଣିବାକୁ ଯାଇଛି। ଇତି ମଧ୍ୟରେ ଜୟନ୍ତ ସଙ୍କେତ ସ୍ଥଳରେ ପହଞ୍ଚି ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣ ହୋଇଛି। ସର୍ତ୍ତ ଅନୁଯାୟୀ ବିବାହର ଆୟୋଜନ ଚାଲିଛି। କିନ୍ତୁ ବିଧିର ବିଧାନ ବଡ଼ ବିଚିତ୍ର। ବିବାହ ବେଦୀରେ ବରକନ୍ୟାଙ୍କ ହସ୍ତଗ୍ରନ୍ଥି ସମୟରେ ଉଷା ଓ ଜୟନ୍ତର ମୃତ୍ୟୁ ଘଟି କାବ୍ୟଟିକୁ କରୁଣ ରସରେ ଭରି ଦେଇଛି। ଉଭୟଙ୍କର ମୃତ୍ୟୁରେ ପ୍ରଣୟରେ ଆସିଛି ଭଙ୍ଗା।

ରାଧାନାଥଙ୍କ ଉଷାକାବ୍ୟ ପ୍ରସଙ୍ଗରେ ଆଲୋଚନା କରିବାକୁ ଯାଇ ଅଧ୍ୟାପକ ବେଣୁଧର ରାଉତ ଲେଖିଛନ୍ତି– "ଆଟ୍‌ଲାଣ୍ଟା ସମ୍ପର୍କୀୟ ଗ୍ରୀସୀୟ ଗଳ୍ପଟିକୁ Aelien, Euripidus, Callimachus, Apollodorusଏବଂ Ovid ପ୍ରଭୃତି ଗ୍ରୀସୀୟ ଏବଂ ରୋମୀୟ କବିବୃନ୍ଦ ନିଜ ନିଜର କାବ୍ୟ କଥା–ଭାବରେ ଗ୍ରହଣ କରିଥିଲେ ହେଁ ସବୁଠାରେ ରୁଚିଗତ, ସୃଷ୍ଟିଗତ ପାର୍ଥକ୍ୟ ରହିଛି। ସେହିଭଳି ଇଂରେଜୀ କବି William Morrisଙ୍କର Atalanta's Race; ଏବଂ ରାଧାନାଥଙ୍କ ଉଷା ତାହାରି ଭିତ୍ତିରେ ଲିଖିତ। ତଥାପି ମୋରିସ ଏବଂ ରାଧାନାଥଙ୍କ କାବ୍ୟ ଦୁଇଟିରେ ପାଦ ବା ପଙ୍‌କ୍ତିର ଅନେକତ୍ର ମେଳ ରହିଛି। ରାଧାନାଥ ମୋରିସଙ୍କ କାବ୍ୟାନୁସରଣ କରିଥିଲେ ହେଁ ମୌଳିକ ଗଳ୍ପର ଆଶ୍ରୟ ଛାଡ଼ି ନାହାନ୍ତି। ତେବେ, ଏ ସମସ୍ତର ସଂଶ୍ଲେଷଣ ଓ ରୁଚିଗତ ଗଠନ ଭିତରେ ମୋରିସଙ୍କ କାବ୍ୟ ଅପେକ୍ଷା ବହୁ ଭାବରେ ରାଧାନାଥଙ୍କ ଉଷା ବରଂ ଶ୍ରେଷ୍ଠତର।" (ଡ଼ଗର ରାଧାନାଥ ବିଶେଷାଙ୍କ ପୃ. ୧୫)

ଉଷା ଦେବୀ ଚରିତ୍ର ହେଲେ ମଧ୍ୟ କବି ତାକୁ ଏହି ଧୂଳି, ମାଟି, ଧରଣୀର ମାନବୀ ରୂପେ ସଜାଇଛନ୍ତି। ନାରୀ ମନର ସମସ୍ତ ଆବେଗ ତା ହୃଦୟରେ ଥୋଇଛନ୍ତି। କାବ୍ୟ ନାୟିକା ଉଷା ଏକ ସ୍ୱତନ୍ତ୍ର ଚରିତ୍ର। ଜୟନ୍ତ ଏକ ଆଦର୍ଶ ଚରିତ୍ର।

ରାଧାନାଥଙ୍କ ଉଷା କାବ୍ୟ ବର୍ଣ୍ଣନା କରିବାକୁ ଯାଇ ଅଧ୍ୟାପକ ଡ଼କ୍ଟର ଦେବେନ୍ଦ୍ର ମହାନ୍ତି ଆଲୋକପାତ କରିଛନ୍ତି- "ପ୍ରାଚ୍ୟ ପରମ୍ପରାର ବାଣୀ ଧ୍ୱଂସାତ୍ମକ ନୁହେଁ।

ପ୍ରାଚ୍ୟ ପରମ୍ପରା ବିଶ୍ୱାସ କରେ, ଯେଉଁଠାରେ ଦୋଷ ଅଛି ସେଠାରେ କ୍ଷମା ଅଛି, ଯେଉଁଠାରେ ଅନ୍ଧକାର ଅଛି ସେଠାରେ ଯେ ସବୁବେଳେ ଅନ୍ଧକାରରର ରାଜତ୍ୱ ରହିବ, ତାହା ନୁହେଁ। ଅନ୍ଧକାର ପରେ ପୁଣି ସେଠାରେ ଖେଳିଯିବ ଆଲୋକର ପ୍ଲାବନ। ସେଥିପାଇଁ ଚିତ୍ରରଥ ଓ ତିଲୋତ୍ତମା କାଳୀଙ୍କ ଠାରୁ ଅଭିଶାପ ପାଇବା ପରେ ପୁଣି ଶାପମୁକ୍ତିର ସଙ୍କେତ ମଧ୍ୟ ପାଇଛନ୍ତି। ପ୍ରାଚ୍ୟ ଜଗତର ଆଦର୍ଶ, ମନୁଷ୍ୟକୁ ଦେବତାରେ ପରିଣତ କରିବା। ମନୁଷ୍ୟକୁ ପଶୁରେ ପରିଣତ କରିବା ନୁହେଁ। ପଶୁତ୍ୱକୁ ପରିତ୍ୟାଗ କରି ମନୁଷ୍ୟ ଯଥାର୍ଥ ମନୁଷ୍ୟରେ ପରିଣତ ହୁଏ, ପୁଣି ସେ ତାର କର୍ମଫଳରେ ଦେବତାରେ ପରିଣତ ହୁଏ। କବିବର ରାଧାନାଥ ପ୍ରାଚ୍ୟ ପରମ୍ପରାର ସେହି ଆଦର୍ଶର ପୂଜାରୀ। ସେ ଉଷା ଏବଂ ଜୟନ୍ତଙ୍କୁ ପଶୁରେ ପରିଣତ କରିଦେବାର କଳ୍ପନାକୁ ମନରେ ସ୍ଥାନ ନ ଦେଇ ସେମାନଙ୍କୁ ଦିବ୍ୟଲୋକର ଯାତ୍ରୀ କରାଇଅଛନ୍ତି। ଉଷା ଓ ଜୟନ୍ତଙ୍କର ଏହି ପରିଣତି ପାଇଁ କବିବର ରାଧାନାଥ ଭାରତୀୟ ପୌରାଣିକ ଆଦର୍ଶକୁ ଗ୍ରହଣ କରି ନିଜର ବଳିଷ୍ଠ ଚିନ୍ତାଧାରାର ଯେଉଁ ଆଦର୍ଶ ଦେଖାଇଅଛନ୍ତି ତାହା ତାଙ୍କର କବି ପ୍ରତିଭାର ଏକ ସାର୍ଥକ ଅଭିବ୍ୟକ୍ତି।'' (ଅଧ୍ୟାପକ ଡକ୍ଟର ଦେବେନ୍ଦ୍ର ମହାନ୍ତି– ଯୁଗଜ୍ୟୋତି ରାଧାନାଥ, ପୃଷ୍ଠା – ୧୬୬ – ୧୬୭)

ଉଷା କାବ୍ୟ କବି ରାଧାନାଥଙ୍କ ସୁଚିନ୍ତିତ ଚିନ୍ତା ଓ ଚେତନାର ପରିପ୍ରକାଶ। କବିଙ୍କର କାବ୍ୟ ନିର୍ମାଣ କୌଶଳ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା ତାହା ଉଷା କାବ୍ୟରୁ ପ୍ରତିପାଦିତ ହୋଇଛି।

ପ୍ରେମ ହେଉଛି ସୁନ୍ଦର। ତାହା ହେଉଛି ମଧୁମୟ। ତାହାହି ଅମୃତର ପରିପ୍ରକାଶ। ପ୍ରେମ ହେଉଛି ସତ୍ୟ, ଶିବ, ସୁନ୍ଦର ଅଭିବ୍ୟକ୍ତି। ତାହାହିଁ ସ୍ୱର୍ଗୀୟ। ବେଳେବେଳେ ଏହି ସ୍ୱର୍ଗୀୟ ପ୍ରେମ କଳୁଷିତ, ପଙ୍କିଳ ହୁଏ। ପ୍ରେମ ଯେଉଁଠି କଳୁଷିତ ହୁଏ, ପ୍ରଣୟ ଯେଉଁଠି ପଙ୍କିଳ ହୁଏ ତାହା ପ୍ରେମ ନୁହେଁ କିମ୍ବା ପ୍ରଣୟ ନୁହେଁ ତାହା ବଳାତ୍କାର ତାହା କାମୁକତା।

କବି ରାଧାନାଥ ପାର୍ବତୀ କାବ୍ୟରେ ଶାଶ୍ୱତ ସ୍ୱର୍ଗୀୟ ପ୍ରେମର ବିନାଶ ଘଟାଇ ପାପ, କଳୁଷିତ ପ୍ରେମର କଥା ବର୍ଣ୍ଣନା କରିଛନ୍ତି। Literature is the mirror of the society. ସମାଜ ଚିତ୍ରର ଜୀବନ୍ତ ପ୍ରତିଫଳନ କବି ନିଜ ଲେଖନୀ ମୁନରେ ପ୍ରକାଶ କରେ। କାମୁକ ଗଙ୍ଗେଶ୍ୱରଙ୍କ ଜୀବନ ଚିତ୍ର ପାର୍ବତୀ କାବ୍ୟରେ ବ୍ୟକ୍ତ ହୋଇଛି। ସତୀ, ସାଧ୍ୱୀ ପାର୍ବତୀ, ଅଭାଗିନୀ କୌଶଲ୍ୟା ଓ ଅସହାୟା ଅନ୍ନପୂର୍ଣ୍ଣା, ପାପ ପ୍ରଣୟରେ ଅଭିଯୁକ୍ତ ଗଙ୍ଗେଶ୍ୱର ରାଜାଙ୍କ ଜୀବନ ଚିତ୍ର ବର୍ଣ୍ଣନା କରି କବି ପାଠକ ନିକଟରେ ବିସ୍ମୟ ସୃଷ୍ଟି କରିଛନ୍ତି।

ତ୍ୟାଗ ହିଁ ପ୍ରେମର ପରିପ୍ରକାଶ। ରାଧାନାଥଙ୍କ କାବ୍ୟ ନାୟିକା ପ୍ରେମର ମୂର୍ତ୍ତିମନ୍ତ ବିଗ୍ରହ। ନାରୀତ୍ୱର ଏକ ପରିପୂର୍ଣ୍ଣମୟ ଅଭିବ୍ୟକ୍ତି। ତାଙ୍କ କାବ୍ୟର ନାୟିକା ନାରୀର ପ୍ରେମଧର୍ମର ଏକ ଚିରନ୍ତନ ସ୍ମାରକୀ। ରାଧାନାଥଙ୍କ କାବ୍ୟରେ ପ୍ରଣୟ ଓ ବିରହର

ମାର୍ମିକ ଅଭିବ୍ୟକ୍ତି ହିଁ ତାଙ୍କୁ ନବ ଯୁଗର ସ୍ରଷ୍ଟା ରୂପେ ବିବେଚିତ କରିଛି।

ରାଧାନାଥଙ୍କ କାବ୍ୟର ପ୍ରେମ ବୈଚିତ୍ର୍ୟମୟୀ। ଏ ପ୍ରେମ ଉତ୍କଟ ଦେହଜ କାମନା ବା ମିଳନରେ ପରିସମାପ୍ତି ଘଟି ନଥିଲା। କବିଙ୍କ ବର୍ଣ୍ଣିତ ପ୍ରେମ ଦେହର ସୀମାକୁ ଅତିକ୍ରମ କରିଛି। ମିଳନରେ ପ୍ରେମର ସମାପ୍ତି ଘଟେ। କିନ୍ତୁ ବିରହରେ ଏହା ହୁଏ ଚିରଂଜୀବୀ। ପ୍ରେମର ଏହି ଚିରନ୍ତନ ସତ୍ୟକୁ ରାଧାନାଥ ହିଁ ଉପଲବ୍ଧି କରି ନିଜ କାବ୍ୟରେ ବର୍ଣ୍ଣନା କରିଛନ୍ତି।

□ □ □

# ରାଧାନାଥଙ୍କ ପଦ୍ୟ ସୃଷ୍ଟିରେ ମହାଭାରତୀୟ ଚେତନା

**ଡକ୍ଟର ଶରତଚନ୍ଦ୍ର ରଥ**

ଆଧୁନିକ ଓଡ଼ିଆ ସାହିତ୍ୟର ସ୍ୱନାମଧନ୍ୟ ବରେଣ୍ୟ କବିମାନଙ୍କ ମଧ୍ୟରୁ କବିବର ରାଧାନାଥ ଅନ୍ୟତମ। ସେ ଆଜି ଦେହରେ ନ ଥିଲେ ମଧ୍ୟ ବିଦେହରେ ହୋଇଛନ୍ତି ଏକ ସାର୍ଥକ ସାରସ୍ୱତ ଅନୁଷ୍ଠାନ। ସେହି ଅନୁଷ୍ଠାନର ଅସପତ୍ନ ପ୍ରତିଷ୍ଠା ମନରେ ଯେତିକି ବିସ୍ମୟ ସୃଷ୍ଟିକରେ ସେତିକି ଆନନ୍ଦ ସୃଷ୍ଟିକରେ। ରାଧାନାଥଙ୍କ ସୃଷ୍ଟି ସମ୍ଭାରରେ ବିଶେଷତଃ ପଦ୍ୟ ସୃଷ୍ଟିରେ ଓଡ଼ିଶାର ଚିତ୍ର ଉଜ୍ଜ୍ୱଳ ଭାବରେ ପରିଦୃଷ୍ଟ। ମନେହୁଏ ସେ ଯେପରି ଉତ୍କଳୀୟ ପ୍ରାକୃତିକ ପରିବେଶର ସର୍ବଶ୍ରେଷ୍ଠ ଚିତ୍ରକାର। ଉତ୍କଳୀୟ ଉପାଦାନକୁ ବାଦ ଦେଲେ କବିଙ୍କ କୃତିରେ ମହାଭାରତୀୟ ଚେତନାର ସୁଚାରୁଛନ୍ଦର ଉପସ୍ଥାପନା ପାଠକୀୟ ଦୃଷ୍ଟିକୁ ଆକୃଷ୍ଟ କରେ। ଏ ପରିପ୍ରେକ୍ଷୀରେ ଭାରତ ବନ୍ଦନା ଉଦ୍ଦେଶ୍ୟରେ ତାଙ୍କ ଦ୍ୱାରା ରଚିତ କବିତା ସ୍ମରଣକୁ ଆସେ। ଏଥିରେ ସେ ଭାରତକୁ ଧରଣୀର କଳ୍ପଲତା ବୋଲି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଏକ ପଦ୍ମଫୁଲ ଭାବରେ ମଧ୍ୟ ବିଚାର କରିଛନ୍ତି। ପ୍ରତ୍ୟେକ ଅଞ୍ଚଳ ଏକ ଏକ ପାଖୁଡ଼ା ରୂପରେ ରହି ଏହି ପଦ୍ମଫୁଲଟିକୁ ସର୍ବାଙ୍ଗ ସୁନ୍ଦର କରିଛନ୍ତି ବୋଲି ସେ ଉଲ୍ଲେଖ କରିଛନ୍ତି। ଏହି ଗୀତିକାଟି ସେତେବେଳେ ଉତ୍କଳ ସମ୍ମିଳନୀରେ ଗାନ ହେବା ନିମନ୍ତେ ରଚିତ ହୋଇଥିଲା। ସମନ୍ୱୟ ଚେତନାର ସୁଲଳିତ ଛନ୍ଦ ଏହି ଗୀତିକାରେ ଉପସ୍ଥାପିତ। ସମନ୍ୱୟ ଚେତନା ହେଉଛି ପ୍ରକୃତ ଭାରତୀୟ ଜୀବନ ଧାରାର ଅସଲ ମର୍ମରୂପ। ଅନେକତ୍ୱ ମଧ୍ୟରେ ଏକତ୍ୱ ହେଉଛି ଏହାର ଆତ୍ମିକ ନିର୍ଯ୍ୟାସ। ଏହି ଚେତନା ପ୍ରାଗ୍ ଐତିହାସିକ ଯୁଗରୁ ଅଦ୍ୟାବଧି ଉଜ୍ଜ୍ୱଳ ବର୍ଣ୍ଣବିଭା ବିସ୍ତାର କରି ପ୍ରତିଷ୍ଠା ଅର୍ଜନ କରିଛି। ଏହି ଅବକାଶରେ ଋଗ୍‌ବେଦର ସେହି ଶ୍ଳୋକଟି ସ୍ମରଣୀୟ।

"ସଂଗଚ୍ଛଧ୍ୱଂ ସଂବଦଧ୍ୱଂ
ସଂବୋ ମନାଂସି ଜାନତାମ୍
ଦେବା ଭାଗଂ ଯଥାପୂର୍ବେ
ସଂଜାନାନା ଉପାସତେ।"

ଏହି ଶ୍ଳୋକରେ ଉଦ୍‌ଘୋଷିତ ସମନ୍ୱୟର ବାର୍ତ୍ତା ଓ ଚେତନା ହିଁ ବିଭିନ୍ନତାରେ ବିଭୂଷିତ ଭାରତଭୂଖଣ୍ଡକୁ ବାନ୍ଧିରଖିବା ଦିଗରେ ମୁଖ୍ୟ ଉପାଦାନ କହିଲେ ଅତ୍ୟୁକ୍ତି

ହେବନାହିଁ। ଆମେ ନିଜକୁ ଗୋଟିଏ ଦେଶ ତଥା ଗୋଟିଏ ଜାତି ବୋଲି ଅନୁଭବ କରିବା ନିମନ୍ତେ ସମନ୍ୱୟ ଚେତନାର ଯେଉଁ ଭୂମିକା ରହିଛି ତାହା ଯେପରି ଗୁରୁତ୍ୱପୂର୍ଣ୍ଣ ସେପରି ମହତ୍ୱପୂର୍ଣ୍ଣ। କବି ଚିନ୍ତା ଓ ଚେତନାରେ ଭାରତ ଆମର ଗତିମୁକ୍ତି ଦାତ୍ରୀ, ଦିବ୍ୟ ଚେତନାର ମୂର୍ତ୍ତ ବିଗ୍ରହ। ଭାରତମାତାଙ୍କ ଚରଣ ବନ୍ଦନା ଆମର ଏକାନ୍ତ କାମ୍ୟ। କବିଙ୍କ ଉକ୍ତିରେ—

''ଭାରତ ମେକା ଗତିରସ୍ମାକଂ
ନାପରାସ୍ତି ଭୁବିନାମ
ସର୍ବାଦୌ ପରିଷତ୍-କର୍ମଣିତତଭାରତମେବ ନମାମଃ।''

ସଂସ୍କୃତ ଭାଷା ଓ ସାହିତ୍ୟରେ କବିଙ୍କର ପାରଦର୍ଶିତା ଥିଲା ଅସାଧାରଣ। 'ମେଘଦୂତ' ଖଣ୍ଡକାବ୍ୟ ତାଙ୍କର ଏକ ଅନୁପମ ସୃଷ୍ଟି। ଏହା ମହାକବି କାଳିଦାସଙ୍କର ମେଘଦୂତମ୍‌ର ଭାଷାନୁବାଦ ନୁହେଁ ବରଂ ଭାବାନୁବାଦ ବୋଲି କୁହାଯାଇପାରେ। ଏଥିରେ ରାଧାନାଥଙ୍କର ସ୍ୱର୍ଣକାତର କବି ଚିତ୍ତର ମନମୋହିନୀ ମାଧୁରିମା ଯେପରି ପ୍ରକଟିତ ତାହାର ପଟ୍ଟାନ୍ତର ନାହିଁ। ସଂସ୍କୃତ ସାହିତ୍ୟରେ ଗଭୀର ଅନୁଶୀଳନ ଓ ଅନୁଧ୍ୟାନ ନଥିଲେ ମେଘଦୂତରେ ଭାବ ଏତେ ଚମତ୍କାର ଭାବରେ ଫୁଟି ପାରି ନଥାନ୍ତା। ଏହା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ ଯେ ରାଧାନାଥ ତାଙ୍କ ସାହିତ୍ୟ ସୃଷ୍ଟି ପାଇଁ କେବଳ ପାଶ୍ଚାତ୍ୟକୁ ଚାହିଁ ନାହାନ୍ତି, ପ୍ରାଚ୍ୟଭୂମି ଓ ପ୍ରାଚ୍ୟ ସାହତ୍ୟକୁ ମଧ୍ୟ ନିରୀକ୍ଷଣ କରିଛନ୍ତି। ସେ ଥିଲେ କଳାର ସାର୍ଥକ ପୂଜାରୀ। ସୌନ୍ଦର୍ଯ୍ୟର କୁସୁମାଳାରେ କଳାଲକ୍ଷ୍ମୀଙ୍କର ନିରାଜନା କରିବା ତାଙ୍କ ପ୍ରତିଭାର ମୂଳ ତତ୍ତ୍ୱ ଥିଲା। ଯେଉଁଠାରେ ସୁକୁମାରତାର ସୁଲଳିତ ସ୍ପର୍ଶ ସେ ପାଇଛନ୍ତି, ତାକୁ ନିଜର ଅନୁଭବରେ ରସାଣିତ କରି ପାଠକ ପାଇଁ ସଜାଇ ଦେଇଛନ୍ତି। ମେଘଦୂତରେ ଭାବାନୁସାରୀ ଭାଷା ସଂଯୋଜନା କବି କୃତିକୁ ସୁଖପାଠ୍ୟ ଓ ଅନୁଭବ୍ୟ କରିଛି। କବି ମାତ୍ରେ ସମାଜର ଜାଗ୍ରତ ପ୍ରହରୀ ଓ ସୁଦକ୍ଷ ସ୍ଥପତି। ସମାଜର ସୁରକ୍ଷା ଓ ଶ୍ରୀବୃଦ୍ଧି ନିମନ୍ତେ ତାଙ୍କର ଅବଦାନ ଏକାଧାରରେ ଅନବଦ୍ୟ ଓ ଅଭିନନ୍ଦନୀୟ। କବିବର ରାଧାନାଥ ଭାରତୀୟ ସଂସ୍କୃତିରେ ଏକ ଉପାଦାନ ଉପରେ ଗୁରୁତ୍ୱ ଆରୋପ କରି ମେଘଦୂତ ଖଣ୍ଡ କାବ୍ୟରେ ଉଲ୍ଲେଖ କରିଛନ୍ତି—

''ମହତ ଜନଠାରେ କରୁଣା କଲେ
ସେ କରୁଣା ନଯାଏ କେବେ ବିଫଳେ
ଆଶୁ ସୁଫଳ ଜାତ ନିଶ୍ଚେ ହୁଅଇ
କରୁଣା ପ୍ରଭା ପୁଣି ପ୍ରତିଫଳଇ।''

କବିଙ୍କ ଦ୍ୱାରା ରଚିତ 'ମହାଯାତ୍ରା' ମହାକାବ୍ୟ ଅମ୍ଳାନ ଦୀପ୍ତିର ଅଧିକାରୀ ପାଣ୍ଡବମାନଙ୍କୁ ଉତ୍କଳଭୂମିରେ ଆଣି ସେ ପଦାର୍ପଣ କରାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ବିଭିନ୍ନ ତୀର୍ଥ ପର୍ଯ୍ୟଟନ କରାଇଛନ୍ତି। ସେହି ଅବକାଶରେ କବି ସେହି ତୀର୍ଥଗୁଡ଼ିକର ମହତ୍ତ୍ୱ ଓ ଗୁରୁତ୍ୱ ପ୍ରସଙ୍ଗ ଅବତାରଣା କରିଛନ୍ତି।

ଭାରତୀୟ ଦର୍ଶନର ଏକ ଦିଗନ୍ତ ଉପରେ ଗୁରୁତ୍ୱ ଆରୋପ କରି କବି ଯେଉଁ ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି ତାହାର ପଟ୍ଟାନ୍ତର ନାହିଁ। କାମନା ହିଁ ଦୁଃଖର କାରଣ। କାମନାର ବିନାଶରେ ଦୁଃଖର ବିନାଶ। ଏହି ଚେତନାକୁ ଉପଜୀବ୍ୟ କରି ରାଧାନାଥ ଉଲ୍ଲେଖ କରିଛନ୍ତି –

"ଧନ୍ୟ ସେହି ଅତନ୍ଦ୍ରିତ ଋଷିବୃନ୍ଦ ଭବେ
ବିଷୟ ବିମୁଖ ହୋଇ ସାଧନ୍ତି ଯେ ସଦା
ସୁଖ ବୃଦ୍ଧି ତୃଷ୍ଣା କ୍ଷୟେ ତୃଷ୍ଣା ଲୟେ ପୁଣି
ସୀମାତୀତ-ସୁଖରାଜ୍ୟେ ବିହରନ୍ତି ମୁଦେ।"

ମହାଯାତ୍ରାର କଥାବସ୍ତୁ ଚୟନ ପ୍ରୟାସ କବିଙ୍କର ଭାରତୀୟ ସଂସ୍କୃତି ପ୍ରତି ଆନ୍ତରିକତାର ବଳିଷ୍ଠ ପ୍ରମାଣ ପ୍ରଦାନ କରେ।

'ସାବିତ୍ରୀ ଚରିତ' କବିଙ୍କର ଅନ୍ୟତମ ଖଣ୍ଡକାବ୍ୟ ଯହିଁରେ ତପସ୍ୟା, ଐକାନ୍ତିକତା, ଏକନିଷ୍ଠତା ଏବଂ ଦାମ୍ପତ୍ୟ ପ୍ରେମର ସମୁଜ୍ଜ୍ୱଳ ବର୍ଣ୍ଣବିଭା ଉଦ୍‌ଭାସିତ। ସତ୍ୟବାନଙ୍କୁ ବିପଦମୁକ୍ତ କରିବାପାଇଁ ତିନିଦିନ ଓପାସ ରହିବାପରେ ହୋମାନଳରେ ଯଥାବିଧି ଆହୁତି ଦେଇ ସାବିତ୍ରୀ ତାଙ୍କ ଶାଶୁ ଶ୍ୱଶୁରଙ୍କ ପାଦଧୂଳି ନେବାବେଳେ ଆଶୀର୍ବାଦ ଭିକ୍ଷା କରିଛନ୍ତି। ପୂଜ୍ୟପୂଜା, ଗୁରୁଜନଙ୍କୁ ସଭକ୍ତି ପ୍ରଣାମ, ବ୍ରାହ୍ମଣଙ୍କୁ ପ୍ରଣାମ, ହେଉଛି ଭାରତୀୟ ସଂସ୍କୃତିର ଏକ ଏକ ମହନୀୟ ଦିଗ ଯାହାକୁ ପ୍ରଭାବଶାଳୀ ଭାବରେ ଉପସ୍ଥାପନା କରିଛନ୍ତି କବି ରାଧାନାଥ। କବିଙ୍କ ଭାଷାରେ –

"ହୋମାନଳେ ଯଥାବିଧି ଦେଲାକ ଆହୁତି
ତଦନ୍ତେ ବିନୟେ ଯାଇ ରାଜା-ରାଣୀ ପାଖୁଁ
ପଦଧୂଳି ନେଇ ବୋଳି ହେଲା ନିଜ ମାଥେ
ବନ୍ଦୀଦ୍ୱିଜବର୍ଗେ ନେଲା ତାଙ୍କ ଆଶୀର୍ବାଣୀ।"

ନିଜସ୍ୱ ସାଧନା ବଳରେ ପ୍ରୀତିପୂଜାରିଣୀ, ମୃତ୍ୟୁ ବିଜୟିନୀ ଦେବୀ ସାବିତ୍ରୀ ମନ ଜଗତରେ ସ୍ତର ପରେ ସ୍ତର ଅତିକ୍ରମ କରି ଅବଚେତନାର ରୁଦ୍ଧ ଦୁଆର ଭାଙ୍ଗି ଅତି ମାନସର ସ୍ତରରେ ଉପନୀତ ହୋଇଥିଲେ। ମୃତ୍ୟୁର ଦେବତା ଯମଙ୍କଠାରୁ ନିଜ ସାଧନାର ଶକ୍ତି ବଳରେ ସ୍ୱାମୀଙ୍କର ଜୀବନ ଫେରାଇ ଆଣି ସେ କେବଳ ସନ୍ତୁଷ୍ଟ ହୋଇନାହାନ୍ତି ସେ ଭାରତୀୟ ଆର୍ଯ୍ୟ ଧର୍ମ ପାଳନ କରି କୁଳବଧୂର ଗୌରବଦୀପ୍ତ ଭୂମିକାର ମର୍ଯ୍ୟାଦା ରକ୍ଷା କରି ଶ୍ୱଶୁରଙ୍କର ଅନ୍ଧତ୍ୱ ଓ ଦାରିଦ୍ର୍ୟ ଦୂର କରିବାପାଇଁ ଯମରାଜଙ୍କୁ ମଧ୍ୟ ପ୍ରାର୍ଥନା କରିଛନ୍ତି। କବି ଭାଷାରେ –

"ମୋହର ପତିଙ୍କ ପିତା, ଅନ୍ଧ ରାଜଋଷି
ଲଭନ୍ତୁ ସ୍ୱଚକ୍ଷୁ, ପୁଣି ଜରାଜୀର୍ଣ୍ଣ ଦେହେ
ହେଉନ୍ତୁ ସବଳ ସୁସ୍ଥ ତେଜସ୍ୱୀ ଦୀର୍ଘାୟୁ

କହିଲେ ସାବିତ୍ରୀ ମୋର ପତିଙ୍କର ପିତା
ସ୍ୱରାଜ୍ୟ ହରାଇ ଏବେ ଦାରୁଣ କଷଣେ
ନିକ୍ଷେଷିତ ହୋଇ କାଳ କାଟନ୍ତି କୁଟୀରେ
ଲଭନ୍ତୁ ସେ ରାଜ୍ୟ ପୁଣି, ପୁଣି ଧର୍ମେ ନ୍ୟାୟେ
ପାଳନ୍ତୁ ପରଜା ଆଗେ ପାଳୁଥିଲେ ଯଥା।''

ଯମରାଜ ଏହି ପ୍ରାର୍ଥନା ପୂରଣ କରିଛନ୍ତି। ଦ୍ୟୁମତ-ସେନ ଚକ୍ଷୁ ଫେରିପାରିବା ସଙ୍ଗେ ସଙ୍ଗେ ନିଜରାଜ୍ୟ ମଧ ଫେରି ପାଇଛନ୍ତି। ଏପରି କଥାବସ୍ତୁକୁ ନେଇ ଖଣ୍ଡକାବ୍ୟ ସୃଷ୍ଟିକରିବା ମୂଳରେ କବିଙ୍କର ଭାରତୀୟ ସଂସ୍କୃତି ପ୍ରତି ଯେଉଁ ଆନ୍ତିକକତା ପ୍ରକଟିତ ତାର କଳନା ନାହିଁ।

'ଦଶରଥ ବିୟୋଗେ' ରେ ସନ୍ତାନପ୍ରତି ପିତାମାତାଙ୍କର ସ୍ନେହ ଓ ସନ୍ତାନର ପିତାମାତାଙ୍କ ପ୍ରତି ଭକ୍ତିଭାବ ଅତ୍ୟନ୍ତ ସ୍ୱଷ୍ଟଭାବରେ ଉପସ୍ଥାପିତ। ସମାଜକୁ ଉଦ୍‌ଭ୍ରାନ୍ତ କରିବା ପରିବର୍ତ୍ତେ ବରଂ ଉପକୃତ କରାଇବାର ପ୍ରୟାସ ଏଥିରେ ଲକ୍ଷ୍ୟଣୀୟ। ରାମାୟଣରୁ ଉକ୍ତ କାହାଣୀଟିକୁ କବି ସଂଗ୍ରହ କରିଛନ୍ତି। ଭାରତୀୟ ପରଂପରାରେ ସନ୍ତାନର ପିତାମାତାଙ୍କ ପ୍ରତି କର୍ତ୍ତବ୍ୟ ଶେଷ ପର୍ଯ୍ୟନ୍ତ ରହିଛି। ଏହି ପ୍ରସଙ୍ଗ ଉପରେ କବି ରାଧାନାଥ ଗୁରୁତ୍ୱ ଦେଇଛନ୍ତି। ବାତ୍ସଲ୍ୟ ସ୍ନେହର ମନ୍ଦାକିନୀ ଧାରାରେ ଉପସିକ୍ତ ଉକ୍ତ କୃତିର ଭିତ୍ତିଭୂମି। ଅନ୍ଧ ମୁନିଙ୍କ ମୁଖରେ କବି କହିଛନ୍ତି—

''ରଙ୍କର ତୁ ନିଧିବାବୁ, ବୃଦ୍ଧର ଲଉଡ଼ି
ଅଚକ୍ଷୁର ଚକ୍ଷୁ ତୁହି, ଅଗତିର ଗତି
ରହିଛନ୍ତି ଆଜିଯାଏ ତୋହଯୋଗୁ ସିନା
ଏ ଅନ୍ଧ ଅନ୍ଧୁଣୀ, ବାବୁ, ଜୀବନେ ବରତି।''

କବିବର ରାଧାନାଥ ଉପରୋକ୍ତ ପ୍ରସଙ୍ଗମାନ ଉପସ୍ଥାପନା ପୂର୍ବକ କେବଳ ଯେ ଭାରତୀୟ ଚେତନାର ନିର୍ମଳ ନିରାଜନା କରିଛନ୍ତି ତାହାନୁହେଁ, ଶ୍ରୀଜଗନ୍ନାଥ ସଂସ୍କୃତି ଉପରେ ଗୁରୁତ୍ୱ ଆରୋପ କରି ସେ ମଧ ଭାରତୀୟ ଭାବଧାରାରେ ଭାବିତ ହୋଇଛନ୍ତି। ଶ୍ରୀଜଗନ୍ନାଥ ଓଡ଼ିଶାରେ ନୀଳାଚଳରେ ସିଂହାସନାସୀନ ହେଲେ ହେଁ, ସେ କେବଳ ଓଡ଼ିଶାର ନୁହନ୍ତି, ସମଗ୍ର ଭାରତର ଦେବତା ଭାବରେ ଗୃହୀତ ଓ ପୂଜିତ। ସବୁ ସଂପ୍ରଦାୟର ମହାମିଳନ ପୀଠ ଭାବରେ ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର ହେଉଛି କ୍ଷେତ୍ରରାଜ ନାମରେ ନାମିତ। ଶ୍ରୀଜଗନ୍ନାଥ ସବୁ ଦେବତାଙ୍କ ମଧରେ ଶ୍ରେଷ୍ଠତ୍ୱର ଅଧିକାରୀ। ତେଣୁ କୁହଯାଇଛି ସଂସ୍କୃତରେ—

''ସର୍ବେଷାଂ ସର୍ବକ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ
ସର୍ବେଷାଂ ସର୍ବ ଦେବାଂନାଂ ରାଜା ପୁରୁଷୋତ୍ତମଃ।''

ଶ୍ରୀ. ଜଗନ୍ନାଥ ମହାପ୍ରଭୁ ହେଉଛନ୍ତି ସମନ୍ୱୟ ଚେତନାର ଦେବତା। ଅନ୍ୟ ଦେବଦେବୀଙ୍କର ସେ ଆରାଧ। ଚନ୍ଦ୍ରଭାଗା କାବ୍ୟରେ କବିବର ରାଧାନାଥ ଶ୍ରୀଜଗନ୍ନାଥଙ୍କର

ରାମାଭିଷେକ ଉତ୍ସବ ବର୍ଣ୍ଣନା ଅବକାଶରେ କେତେକେ ଦେବଦେବୀଙ୍କର ସମାବେଶ ସଂପର୍କରେ ଉଲ୍ଲେଖ କରିଛନ୍ତି। ହରଚଣ୍ଡୀ, ଭଗବତୀ, ଭୁବନେଶ୍ୱରୀ, ମୈନାକଦୁର୍ଗା, କଟକଚଣ୍ଡୀ, ଚର୍ଚ୍ଚିକା, ମଙ୍ଗଳା, କାଳିଜାଈ, ସୂର୍ଯ୍ୟ, ରତି, କନ୍ଦର୍ପ ଆଦି ବହୁ ଦେବଦେବୀ ସମବେତ ହୋଇଛନ୍ତି ସିଂହଦ୍ୱାରରେ। ଏହି ପ୍ରସଙ୍ଗରୁ ସମନ୍ୱୟ ଚେତନା ସଂପର୍କରେ ଯେଉଁ ସୂଚନା ମିଳେ ତାହାହିଁ ଭାରତୀୟ ସଂସ୍କୃତିର ନିର୍ମଳ ନିର୍ଯ୍ୟାସ।

କବି ପ୍ରତିଭାର ସ୍ୱର୍ଣ୍ଣିମ ଆଲେଖ୍ୟ ଅଙ୍କିତ ଅନ୍ୟ ଏକ ଖଣ୍ଡ କବିତା 'ତୁଳସୀ ସ୍ତବକରେ'। ଏହା ବର୍ଷା ଓ ଶରତ ଶିରୋନାମାରେ ଦୁଇଭାଗରେ ବିଭକ୍ତ। ଏଥିରେ ତୁଳସୀଦାସଙ୍କ ରାମଚରିତ ମାନସର ପ୍ରଭାବ ସ୍ପଷ୍ଟ ହେଲେ ହେଁ କବିଙ୍କର ଏପରି ଏକ ବିଷୟ–ବସ୍ତୁ ଚୟନ ମୂଳରେ ଥିବା ଆନ୍ତରିକତା ଯେ ଅତ୍ୟନ୍ତ ଆକର୍ଷଣୀୟ ଏଥିରେ ସନ୍ଦେହ ନାହିଁ। ଭାରତୀୟ ସଂସ୍କୃତି ପ୍ରତି ସୀମାହୀନ ଅନୁରକ୍ତିର ଅକପଟ ଅଭିବ୍ୟକ୍ତି ଏଥିରେ ସୁଲଭ। ଭାରତୀୟ ଚେତନାର ନବନିର୍ମାଣ ତଥା ନବମୂଲ୍ୟାୟନ ନିମନ୍ତେ କବିଙ୍କର ପ୍ରୟାସ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ଏହି ଖଣ୍ଡକାବ୍ୟଟି ଜୀବନବାଦୀ କାଳଜୟୀ ଏକ ସାରସ୍ୱତ କୃତି କହିଲେ ଅତ୍ୟୁକ୍ତି ହେବନାହିଁ। ବଞ୍ଚିବାର ଯଥାର୍ଥ କଳା ସଂପର୍କରେ ଏଥିରେ କେତେକ ତଥ୍ୟ ଉପସ୍ଥାପିତ ଯାହା ଭାରତୀୟ ସଂସ୍କୃତିର ମହନୀୟ ଦିଗନ୍ତର ଅନ୍ତର୍ଭୁକ୍ତ। ଏଥିରେ ରାଧାନାଥ ନିଜକୁ ନିଜେ ଅତିକ୍ରମ କଲାପରି ମନେହୁଏ। ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ସ୍ୱଧର୍ମପାଳନ ପୂର୍ବକ ନିଜ ମାଟି ଉପରେ ପାଦ ଥାପିବାକୁ କବି ଯତେ ଯେପରି ଆହ୍ୱାନ କରିଛନ୍ତି। ଭୂମି ସହିତ ଭୂମାଙ୍କର ସଂଯୋଗ ପାଇଁ ସୁବର୍ଣ୍ଣ ସେତୁ ହୋଇଛି ଉକ୍ତ କାବ୍ୟ। ଈଶ୍ୱରାନୁଚିନ୍ତା ସଂପର୍କରେ ପ୍ରସଙ୍ଗକ୍ରମେ କବି କେତେକ ପଂକ୍ତି ଏଥିରେ ଉପସ୍ଥାପନା କରିଛନ୍ତି। ଜୀବନରେ ନୈତିକତା, ଧାର୍ମିକ ଭାବନା, ତଥା ମାନବିକତାର ସୁମିଷ୍ଟ ସ୍ପର୍ଶ ସମ୍ବନ୍ଧରେ କବି ଯାହାସବୁ ଉଲ୍ଲେଖ କରିଛନ୍ତି ସେସବୁ ପ୍ରଣିଧାନଯୋଗ୍ୟ। ଜୀବନକୁ ସୁସ୍ଥ ସୁନ୍ଦର କରିବା ପାଇଁ ସତେ ଯେମିତି ରାଧାନାଥ ଲୋକ ଶିକ୍ଷକର ଭୂମିକାରେ ଅବତୀର୍ଣ୍ଣ। ଏଥିରେ ପାଶ୍ଚାତ୍ୟ ଭୂମିର ତତ୍ତ୍ୱ ଉପରେ ଗୁରୁତ୍ୱ ଅରୋପିତ ନ ହୋଇ ଭାରତୀୟ ଚିନ୍ତା ଓ ଚେତନା ପ୍ରତି ଆନ୍ତରିକତା ପ୍ରକଟିତ ହୋଇଛି। ଏହି ଖଣ୍ଡ କାବ୍ୟରୁ କବିଙ୍କର ଭାରତୀୟ ସଂସ୍କୃତପ୍ରତି ଅନୁରକ୍ତି ସଂପର୍କରେ ସମ୍ୟକ ଧାରଣା କରିହୁଏ।

'ଶିବାଜୀଙ୍କ ଉତ୍ସାହବାକ୍ୟ' ଶୀର୍ଷକ ଅନ୍ୟ ଏକ କବିତାରେ କବିଚିତ୍ତର ମହନୀୟ ଦିଗନ୍ତ ଉନ୍ମୋଚିତ ଓ ଉପସ୍ଥାପିତ। ଏହା ଏକ ଉଦ୍‌ବୋଧନ ମୂଳକ କବିତା। ଏଥିରେ ଭାରତ ଭୂମିର ମହତ୍ତ୍ୱ ଓ ଗୁରୁତ୍ୱ ପ୍ରତିଷ୍ଠାପ୍ରାପ୍ତ। ଶିବାଜୀଙ୍କ ମୁଖରେ ଯେଉଁ ଉତ୍ସାହବାଣୀ କବି ପ୍ରଦାନ କରିଛନ୍ତି ତାହା ଏକାଧାରରେ ଅବିସ୍ମରଣୀୟ ଓ ଅନୁଭବ୍ୟ। ଭାରତର ଜୟଗୀତିରେ ବିମୁଗ୍ଧ କବିକଣ୍ଠ ଶିବାଜୀଙ୍କ ସ୍ୱରସହ ସ୍ୱର ମିଳାଇ ଗାଇଉଠିଛି -

"ଏ ଭାରତଭୂମି ଆମ୍ଭର ଜନନୀ
ପୁଣ୍ୟ ଭୂମି ସରି ନାହିଁ ଏହାର
ଅମୂଲ୍ୟ ଦୁର୍ଲ୍ଲଭ ରତନର ଖଣି
ସବୁଦେଶ ମଧ୍ୟେ ଏ ଦେଶ ସାର।"

ଭାରତପ୍ରତି ସୀମାହୀନ ମମତା ନଥିଲେ ସ୍ୱଷ୍ଟଭାବରେ ଏପରି ଭାବସମ୍ବଳିତ ପଦମାଳା ତାଙ୍କ ଲେଖନୀରେ ଆତ୍ମପ୍ରକାଶ କରିନଥାନ୍ତା। ଅତଏବ ବିଭିନ୍ନ ଦୃଷ୍ଟିରୁ ବିଚାରକଲେ ଏହା ପ୍ରତିପାଦିତ ଯେ ରାଧାନାଥ କେବଳ ସୁଷମାର ଗ୍ରାହକ ନୁହନ୍ତି, କେବଳ ଉତ୍କଳୀୟ ପ୍ରକୃତି ଶୋଭାର ସାର୍ଥକ ଚିତ୍ରକର ନୁହନ୍ତି। କେବଳ ପ୍ରୀତି ପ୍ରବଣତାର ସ୍ୱର୍ଣ୍ଣିମ ସ୍ୱାକ୍ଷର ନୁହନ୍ତି। ସେ ମଧ୍ୟ ମହାଭାରତୀୟ ଚେତନାରେ ବହୁଭାବରେ ଅନୁପ୍ରାଣିତ ଏକ ବିଶିଷ୍ଟ ବ୍ୟକ୍ତିତ୍ୱ।

□ □ □

# ରାଧାନାଥଙ୍କ ସାହିତ୍ୟରେ ଆଧ୍ୟାତ୍ମିକତା ଓ୍ ନୈତିକତା

ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର

ଆଧ୍ୟାତ୍ମିକତା ଓ ନୈତିକତା ହେଉଛି ଭାରତୀୟ ସମାଜର ମୂଳଭିତ୍ତି। ପ୍ରତ୍ୟେକ ଭାରତୀୟ ଆଜନ୍ମ ଈଶ୍ୱର ବିଶ୍ୱାସୀ ଓ ନୀତିନିଷ୍ଠ। ସାହିତ୍ୟ ସମାଜରେ ପ୍ରତିବିମ୍ବ ହୋଇଥିବାରୁ ଯୁଗେ ଯୁଗେ ଭାରତୀୟ ସାହିତ୍ୟରେ ଆଧ୍ୟାତ୍ମିକତା ଓ ନୈତିକତାର ସ୍ୱର ଓ ଝଙ୍କାର ସୃଷ୍ଟି ହୋଇଛି। ବେଦ, ଉପନିଷଦ, ସଂହିତାଠାରୁ ଆରମ୍ଭ କରି ପୁରାଣ, କାବ୍ୟ ଓ ନାଟକ ପର୍ଯ୍ୟନ୍ତ ପ୍ରତ୍ୟେକ ସାହିତ୍ୟରେ ପରିଲକ୍ଷିତ ହୋଇଛି ଆଧ୍ୟାତ୍ମିକତାର ପ୍ରତିଧ୍ୱନି। ମନୁଷ୍ୟ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ ହେଉଛି ଈଶ୍ୱରଙ୍କ ଅନୁସନ୍ଧାନ। ସେହି ପରମାତ୍ମାଙ୍କର ସତ୍ତା ଆତ୍ମାରୂପରେ ମନୁଷ୍ୟ ହୃଦୟରେ ବିଦ୍ୟମାନ। ଆତ୍ମତତ୍ତ୍ୱକୁ ଉପଲବ୍ଧି କଲାପରେ ମନୁଷ୍ୟ ପରମାତ୍ମାକୁ ଅକ୍ଳେଶରେ ଅନୁଭବ କରିପାରିବ। ଏହି ଆଧ୍ୟାତ୍ମିକତାର ଉପଲବ୍ଧି ପାଇଁ ଧାର୍ମିକ ଓ ନୈତିକ ଜୀବନଯାପନ କରିବା ପ୍ରାଥମିକ ସୋପାନ। ସେହି କାରଣରୁ ଆଧ୍ୟାତ୍ମିକତା ଓ ନୈତିକତା ପରସ୍ପର ସମ୍ବନ୍ଧାନ୍ୱିତ।

ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ମଧ୍ୟଯୁଗରେ ବିଶେଷ ଭାବରେ ଦେଖାଦେଇଥିଲା ଆଧ୍ୟାତ୍ମିକ ଚେତନା। ଏହି ସମୟରେ ରାମାୟଣ, ମହାଭାରତାଦି ପୁରାଣର ଓଡ଼ିଆ ରୂପାନ୍ତର ହେବା ସଙ୍ଗେ ସଙ୍ଗେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, କାୟାସାଧନା ଓ ଶୂନ୍ୟସାଧନା ପ୍ରଭୃତି ଆତ୍ମ ପରମାତ୍ମା ତତ୍ତ୍ୱ ସମ୍ବଳିତ ସାହିତ୍ୟ ରଚନା କରାଯାଇଥିଲା। ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗରେ ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ପାଶ୍ଚାତ୍ୟ ସାହିତ୍ୟଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ ହୋଇଥିଲେ ହେଁ ଭାରତୀୟ ସାହିତ୍ୟର ମୂଳ ଅନ୍ତଃସ୍ୱରରୁ ବିଚ୍ୟୁତ ହୋଇନଥିଲେ। ତାଙ୍କର ସାହିତ୍ୟରେ ସୌନ୍ଦର୍ଯ୍ୟଚେତନା, ରୂପପିପାସା ଓ ପ୍ରକୃତିପ୍ରାଣତା ପରିଲକ୍ଷିତ ହୋଇଥିଲେ ହେଁ ଆଧ୍ୟାତ୍ମିକତା ଊଣା ଭାବେ ପରିଦୃଷ୍ଟ ହୁଏ ନାହିଁ।

ଆଧ୍ୟାତ୍ମିକ ଶବ୍ଦର ବ୍ୟୁତ୍ପତ୍ତି କଲେ ଜଣାଯାଏ ଅଧି + ଆତ୍ମା + ଇକ। ଅର୍ଥାତ୍ ଯେଉଁ ଶକ୍ତି ଆତ୍ମାକୁ ଅଧିକାର କରି ରଖିଛି ତତ୍ ସମ୍ବନ୍ଧୀୟ। ଆତ୍ମାକୁ ଅଧିକାର କରି ରଖିବାର ଶକ୍ତି ହେଉଛି ପରମାତ୍ମା। ତେଣୁ ପରମାତ୍ମାଙ୍କ ସମ୍ବନ୍ଧୀୟ ଜ୍ଞାନ ହେଉଛି ଆଧ୍ୟାତ୍ମିକ ଜ୍ଞାନ। ଈଶ୍ୱରୀୟ ଜ୍ଞାନଲାଭ ଓ ଭଗବତପ୍ରାପ୍ତି ପାଇଁ ପ୍ରଥମ ସୋପାନ ହେଉଛି ସଂସାର ପ୍ରତି ବୈରାଗ୍ୟଭାବ ସ ବିଷୟତୃଷ୍ଣା ପିରତ୍ୟାଗ। ମନୁଷ୍ୟ ସାଂସାରିକ ବିଷୟତୃଷ୍ଣାରେ ଜଡ଼ିତ ହେଲେ ଈଶ୍ୱରଙ୍କଠାରୁ କ୍ରମଶଃ ଦୂରେଇ ଯାଏ।

ଈଶ୍ୱରଙ୍କ ପ୍ରତି ଅନୁରକ୍ତି ଆସିଲେ ଧୀରେ ଧୀରେ ବିଷୟ ତୃଷ୍ଣା କ୍ଷୟ ହୋଇଯାଏ। ମନୁଷ୍ୟ ପାର୍ଥିକ ବିଷୟର ନଶ୍ୱରତା ଓ କ୍ଷଣଭଙ୍ଗୁରତା ସମ୍ପର୍କରେ ସଚେତନ ହେଲେ ତା ହୃଦୟରେ ବୈରାଗ୍ୟ ସୃଷ୍ଟି ହୋଇଥାଏ। ରାଧାନାଥଙ୍କର ମହାଯାତ୍ରାରେ ଯୁଧିଷ୍ଠିର ହିମାଳୟଯାତ୍ରା ପୂର୍ବରୁ ନିଜର ଭ୍ରାତା ଓ ପତ୍ନୀଙ୍କୁ ପୃଥିବୀର ନଶ୍ୱରତା ସମ୍ପର୍କରେ ସୂଚନା ଦେଇ ମୁନିଋଷିମାନଙ୍କ ଶାଶ୍ୱତ ସୁଖ ସନ୍ଧାନ ବିଷୟରେ ବର୍ଣ୍ଣନା ଦେଇଥାନ୍ତି –

''ଭଙ୍ଗୁର ଭବର, ଭାଇ, ସୁଖ ଏହିପରି !
ଧନ୍ୟ ସେହି ଅତିନ୍ଦ୍ରିତ-ଋଷିବୃନ୍ଦ ଭବେ
ବିଷୟ ବିମୁଖ ହୋଇ ସାଧନ୍ତି ଯେ ସଦା,
ସୁଖ ବୃଦ୍ଧି ତୃଷ୍ଣାକ୍ଷୟେ ତୃଷ୍ଣାକ୍ଷୟେ ପୁଣି
ସୀମାତୀତ-ସୁଖରାଜ୍ୟେ ବିହରନ୍ତି ମୁଦେ,
ନିରୁଦ୍‌ବେଗେ ରହନ୍ତି ସେ କାଳକୁ ଅନାଇ।'' (ମହାଯାତ୍ରା)

ଋଷିବୃନ୍ଦ ସଦାସର୍ବଦା ଜାଗ୍ରତ ଅବସ୍ଥାରେ ଥାନ୍ତି। ତେଣୁ ସଂସାରର ମାୟା ସେମାନଙ୍କୁ ସ୍ପର୍ଶ କରିପାରେ ନାହିଁ। ପୃଥିବୀର କ୍ଷଣଭଙ୍ଗୁରତା ସମ୍ପର୍କରେ ସେମାନେ ସଚେତନ ଥାଆନ୍ତି। ସାଧାରଣ ବ୍ୟକ୍ତି ସାଂସାରିକ ଭୋଗ ବିଳାସର ସାମଗ୍ରୀ ସଂଗ୍ରହ କରି ତହିଁରେ ସୁଖର ଅନୁସନ୍ଧାନ କରିଥାଏ। ମାତ୍ର ତହିଁରେ ପ୍ରକୃତ ସୁଖର ସନ୍ଧାନ ମିଳେ ନାହିଁ। ଋଷିବୃନ୍ଦ ଏହି ବିଷୟତୃଷ୍ଣାକୁ ପରିତ୍ୟାଗ କରି ଅନନ୍ତ ସୁଖରାଜ୍ୟରେ ବିଚରଣ କରି ଥାଆନ୍ତି। ପୃଥିବୀର ସମସ୍ତ ପ୍ରାଣୀଙ୍କୁ କାଳ ବା ମୃତ୍ୟୁଚେତନା ଭୟଭୀତ କରିଥାଏ। ମାତ୍ର ମୁନିଋଷିବୃନ୍ଦଙ୍କୁ ଏହା ଭୟଭୀତ ଓ ଉଦ୍‌ବିଗ୍ନ କରିପାରେ ନାହିଁ। କାରଣ ସେମାନେ ଅମୃତ ଲୋକରେ ପରମାତ୍ମାଙ୍କର ସନ୍ଧାନ ପାଇ ସାରିଥାନ୍ତି।

ପ୍ରତ୍ୟେକ ମନୁଷ୍ୟ ଏହି ମର ସଂସାରରେ ଚିରକାଳ ବଞ୍ଚି ରହିବାକୁ ବାଞ୍ଛାକରେ। ତାର ସମ୍ମୁଖରେ ପ୍ରତ୍ୟହ କେହି ନା କେହି ମରୁଥିବାର ଦେଖୁଥିଲେ ହେଁ ସେ ନିଜେ ମୃତ୍ୟୁର ଶିକାର ହେବ ନାହିଁ ଏହିପରି ଦମ୍ଭୋକ୍ତି କରେ। ମାତ୍ର ମହାବଳୀ ଭୀମଙ୍କର ଗଦା ଓ ବିଶ୍ୱଜୟୀ ଅର୍ଜ୍ଜୁନଙ୍କର ଧନୁଠାରୁ ମଧ୍ୟ କାଳ ମହାବଳୀ। ସେ ତାର ଗର୍ଭରେ ସମସ୍ତଙ୍କୁ ଗ୍ରାସ କରିଦେବ। ଜନନୀର ଜଠରରୁ ଶିଶୁ ଭୂମିଷ୍ଠ ହେବାମାତ୍ରେ କାଳ ତାର ଗଳାରେ ଗୁପ୍ତ ଫାଶ ଲଗାଇ ଟାଣିବାକୁ ଆରମ୍ଭ କରିଥାଏ। ମୃତ୍ୟୁ ସମୟରେ ଏହି ଫାଶ ଓଟାରିବାର ଶେଷ ହୁଏ। ବାର୍ଦ୍ଧକ୍ୟ ସମୟରେ ଶରୀରର ବିବିଧ ରୋଗବ୍ୟାଧି ଦେଖାଦେଇ ମନୁଷ୍ୟକୁ ଅସ୍ତବ୍ୟସ୍ତ କରିପକାଏ। ତେଣୁ ସେ ସ୍ୱତଃ ମୃତ୍ୟୁକୁ ସ୍ୱାଗତ କରିଥାଏ। କବି ତାଙ୍କର 'ଦରଦାର' କାବ୍ୟରେ ସୂଚନା ଦେଇଛନ୍ତି ମନୁଷ୍ୟ ଅଜ୍ଞାନ ଓ ଦମ୍ଭର ବଶବର୍ତ୍ତୀ ହୋଇ ପୃଥିବୀରେ ନିଜର ପ୍ରଭୁତ୍ୱ ବିସ୍ତାର କରିବାକୁ ଚେଷ୍ଟିତ ହୁଏ। ମାତ୍ର ତାର ଶରୀର କ୍ଷଣସ୍ଥାୟୀ ଓ ରୋଗ ବ୍ୟାଧିଦ୍ୱାରା ଆକ୍ରାନ୍ତ ହୋଇ ଦିନେ ନା ଦିନେ ନଷ୍ଟ ହେବ ସେଥିପାଇଁ ଚିନ୍ତା କରି ନଥାଏ। କବିଙ୍କ ଭାଷାରେ –

"ବୃଥା ବହି ଏହି ଭଙ୍ଗୁର ରୋଗଭୂ
ମଣ ଆପଣାକୁ ଜଣେ ଜଣେ ପ୍ରଭୁ।
ରୋଗ ବ୍ୟାଜେ କାଳ ଥରେ ଥରେ ଚୁଟି,
ଝିଙ୍କି ଦେଲେ, ଏହି ଦର୍ପ ଯାଏ ତୁଟି।"   (ଦରବାର)

ମନୁଷ୍ୟର ସମସ୍ତ ଅହମିକାକୁ ପଦଦଳିତ କରି କାଳର ଦୂତ ସ୍ୱରୂପ ରୋଗବ୍ୟାଧିଗଣ ମନୁଷ୍ୟକୁ ଗ୍ରାସ କରନ୍ତି ଓ ତାକୁ ମୃତ୍ୟୁର ଗହ୍ୱରକୁ ନେଇଯାଆନ୍ତି। ଏହି ପୃଥିବୀରେ ମନୁଷ୍ୟ ଚିରକାଳ ରହିପାରିବ ନାହିଁ। ଏହା 'ଭବଚଟି' ବା ପାନ୍ଥନିବାସ ପରି। ପଥିକ ଏଠାରେ ସୀମିତ ସମୟପାଇଁ ରହେ, ପୁଣି ଚାଲିଯାଏ। ବସୁନ୍ଧରା ହେଉଛି କର୍ମଭୂମି। ଏହି ଭୂମିରେ ମନୁଷ୍ୟ ନିଜ ନିଜର ଅଭିନୟ ସାରିଲା ପରେ ଚାଲିଯିବାକୁ ବାଧ୍ୟ ହୋଇଥାଏ। ତେଣୁ କବିଙ୍କ ଭାଷାରେ –

"କେହି ରହିନାହିଁ ରହିବ ନାହିଁଟି ଭବରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ।"   (ପାର୍ବତୀ)

ଯେଉଁ ବ୍ୟକ୍ତି ଚିରକାଳ ପାଇଁ ମର୍ତ୍ତ୍ୟରେ ରହି ପ୍ରଭୁତ୍ୱ ବିସ୍ତାର କରିବାକୁ ଚାହେଁ ତାଠାରୁ ଅଜ୍ଞାନ ବ୍ୟକ୍ତି ଆଉ କେହି ନାହାନ୍ତି। ମନୁଷ୍ୟ ହୃଦୟରେ ଏହିସବୁ ଭାବର ଉଦ୍ରେକ ଘଟିଲେ ବୈରାଗ୍ୟ ସୃଷ୍ଟି ହୋଇଥାଏ। ଆଧ୍ୟାତ୍ମିକତା ସାଧନାରେ ଅଗ୍ରଗତି କରିବାକୁ ହେଲେ ବିବିଧ ପନ୍ଥା ଅନୁସରଣ କରିବାକୁ ପଡ଼ିଥାଏ। 'ମହାଯାତ୍ରା'ରେ ଯୁଧିଷ୍ଠିର ହିମାଳୟ ଗମନ କରିବା ସମୟରେ ବିବିଧ ତୀର୍ଥ–କ୍ଷେତ୍ର ପର୍ଯ୍ୟଟନ କରିଛନ୍ତି। ଏହି ସମୟରେ ନୈମିଷ୍ୟାରଣ୍ୟରେ ମୁନିଋଷିବୃନ୍ଦ କି–ଭଳି ଆଧ୍ୟାତ୍ମିକ ସାଧନାରେ ନିରନ୍ତର ବ୍ରତୀ ଅଛନ୍ତି ତାର ବର୍ଣ୍ଣନା କବି ଦେଇଛନ୍ତି –

"ଯତୀନ୍ଦ୍ରେ ଆଧ୍ୟାତ୍ମବାଦୀ ଅବିରତେ ରତ
ଯହିଁ ଆଧ୍ୟାତ୍ମିକ ଯାଗେ, ହୃଦ ବେଦୀ ଯହିଁ
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀ ସ୍ୱରୂପିଣୀ,
ତପବହ୍ନି, କାମ ଆଜ୍ୟ, କ୍ରୋଧ ଯଜ୍ଞ ପଶୁ,
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ବଚନ ଉଦ୍‌ଗାତା
ସୋମରସ ସୁମଧୁର ଭକ୍ତି ଅଧୋକ୍ଷଜେ।"   (ମହାଯାତ୍ରା)

ଆଧ୍ୟାତ୍ମ ସାଧନାକୁ କବି ଏଠାରେ ଏକ ଯଜ୍ଞ ସହିତ ତୁଳନା କରିଛନ୍ତି। ହୃଦୟ ରୂପକ ବେଦୀରେ ଏହି ଯଜ୍ଞର ଅନୁଷ୍ଠାନ ହୋଇଥାଏ। ଆତ୍ମା ପାଇଁ ହିଁ ଅଧ୍ୟାତ୍ମ ସାଧନାର ଆବଶ୍ୟକତା ହୋଇଥାଏ। ତେଣୁ ଏହି ଯଜ୍ଞର ଯଜମାନ ହେଉଛି ଆତ୍ମା। ମନୁଷ୍ୟ ଶ୍ରଦ୍ଧାବଳରେ ଏହି ଜ୍ଞାନ ଯଜ୍ଞରେ ଅଗ୍ରଗତି କରିଥାଏ। ତେଣୁ ଶ୍ରଦ୍ଧା ହେଉଛି ପତ୍ନୀ। ଯଜ୍ଞ କୁଣ୍ଡରେ ଅହରହ ଅଗ୍ନି ପ୍ରଜ୍ୱଳିତ ହେଉଥାଏ। ତହିଁରେ ଘୃତାହୁତି ଦିଆଯାଏ ଏବଂ ପଶୁବଳି ପ୍ରଦାନ କରାହୁଏ। ଆଧ୍ୟାତ୍ମ ଯଜ୍ଞରେ ତପସ୍ୟା ଅଗ୍ନି

ସଦୃଶ। ଅଗ୍ନି ଯେପରି ଅହରହ ଜଳୁଥାଏ ସେହିପରି ନିରନ୍ତର ତପସାଧନା ନକଲେ ଈଶ୍ୱରଙ୍କର ସନ୍ଧାନ ହୋଇପାରେ ନାହିଁ। ମନୁଷ୍ୟ ହୃଦୟରେ ଥିବା କାମନା ଓ ବିଷୟବାସନାକୁ ସମ୍ପୂର୍ଣ୍ଣ ଭାବରେ ଆହୁତି ଦେବାକୁ ହେବ। ନଚେତ୍ ଈଶ୍ୱର ପ୍ରାପ୍ତି ଅସମ୍ଭବ। ତେଣୁ କବି ଏଠାରେ 'କାମନା'କୁ ଘୃତାହୁତି ସହିତ ତୁଳନା କରିଛନ୍ତି। ଅଧ୍ୟାତ୍ମ ସାଧନାରେ କ୍ରୋଧକୁ ମଧ୍ୟ ପରିତ୍ୟାଗ କରିବା ଆବଶ୍ୟକ। ତେଣୁ କବି ଅଧ୍ୟାତ୍ମ ଯଜ୍ଞ ପାଇଁ କ୍ରୋଧକୁ ଯଜ୍ଞପଶୁ ସହିତ ତୁଳନା କରିଛନ୍ତି। ଯଜ୍ଞରେ ପଶୁକୁ ଯେପରି ବଳି ଦିଆଯାଏ ସେହିପରି ମୁନିଋଷିବୃନ୍ଦ କ୍ରୋଧକୁ ବଳି ଦେଇଛନ୍ତି। ଯଜ୍ଞରେ ଯୂପକାଠ ଯେପରି ସ୍ଥିର ସେହିପରି ଅବିଚଳିତ ଧୈର୍ଯ୍ୟ ସହକାରେ ଏହି ସାଧନାରେ ବ୍ରତୀ ହେବାକୁ ହେବ। ବିଷ୍ଣୁଙ୍କର ଭକ୍ତି ଏହି ଯଜ୍ଞରେ ସୋମରସ ସଦୃଶ। ଯଜ୍ଞପରେ ମଧୁର ସୋମରସ ଯେପରି ପାନ କରାଯାଏ ସେହିପରି ବିଷ୍ଣୁ ଭକ୍ତିରୂପକ ରସ ସର୍ବଦା ପାନ କଲେ ମନୁଷ୍ୟ ଅଧ୍ୟାତ୍ମ ସାଧନାରେ ସିଦ୍ଧିଲାଭ କରି ପାରିବ।

କବି ରାଧାନାଥ ଯେଉଁ ଯେଉଁ କ୍ଷେତ୍ରରେ ଧର୍ମ ବିଷୟରେ ଆଲୋଚନା କରିଛନ୍ତି ସେହି ସ୍ଥଳରେ ସଂକୀର୍ଣ୍ଣତା ଓ ସାମ୍ପ୍ରଦାୟିକତାର ଗଣ୍ଡି ଭିତରୁ ସମ୍ପୂର୍ଣ୍ଣ ଦୂରରେ ରହିଛନ୍ତି। ଧର୍ମକୁ ଏକ ଉଦାର ଓ ସାର୍ବଜନୀନ ଦୃଷ୍ଟିକୋଣରୁ ବିଚାର କରିଛନ୍ତି। ମନୁଷ୍ୟ ସାଧାରଣ ଦୁନିଆଁରେ ବାସକରୁଥିବା ପର୍ଯ୍ୟନ୍ତ ତା ମନରେ ଉଚ୍ଚ ନୀଚ ପ୍ରଭୃତି ଭେଦଭାବ ଦେଖାଦିଏ। ମାତ୍ର ଧର୍ମରୂପକ ପର୍ବତ ଶିଖରକୁ ଉଠିଗଲା ପରେ ତା ହୃଦୟରେ ସାମ୍ୟଭାବ ଆସିଥାଏ ଓ ସଂକୀର୍ଣ୍ଣତା ଲୋପପାଏ। ଏହା ସୂଚାଇ କବି 'ଦରବାର' କାବ୍ୟରେ କହିଛନ୍ତି –

''ଚାହିଁଲେ ଯେସନ ଶଇଳ ଶିଖରୁ,
ସମଦିଶେ ମହୀସ୍ଥିତ ତୃଣତରୁ,
ଧର୍ମକ୍ଷେତ୍ରେ ସାନ ବଡ଼ ଦୁନିଆଁର।
ଦୂରୁଁ ସବୁ ସିନା ଦିଶେ ଏକାକାର।'' (ଦରବାର)

କବିଙ୍କର 'ତିନିବନ୍ଧୁ' କବିତାରେ ଧର୍ମକୁ ମନୁଷ୍ୟର ଶ୍ରେଷ୍ଠ ବନ୍ଧୁ ଭାବରେ ଚିତ୍ରଣ କରିଛନ୍ତି। କାରଣ ଅନ୍ୟ ସମସ୍ତ ବନ୍ଧୁ କେବଳ ଇହକାଳରେ ମନୁଷ୍ୟର ସହାୟକ ହୋଇଥାଆନ୍ତି। ମାତ୍ର ମୃତ୍ୟୁକାଳ ଉପସ୍ଥିତ ହେଲେ କେହି ହେଲେ ସହୟତା କରିପାରନ୍ତି ନାହିଁ। ଧନ କେବଳ ଗୃହ ଭିତରେ ପଡ଼ିରହେ, ଆତ୍ମୀୟସ୍ୱଜନ ଶ୍ମଶାନଭୂମି ପର୍ଯ୍ୟନ୍ତ ଅତି ବେଶୀରେ ଯାଇ ପାରନ୍ତି। ମାତ୍ର ଧର୍ମ, ଯାହାକୁ ମନୁଷ୍ୟ ଜୀବନ ଥିବାଯାଏ ପାଶୋରି ଯାଇଥିଲା ସେ ହିଁ ମୃତ୍ୟୁପରେ ତା ସହିତ ଯମାଳୟ ପର୍ଯ୍ୟନ୍ତ ଯାଏ ଏବଂ ଯମ ଦରବାରରେ ତା ପାଇଁ ଗୁହାରି କରି ତାକୁ ଉଦ୍ଧାର କରିଥାଏ। ତେଣୁ କବି ଧର୍ମକୁ ସବୁଠାରୁ ଶ୍ରେଷ୍ଠସ୍ଥାନ ଦେଇଛନ୍ତି। ଧର୍ମ ସମ୍ମୁଖରେ ପୃଥିବୀର ଯେତେସବୁ ବଡ଼ପଣ ଅଢ଼େଇଦିନିଆ ବା କ୍ଷଣସ୍ଥାୟୀ। କାରଣ ଧର୍ମ ହେଉଛି ଏକମାତ୍ର ପଣ ଯାହା ମନୁଷ୍ୟର ଇହକାଳ ଓ ପରକାଳରେ ହିତ ସାଧନ କରିଥାଏ। କବିଙ୍କ ଭାଷାରେ-

"ଧର୍ମ ଏକା ସିନା ମହତ ପଣିଆ
ଆଉ ବଡ଼ ପଣ ଅଢ଼େଇ ଦିନିଆ ।
ବଡ଼ପଣ ସିନା ସେହିଁ ତାକୁ ଗଣି
ଯେଉଁ ବଡ଼ପଣ ତ୍ରିଲୋକ ସାଧିନୀ ।" (ଦରବାର)

ପ୍ରକୃତରେ ଚିରନ୍ତନ ଧର୍ମ ଓ ଭଗବତ୍ ପ୍ରାପ୍ତି ପାଇଁ ନୀତିନିଷ୍ଠ ଜୀବନଯାପନ କରିବା ସର୍ବାଦୌ ଆବଶ୍ୟକ। ସତ୍ୟ, ଧର୍ମ, ନ୍ୟାୟ, ତପ, କ୍ଷମା, ଦୟା ପ୍ରଭୃତି ପ୍ରତ୍ୟେକ ଧର୍ମର ମୂଳମନ୍ତ୍ର। ଏହି ନୀତିମାନଙ୍କର ପ୍ରୟୋଗରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍ ପ୍ରଭୃତି ପୃଥିବୀରେ ଯେ କୌଣସି ଧର୍ମରେ କୌଣସି ପ୍ରଭେଦ ପରିଲକ୍ଷିତ ହୋଇନଥାଏ । ଧର୍ମର ଏହି ମୂଳନୀତିଗୁଡ଼ିକୁ ରାଧାନାଥ 'ମହାଯାତ୍ରା' କାବ୍ୟରେ ମୂର୍ତ୍ତିମନ୍ତ ବିଗ୍ରହ ପ୍ରଦାନ କରିଅଛନ୍ତି। ପାଣ୍ଡବଗଣ ସହ୍ୟାଦ୍ରି ଶିଖରରେ ବସିଥିବା ସମୟରେ ଅଗ୍ନିଙ୍କର ଅନୁକମ୍ପା ଲାଭ କରି ଦେବଗଣଙ୍କୁ ଦର୍ଶନ କରିଛନ୍ତି। 'ଧର୍ମଦେବ' ତୁଷାରଧବଳକାନ୍ତି ବିଶିଷ୍ଟ ଶରୀର, ଅମ୍ଳାନବସ୍ତ୍ର, ଜ୍ୟୋତ୍ସ୍ନାଶୁଭ୍ର ଦଣ୍ଡ ଧାରଣ କରି ସିଂହାସନରେ ଆରୂଢ଼ ହୋଇଛନ୍ତି। 'ସାହସ' ସ୍ଫୀତବକ୍ଷ ଧାରଣ କରି ଧର୍ମଙ୍କ ସମ୍ମୁଖରେ ଉଭା ହୋଇଛନ୍ତି। 'ସତ୍ୟ'ଙ୍କର ରୂପ ହୋଇଛି ମହାତେଜସ୍ୱୀ, ନିର୍ଭୀକ ଓ ସ୍ୱଚ୍ଛ। ସେହିପରି 'ନ୍ୟାୟ ଦେବ'ଙ୍କର ମୂର୍ତ୍ତିର ପରିକଳ୍ପନା କରି କବି କହିଛନ୍ତି ସେ ତୁଳାଦଣ୍ଡ ହସ୍ତରେ ଧାରଣ କରିଛନ୍ତି। ତାଙ୍କର ଚକ୍ଷୁ କୃଷ୍ଣବସନରେ ଆଚ୍ଛାଦିତ ହୋଇଛି। ଫଳରେ ଆତ୍ମପର ଓ ସାନ ବଡ଼ ନିର୍ବିଶେଷରେ ସମସ୍ତଙ୍କୁ ସମାନ ନ୍ୟାୟ ପ୍ରଦାନ କରି ପାରୁଛନ୍ତି। ସେହିପରି 'ତପଦେବ'ଙ୍କର ମୂର୍ତ୍ତି ପରିକଳ୍ପନା କରିଛନ୍ତି ବଲ୍କଳଧାରୀ, ଲମ୍ବ ଶ୍ମଶ୍ରୁ, ଜଟାଧାରୀ ଓ କ୍ଷୀଣବପୁ ଭାବରେ। ସେହିପରି 'ଦୟାଦେବୀ'ଙ୍କର ରୂପ ବିଷୟରେ କବି କହିଛନ୍ତି ତାଙ୍କର ମୁକ୍ତାଫଳ ସଦୃଶ ଚକ୍ଷୁରୁ ପରଦୁଃଖ ପାଇଁ ସର୍ବଦା ଅଶ୍ରୁବର୍ଷଣ ହେଉଛି, ଦୁଃଖୀଜନଙ୍କୁ ଆଶ୍ରା ଦେବାପାଇଁ ବାହୁ ଟେକି ଡାକୁଛନ୍ତି। 'ଶୌଚଦେବ' ସର୍ବଦା ନିଜର ଶରୀରରୁ ବସ୍ତ୍ର ଓ ଆଭରଣ କାଢ଼ି ପୂର୍ଣ୍ଣକୁମ୍ଭରୁ ଜଳ ନେଇ ଶରୀରକୁ ପ୍ରକ୍ଷାଳିତ କରୁଛନ୍ତି। ଅନାଚାରଠାରୁ ଦୂରେଇ ଯାଉଛନ୍ତି। ଏହିପରି ସତ୍ୟ, ତପ, ନ୍ୟାୟ, ଶୌଚ, ଦୟା ପ୍ରଭୃତିଙ୍କର ବିଗ୍ରହ ପରିକଳ୍ପନା ମାଧ୍ୟମରେ କବି ରାଧାନାଥ ବିଶ୍ୱବାସୀଙ୍କୁ ନୀତିନିଷ୍ଠ ଜୀବନଯାପନ କରିବାକୁ ପ୍ରେରଣା ଦେଇଛନ୍ତି।

କବି ତାଙ୍କର 'ସାବିତ୍ରୀ-ଚରିତ' ଖଣ୍ଡକାବ୍ୟରେ ସତ୍ୟ, ଧର୍ମ, ନ୍ୟାୟ ଓ ସାଧୁସଙ୍ଗର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି। ଯମଦେବତା ସତ୍ୟବାନ୍‌ଙ୍କର ଜୀବନ ଧରି ଚାଲିଯାଉଥିବା ସମୟରେ ସାବିତ୍ରୀ ଧର୍ମରାଜଙ୍କୁ ଧର୍ମର ବିବିଧ ମହନୀୟ ବାଣୀ ଶୁଣାଇଛନ୍ତି। ଏହିସବୁ ଶୁଣି ଧର୍ମରାଜ ଅତିଶୟ ପ୍ରୀତ ହୋଇ ସତ୍ୟବାନ୍‌ଙ୍କର ଜୀବନ ଫେରାଇ ଦେଇଛନ୍ତି। ପ୍ରଥମେ ସାବିତ୍ରୀ ଧର୍ମରାଜଙ୍କୁ ଜ୍ଞାନ ଅପେକ୍ଷା ଧର୍ମ ଆଚରଣ ମହଜ ଓ ଶ୍ରେୟସ୍କର ଏହା କହିଛନ୍ତି -

"ଜ୍ଞାନ ଅରଜିବା ଭବେ ଅଟଇ ଦୁଷ୍କର
ମାତ୍ର ଧର୍ମ-ଆଚରଣ ଜ୍ଞାନୁ ଶ୍ରେୟସ୍କର।
କହନ୍ତି ସାଧୁଏ ତେଣୁ ଭାରତୀ ଯୁକତ
ଧର୍ମର ଯେ ମାର୍ଗ, ତାହା ସଭିଙ୍କି ମୁକତ।" (ସାବିତ୍ରୀ-ଚରିତ)

ଜ୍ଞାନ ଅର୍ଜନ କରି ତହିଁରେ ସିଦ୍ଧିଲାଭ କରିବା ସାଧାରଣ ବ୍ୟକ୍ତିମାନଙ୍କ ପକ୍ଷରେ ଦୁସାଧ୍ୟ ଓ କଷ୍ଟକର ହୋଇଥାଏ, ମାତ୍ର ଧର୍ମ ଆଚରଣ କରି ନୈତିକ ଜୀବନଯାପନ କରିବା ସହଜସାଧ୍ୟ ଅଟେ। ତେଣୁ ଏହି ମାର୍ଗ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଅଟେ। ସେହିପରି ପ୍ରେମ ଓ ଦୟାର ମହତ୍ତ୍ୱ ପ୍ରତିପାଦନ କରି କବି ସାବିତ୍ରୀଙ୍କ ମୁଖରେ କହିଛନ୍ତି –

"ପ୍ରେମଟି ଧରମ ଦୟାଟି ଧରମ
ସାଧୁଙ୍କର ଏହା ମତ
ମିତ୍ର ହୋଇଯାନ୍ତି ସାଧୁ ଶତ୍ରୁ ଯେବେ
ହୁଏ ପାଶେ ଉପଗତ।" (ସାବିତ୍ରୀ-ଚରିତ)

ପ୍ରେମ ଓ ଦୟାବଳରେ ଶତ୍ରୁ ମଧ୍ୟ ମିତ୍ରରେ ପରିଣତ ହୋଇଥାଏ।

କବି ତାଙ୍କର 'ଦରବାର' କାବ୍ୟରେ ସାମଗ୍ରିକ ଭାବରେ ମନୁଷ୍ୟର ଅହମିକାକୁ ସମାଲୋଚନା କରିଛନ୍ତି। ମନୁଷ୍ୟର ଆତ୍ମାଭିମାନ, ଅହମିକା, ଗର୍ବ, ଦମ୍ଭ ପ୍ରଭୃତି ରଜ ଓ ତମଗୁଣରୁ ଉଦ୍ଭବ ହୋଇଥାଏ। ଏହାର ବଶବର୍ତ୍ତୀ ହୋଇ ସେ ଧରାକୁ ସରା ମଣିଥାଏ। ସେ କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣ କରି ନ ପାରି ଅନୀତି ମାର୍ଗରେ ପରିଚାଳିତ ହୋଇଥାଏ। ଏହି ରଜୋଗୁଣ ଦ୍ୱାରା ପରିଚାଳିତ ହୋଇ ମାନବ ବିବିଧ ଉପାଧିରେ ଭୂଷିତ ହେବାକୁ ଭଲ ପାଏ। ବିବିଧ ଉପାଧି ଲାଭ କରି ସମାଜରେ ଉଚ୍ଚାସନ ଓ ପ୍ରଭୁତ୍ୱ ଲାଭ ପାଇଁ ନାନା ସଂଘର୍ଷ ଓ ହିଂସାରେ ସେ ଲିପ୍ତ ହୋଇଥାଏ। ଏହି ଉପାଧି ଓ ଆସନ ପାଇଁ ସେ ଈଶ୍ୱରଙ୍କର ଉପାସନା ପରିବର୍ତ୍ତେ ମନୁଷ୍ୟକୁ ବିବିଧ ଉପାୟରେ ଉପାସନା କରିଥାଏ। ଏହି ଉପାଧି ଓ ଆସନ ପାଇଁ ମନୁଷ୍ୟକୁ ପ୍ରୀତ କରିବାପାଇଁ ବିବିଧ ଅସଦ୍‌ଉପାୟର ଅବଲମ୍ବନ କରିଥାଏ। ଓକିଲଦ୍ୱାରା କଳାକୁ ଧଳା ଓ ଧଳାକୁ କଳା ପ୍ରତିପାଦନ କରି ନିଜର ସାଧୁତା ପ୍ରମାଣିତ କରିଥାଏ। ଦୁଃଖୀ, ଦରିଦ୍ରଙ୍କର ତଣ୍ଟିଚିପି ବିଭିନ୍ନ ଉପାୟରେ ଅର୍ଥଶୋଷଣ କରି ଦାନଦେବା ବା ଅନ୍ନଭୋଜୀ ଦେବାକୁ ମନୁଷ୍ୟ ପୁଣ୍ୟ ବୋଲି ବିଚାର କରେ। ନିଜକୁ ବିଭିନ୍ନ ଉପାୟରେ ଧନୀ, ମାନୀ, ଦାନୀ ଓ ଜ୍ଞାନୀ ବୋଲି ସମାଜରେ ପ୍ରଚାର କରିବାକୁ ଚେଷ୍ଟା କରିଥାଏ। ସମାଜରୁ ଏହିସବୁ ଅନୈତିକ କାର୍ଯ୍ୟକଳାପ ଦୂର କରିବାପାଇଁ କବି 'ଦରବାର' କାବ୍ୟରେ ଏସବୁକୁ କଠୋର ଭାବରେ ବ୍ୟଙ୍ଗ ବିଦ୍ରୂପ କରିଛନ୍ତି। ମନୁଷ୍ୟ ଆତ୍ମାଭିମାନର ଏହି କ୍ଷଣସ୍ଥାୟୀ ଚାକଚକ୍ୟ ଭିତରେ ପଶି ଅନୈତିକ ଜୀବନଯାପନ କରିବା ଅପେକ୍ଷା ଆତ୍ମତତ୍ତ୍ୱର ସନ୍ଧାନ କଲେ ମରଲୋକ ସ୍ୱର୍ଗଲୋକରେ ପରିଣତ ହୋଇଯାଇ ପାରିବ। ତେଣୁ କବି କହିଥାନ୍ତି -

''ମନୁଷ୍ୟ ପୂଜାରେ ଯେତେକାଳ ଯାଏ
ଆତ୍ମତତ୍ତ୍ୱ ଯେବେ ସେହିଥିରୁ ପାଏ
ସାରାସାର ବୁଝି ଦେଉଥାନ୍ତେ ଲୋକେ
ଓହ୍ଲାଇ ଆସନ୍ତା ସ୍ୱର୍ଗ ମର୍ତ୍ତ୍ୟଲୋକେ।'' (ଦରବାର)

ରାଧାନାଥ ତାଙ୍କର 'ବିବେକୀ' ପ୍ରବନ୍ଧରେ ମନୁଷ୍ୟର ଦୈନନ୍ଦିନ ଜୀବନରେ ସରଳ ଓ ନୀତିମୟ ଜୀବନଯାପନ ପାଇଁ ଅନେକ ପନ୍ଥା ନିର୍ଦ୍ଦେଶ କରି ଯାଇଛନ୍ତି। ମନୁଷ୍ୟ ଜୀବନରେ ଅନେକ ବିପଦ ପଡ଼ିଥାଏ। ମାତ୍ର ପ୍ରତ୍ୟେକ ବିପଦ ପଡ଼ିଲାବେଳେ ଆମ୍ଭେମାନେ ଦୁଃଖକଷ୍ଟ ପାଇବା ସଙ୍ଗେ ସଙ୍ଗେ କେତେକ ଅମୂଲ୍ୟ ଉପଦେଶ ମଧ୍ୟ ପାଇଥାଉଁ। ବିପଦମାନଙ୍କରୁ ଯେଉଁ ଜ୍ଞାନ ଲାଭ ହୋଇଥାଏ, ତାହାକୁ ଆମେ ଆମ୍ଭମାନଙ୍କର ସମ୍ପତ୍ତିର ଅଂଶବିଶେଷ ବୋଲି ଭାବିବା ଉଚିତ୍। ସଂସାରରେ ପ୍ରତ୍ୟେକଙ୍କୁ ଅନେକ ସମାଲୋଚନା ସହିବାକୁ ପଡ଼ିଥାଏ। ଏହି ସମୟରେ କୋମଳମନା ବ୍ୟକ୍ତିମାନେ ବିଶେଷ ଭାବରେ ଭାଙ୍ଗି ପଡ଼ିଥାନ୍ତି। ଏହି ପରିସ୍ଥିତିରେ କବି ରାଧାନାଥଙ୍କର ଉପଦେଶ ଏହି ଯେ, ଉକ୍ତ ବ୍ୟକ୍ତିବୃନ୍ଦ ଭାଙ୍ଗି ନପଡ଼ି ଅପେକ୍ଷା କରିବା ଭଲ। କାରଣ ସମୟକ୍ରମେ ଲୋକମାନଙ୍କର ସେମାନଙ୍କ ପ୍ରତି ମତର ପରିବର୍ତ୍ତନ ଓ ସଂଶୋଧନ ହୋଇଯିବ। ଆଉ କେତେକ ବ୍ୟକ୍ତି ଅନ୍ୟ ଲୋକଙ୍କ ଉପରେ ବିଭିନ୍ନ ପ୍ରକାର ଟୀକା ଟିପ୍ପଣୀ ଦେଇଥାନ୍ତି। ଏହି ଅନ୍ୟାୟ ଟୀକା ଅନ୍ୟର ମନସ୍ତାପର କାରଣ ହୋଇଥାଏ। ମାତ୍ର କବିଙ୍କ ମତରେ ଅନ୍ୟର ଆଚରଣ ଭଲ କିମ୍ବା ମନ୍ଦ ଏ ବିଷୟରେ ମତଦେବାକୁ ହେଲେ ପ୍ରାୟ ସର୍ବଜ୍ଞତାର ଜ୍ଞାନ ଆବଶ୍ୟକ ହୋଇଥାଏ। ଏହା ଯଦି ପ୍ରତ୍ୟେକ ବ୍ୟକ୍ତି ଜାଣନ୍ତେ ତେବେ କାହା ପ୍ରତି କେହି ଅନ୍ୟାୟ ଟୀକା ଦିଅନ୍ତେ ନାହିଁ କି କେହି ତଦ୍‌ଜନିତ ମନସ୍ତାପ ପାଆନ୍ତେ ନାହିଁ। ଜଗତରେ ଅଧିକାଂଶ ଲୋକ କହିଥାନ୍ତି, 'ମୋ ପ୍ରତି ନ୍ୟାୟ ବିଚାର କରାଗଲା ନାହିଁ।' ମାତ୍ର ସଂସାରର ପ୍ରତ୍ୟେକ ବ୍ୟକ୍ତି ନ୍ୟାୟ ପାଇବା ଅସମ୍ଭବ। କବିଙ୍କ ମତରେ, ''ସଂସାର ଭ୍ରମ, ଆଳସ୍ୟ, ଚଳଚିତ୍ତତା, ରିପୁ ପରତନ୍ତ୍ରତା, ସ୍ୱାର୍ଥପରତା ପ୍ରଭୃତି ଅପରିହାର୍ଯ୍ୟ ଅନିଷ୍ଟମାନଙ୍କରେ ବୁଡ଼ି ରହିଅଛି। ଏଥକୁ ଅନ୍ୟାୟ ନ ହେବାର ବିଚିତ୍ର ଅଟେ।'' ସଂସାରର ଦୁଃଖକଷ୍ଟଗୁଡ଼ିକ ବିବେକ ବଳରେ ସହ୍ୟ କରିବାକୁ ରାଧାନାଥ ଉପଦେଶ ଦେଇଛନ୍ତି। ବହୁବ୍ୟକ୍ତିମାନଙ୍କର ଜୀବନରେ ଆଶା କରିଥିବା କେତେକ କାର୍ଯ୍ୟ କରି ନ ପାରି ସର୍ବଦା ମନସ୍ତାପ ଭିତରେ ଗତି କରନ୍ତି। ସେମାନଙ୍କର ମନର ଶାନ୍ତି ପାଇଁ କବି କହିଛନ୍ତି, 'ଆମ୍ଭେମାନେ କଳ୍ପନାକୁ ଯେବେ କାର୍ଯ୍ୟରେ ପରିଣତ କରି ପାରନ୍ତୁ ତେବେ ମର୍ତ୍ତ୍ୟ, ସ୍ୱର୍ଗ, ନର ଅମର ହୁଅନ୍ତା।' ପୃଥିବୀରେ ଅନେକ ମହାନ୍ ବ୍ୟକ୍ତି ମଧ୍ୟ ସେମାନଙ୍କର ଆଶାନୁରୂପ କାର୍ଯ୍ୟ ସାଧନ କରି ପାରି ନାହାନ୍ତି। ସେମାନେ ଯେଉଁ କାର୍ଯ୍ୟ କରିଛନ୍ତି ତଦ୍ୱାରା ତାଙ୍କୁ ବହୁ ସମ୍ମାନ ମିଳିଥିଲା, ମାତ୍ର ଆଉ ବହୁତ କିଛି କରିବାପାଇଁ ସେମାନେ ଅଭିଳାଷ କରିଥିଲେ। ତେଣୁ ପ୍ରତ୍ୟେକ ବ୍ୟକ୍ତି ନିଜ କାର୍ଯ୍ୟରେ ସନ୍ତୁଷ୍ଟଚିତ୍ତ ହେବା ଉଚିତ୍।

ବହୁବ୍ୟକ୍ତି ଅଛନ୍ତି ଯେଉଁମାନେ ନିଜକୁ ଅନ୍ୟମାନଙ୍କଠାରୁ ଶ୍ରେଷ୍ଠ ବୋଲି ଭାବିଥାନ୍ତି। ମନୁଷ୍ୟର ଏହି ପ୍ରକୃତିକୁ ରାଧାନାଥ 'ସୁଭଗମ୍ମନ୍ୟତା' ବୋଲି କହିଛନ୍ତି। ଉକ୍ତ ବ୍ୟକ୍ତିମାନଙ୍କୁ ତାଙ୍କର ଶ୍ରେଷ୍ଠତାର କାରଣ ପଚାରିଲେ ତାର କୌଣସି ଉତ୍ତର ଦେଇ ପାରିବେ ନାହିଁ। କେତେକ ବ୍ୟକ୍ତିଙ୍କର ହସ୍ତାକ୍ଷରରୁ, କେତେକ ବ୍ୟକ୍ତିଙ୍କର କପଟ ନମ୍ରତାରୁ, ଆଉ କେତେକ ବିଦ୍ୟାଭିମାନୀ ବ୍ୟକ୍ତିଙ୍କର ଭାଷଣ ଚାତୁରୀରୁ ସେମାନଙ୍କର ସୁଭଗମ୍ମନ୍ୟତା ପ୍ରକାଶିତ ହୋଇଥାଏ। ଦୈନନ୍ଦିନ ଜୀବନଯାପନ କ୍ଷେତ୍ରରେ ଏଭଳି 'ସୁଭଗମ୍ମନ୍ୟତା' ଅତ୍ୟନ୍ତ କ୍ଷତି କାରକ। ଏହାଦ୍ୱାରା ମନୁଷ୍ୟର ଶ୍ରେଷ୍ଠତା ପ୍ରକାଶ୍ ନ ପାଇ ବରଂ ଲଘୁତ୍ୱ ପ୍ରକାଶିତ ହୁଏ। ସାଧାରଣତଃ ଲୋକମାନେ ନିଜଠାରୁ ଅନ୍ୟମାନେ ଅଧିକ ସମ୍ମାନ ବା ମର୍ଯ୍ୟାଦା ପ୍ରାପ୍ତ ହେଲେ ଦୁଃଖିତ ହୋଇଥାନ୍ତି। ମାତ୍ର ଏଭଳି ଦୁଃଖିତ ହେବା ଅନୁଚିତ। ବହୁ ବ୍ୟକ୍ତିଙ୍କର ମାନସିକ ଅପରିପକ୍ୱତା ଥାଏ। ସେମାନେ ନିଜେ ହୁଏତ ତାହା ଜାଣି ପାରନ୍ତି ନାହିଁ। ମାତ୍ର ସ୍ଥବିର ବ୍ୟକ୍ତିମାନେ ସେମାନଙ୍କର ରଚନାରୁ ଓ ବକ୍ତୃତାରୁ ଏହି ଅପରିପକ୍ୱତା ଉପଲବ୍‌ଧି କରି ପାରନ୍ତି। ସଂସାରରେ ବାସ୍ କରୁଥିବା ବ୍ୟକ୍ତିକୁ ଅନେକ ଦାୟିତ୍ୱର ବୋଝ ସମ୍ଭାଳିବାକୁ ପଡ଼େ। ଏହି ବୋଝ ସହିତ ଅନେକ ବାଧାବିଘ୍ନ ମଧ୍ୟ ରହିଛି। ଏହି ବାଧାବିଘ୍ନ ଗୁଡ଼ିକୁ ଅତିକ୍ରମ କରିବାପାଇଁ କବି ମାନସିକ ଦୃଢ଼ତା ଓ ପ୍ରଫୁଲ୍ଲତାକୁ ଆଶ୍ରୟ କରିବାକୁ କହିଛନ୍ତି। ଏହିପରି ଭାବେ 'ବିବେକୀ' ପ୍ରବନ୍ଧରେ ଜୀବନରେ ବିଭିନ୍ନ ଦୁଃଖ, କଷ୍ଟ, ବିପଦ ଓ ବାଧାବିଘ୍ନ ଭିତରେ ନୀତିନିଷ୍ଠ ଜୀବନଯାପନ କରିବା ପାଇଁ ମାର୍ଗ ନିର୍ଦ୍ଦେଶ କରିଛନ୍ତି।

ଧାର୍ମିକ ଓ ନୈତିକ ଜୀବନଯାପନ କରି ଆତ୍ମାର ବିକାଶ କରିବା ଏବଂ ଏହା ମାଧ୍ୟମରେ ପରମାତ୍ମାଙ୍କର ସତ୍ତା ଅନୁଭବ କରିବା ମାନବ ଜୀବନର ଚରମ ଲକ୍ଷ୍ୟ। କବି ରାଧାନାଥ ଏହିପରି ତାଙ୍କର ବିଭିନ୍ନ କାବ୍ୟ, ଖଣ୍ଡକାବ୍ୟ ଓ ପ୍ରବନ୍ଧ ସାହିତ୍ୟ ମାଧ୍ୟମରେ ମନୁଷ୍ୟର ଏହି ଲକ୍ଷ୍ୟ ପୂରଣ ପାଇଁ ବିବିଧ ଉପାଦାନ ରଖି ଯାଇଅଛନ୍ତି।

□ □ □

# ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ ଓ ରାଧାନାଥ

ଡଃ. ପ୍ରସନ୍ନ କୁମାର ସ୍ୱାଇଁ

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟ ଜଗତରେ ରାଧାନାଥ ଜଣେ ସୁପ୍ରତିଷ୍ଠିତ କାବ୍ୟ ଶିଳ୍ପୀ। ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ସେ ଥିଲେ ଜନକ। ୧୮୫୦ ମସିହା ପରେ ପରେ ଯେତେବେଳେ ଓଡ଼ିଆ ଭାଷା-ସାହିତ୍ୟ ଜଗତରେ ଏକ ସଙ୍କଟ ଅବସ୍ଥା ସୃଷ୍ଟି ହୋଇଥିଲା, ଯୁବପ୍ରାଣ ସଂସ୍କୃତିପ୍ରେମୀ ରାଧାନାଥ ନୀରବରେ ରହିପାରି ନଥିଲେ। ତାଙ୍କ ସାହିତ୍ୟିକ ଜୀବନର ବିକାଶ ପର୍ବରେ ସେ ବଙ୍ଗଳାରେ ସୃଷ୍ଟି ସର୍ଜନା ଆରମ୍ଭ କରିଥିଲେ ହେଁ ଓଡ଼ିଶାର ବିଭିନ୍ନ ସ୍କୁଲରେ ଶିକ୍ଷକତା ଓ ଜନ୍ ବିମ୍‌ସ୍‌ଙ୍କ ପ୍ରେରଣା ହିଁ ତାଙ୍କୁ ପରବର୍ତ୍ତୀ କାଳରେ ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟିପାଇଁ ପ୍ରେରଣା ଦେଇଥିଲା। ରାଧାନାଥଙ୍କ ଶିକ୍ଷକ ଜୀବନର ଆରମ୍ଭରେ ସେ ଓଡ଼ିଆ ଗଦ୍ୟ ସାହିତ୍ୟର ଅଭାବ ଅନୁଭବ କରିଥିଲେ। ଏହି ସମୟରେ ପ୍ରକାଶିତ 'ଉତ୍କଳ ଦର୍ପଣ', 'ସମ୍ବାଦ ବାହିକା', 'ଉତ୍କଳ ସାହିତ୍ୟ' ପ୍ରଭୃତି ପତ୍ରପତ୍ରିକାରେ ପଦ୍ୟ ସହିତ ସମ୍ବାଦ–ଧର୍ମୀ ଗଦ୍ୟ ପ୍ରକାଶ ପାଉଥିଲା। ତେଣୁ ବଙ୍ଗଳାଭାଷାରେ ସେ କବିତା ଲେଖିବା ଆରମ୍ଭ କରିଥିଲେ ମଧ୍ୟ ଓଡ଼ିଆ ଗଦ୍ୟ ସାହିତ୍ୟରେ ଭିତ୍ତି ପ୍ରତିଷ୍ଠା କରିବାର ପ୍ରୟାସୀ ହୋଇ ସେ ୧୮୭୩ ମସିହାରେ ରଚନା କଲେ 'ବିବେକୀ'। ଏହା ସେହିବର୍ଷ 'ଉତ୍କଳ ଦର୍ପଣ' ପତ୍ରିକାରେ ପ୍ରକାଶ ପାଇଲା।

'ବିବେକୀ' ହେଉଛି ପ୍ରଥମ ଓଡ଼ିଆ ପ୍ରବନ୍ଧ ଓ ଓଡ଼ିଆ ଗଦ୍ୟ ସାହିତ୍ୟ ଜଗତରେ ଏକ କୀର୍ତ୍ତିସ୍ତମ୍ଭ। ପ୍ରବନ୍ଧର ପ୍ରାରମ୍ଭରେ ପ୍ରାବନ୍ଧିକ ଉଲ୍ଲେଖ କରିଛନ୍ତି ଯେ ''ମନୁଷ୍ୟକୁ କେତେ କଷ୍ଟ, ଶୋକ, ଅଭାବ ସହ୍ୟ କରିବାକୁ ହୁଏ ତାହା କଳନା କିଏ କରିବ? ମନୁଷ୍ୟକୁ କେତେ ଦୁର୍ଦ୍ଦୈବର ଅଧୀନ ହେବାକୁ ହୁଏ, କିଏ କହିବ? ଏଣୁ ଯେ ପ୍ରବନ୍ଧ ତାହାର ମନର ଆର୍ତ୍ତି ଫେଡ଼ି ପାରେ ଏପରି ପ୍ରବନ୍ଧରେ ସମସ୍ତଙ୍କର ଆସ୍ଥା ହେବାର ଦିଶୁଅଛି। ଘୋର ବର୍ଷା, ଘର କାନ୍ଥ ପାଣି ଛାଟରେ ଖସି ପଡ଼ିଅଛି, ବାୟୁବେଗରେ ବହୁଅଛି। ସେପରି ପ୍ରବନ୍ଧ ଲେଖିବାପାଇଁ ଏ ଅନୁକୂଳ ଦିନ ଅଟେ, କେତେଗୁଡ଼ିଏ ଗୃହସୁଲଭ ସୁଖ ଥିଲେ ଏପରି ଝଟିକା କଷ୍ଟଦାୟକ ବୋଲି ପ୍ରତୀୟମାନ ହୁଏନାହିଁ, ବରଂ ସୁଖକର ବୋଧହୁଏ।'' (୧) ଏହି ଉଦ୍ଦେଶ୍ୟରୁ ହିଁ 'ବିବେକୀ'ର

ସୃଷ୍ଟି। ରାଧାନାଥ ଥିଲେ ଶିକ୍ଷକ। ଜଣେ ଶିକ୍ଷାବିତ୍‌ଭାବେ ସେ ସମାଜର ବିଭିନ୍ନ ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସୁଥିଲେ। ସମାଜରେ ସେ ଯେଉଁଠି ଅସଂଗତି, ଅନାଚାର, ଅସୂୟାଭାବ, ସଂକୀର୍ଣ୍ଣତା, ସଂଶୟବୋଧ ଲକ୍ଷ୍ୟ କରିଥିଲେ ସେଠାରେ ସମାଜ ସଂସ୍କାରର ଆବଶ୍ୟକତା ଉପଲବ୍‌ଧି କରି ସୃଷ୍ଟି କରିଥିଲେ 'ବିବେକୀ'। ମାନବ ବିବେକାନୁମୋଦିତ ହୋଇ ନିଜର କର୍ମରେ ନିୟୋଜିତ ହେଲେ ସମାଜରେ ସୁଖ ଆସେ, ମାତ୍ର ସ୍ୱେଚ୍ଛାଚାରୀ ହୋଇ ବିବେକଶୂନ୍ୟ ଭାବେ କାର୍ଯ୍ୟ କଲେ ସମାଜରେ ସମସ୍ୟା ବୃଦ୍ଧିପାଏ। ତେଣୁ ମନୁଷ୍ୟକୁ ଜଟିଳ ଜଞ୍ଜାଳପୂର୍ଣ୍ଣ ସଂସାର ସୁଖରେ ବଞ୍ଚିରହିବାକୁ ହେଲେ ବିବେକବାନ୍ ହେବାକୁ ପଡ଼ିବ। ଉଦାରତାରେ ନିଜ ହୃଦୟକୁ ସିକ୍ତ କରିବାକୁ ହେବ, ଦୟାଶୀଳ ହୋଇ ମାନସିକ ସଂକୀର୍ଣ୍ଣତାଠାରୁ ଉର୍ଦ୍ଧ୍ୱରେ ରହିବାକୁ ପଡ଼ିବ। ଜୀବନରେ ଏସବୁ କାର୍ଯ୍ୟ କରିବା ଅତ୍ୟନ୍ତ ଦୁରୂହ ବ୍ୟାପାର। ଏଥିପାଇଁ ଜୀବନବ୍ୟାପୀ ସାଧନା ଓ ତପସ୍ୟାର ଆବଶ୍ୟକତା ରହିଛି।

ଏହି କଥାକୁ ରାଧାନାଥ ଉଲ୍ଲେଖ କରିଛନ୍ତି 'ବିବେକୀ' ପ୍ରବନ୍ଧ ମଧ୍ୟରେ। ଜୀବନର ଚଲାପଥରେ ଅଳ୍ପ କେତେଦିନର ଅନୁଭୂତି ଅଭିଜ୍ଞତା ନେଇ ସେ ରଚନା କରିଛନ୍ତି 'ବିବେକୀ' ପ୍ରବନ୍ଧ। ପୁନଶ୍ଚ ପ୍ରାବନ୍ଧିକ ଲକ୍ଷ୍ୟ କରିଛନ୍ତି ସମାଜରେ ଅନେକ ବ୍ୟକ୍ତିଙ୍କୁ ପରନିନ୍ଦା ଭଲ ଲାଗେ। ଯେଉଁମାନେ ପରନିନ୍ଦା କରନ୍ତି ସେମାନେ ହୁଏତ ସମାଜରେ କାହାକୁ ତୋଷାମଦ କରିବାକୁ ଯାଇ ଏପରି କୁପଥର ଆଶ୍ରୟ ନେଇଥାନ୍ତି। ଫଳତଃ ବିବେକାନୁମୋଦିତ ହୋଇ କାର୍ଯ୍ୟ କଲେ ମଧ୍ୟ ଅନେକ ସମୟରେ କିଛି ଲୋକଙ୍କୁ ଭୁଲକ୍ରମେ ନିନ୍ଦାର ସମ୍ମୁଖୀନ ହେବାକୁ ପଡ଼ିଥାଏ। ଏଥିରେ ହୁଏତ ସେମାନେ ନିର୍ଦ୍ଦୋଷ ହେଲେ ମଧ୍ୟ ଦୁଃଖ ଓ ଯାତନା ଭୋଗ କରନ୍ତି। ଏହିଠାରେ ହିଁ ସମାଜରେ ସୃଷ୍ଟିହୁଏ ଅନ୍ୟାୟ, ଅନୀତି ଓ ଅନାଚାର। ଏହି କଥାକୁ ରାଧାନାଥ ଉଲ୍ଲେଖ କରିଛନ୍ତି ତାଙ୍କ 'ବିବେକୀ' ପ୍ରବନ୍ଧ ମଧ୍ୟରେ।

ଅନେକ ସମୟରେ ମାନବ ବିପଦକୁ ତାର ଜାଣତରେ ବରଣ କରିଥାଏ। ବିପଦରୁ ହିଁ ସେ ଶିକ୍ଷା ପାଇଥାଏ, ନିଜ କର୍ମ ପ୍ରତି ସଚେତନ ହୋଇଥାଏ ଏବଂ ଧୈର୍ଯ୍ୟ ହିଁ ତାକୁ ଧୀରସ୍ଥିର କରିଥାଏ। ମନୁଷ୍ୟ ଅନେକ ସମୟରେ ନିଜକୁ ଯେତେ ବଡ଼ ଭାବେ, ଯେତେ ବିଜ୍ଞ ବୋଲି ପରିଚୟ ଦିଏ ସେ ସେପରି ନୁହେଁ। ଅନେକ ସମୟରେ ତା'ର ଅହଂଭାବ ହିଁ ତାକୁ ବଡ଼ କରିଥାଏ, ମାତ୍ର ମାନବର ଏପରି ଭାବନା ଠିକ୍ ନୁହେଁ। ସେ କିପରି ତାହା ସମାଜ ହିଁ କହିବ, ସେ ନୁହେଁ। ଏ କ୍ଷେତ୍ରରେ ଅହଂବୋଧର ଶିକାର ହୋଇ ଛଳନାର ମୁଖା ପିନ୍ଧି ମାନବ ଧରାକୁ ସରାଜ୍ଞାନ କରୁଥିବାରୁ ପ୍ରାବନ୍ଧିକ ସେପରି ମାନବର ନିନ୍ଦା କରିଛନ୍ତି। ଏପରି ମାନବକୁ ସେ ବିଚାର ବୁଦ୍ଧିହୀନ ଭାବେ ଗ୍ରହଣ କରିଛନ୍ତି।

ଅପରିପକ୍ୱତା ସମ୍ପର୍କରେ ଉଲ୍ଲେଖ କରିବାକୁ ଯାଇ ରାଧାନାଥ ଶାରୀରିକ, ମାନସିକ, ନୈତିକ ଏବଂ ରୈତିକ ଅପରିପକ୍ୱତା କଥା ଉଲ୍ଲେଖ କରିଛନ୍ତି। ଏ କ୍ଷେତ୍ରରେ ସେ ଅଳ୍ପ ବୟସ୍କ ବ୍ୟକ୍ତିଙ୍କୁ ଉପହାସ କରିବା ଅନୁଚିତ ବୋଲି ଉଲ୍ଲେଖ କରିଛନ୍ତି।

ତାଙ୍କ ଦୃଷ୍ଟିରେ ବୟସ ହିଁ ଅଭିଜ୍ଞତା ଓ ପରିପକ୍ୱତାର ମାପକାଠି ନୁହେଁ। ସମାଜରେ ବୃଦ୍ଧ ଓ ବୟସ୍କ ବ୍ୟକ୍ତିମାନେ ଅଛନ୍ତି, ଯିଏ ପରନିନ୍ଦାକୁ ଭଲ ପାଆନ୍ତି, ଅନ୍ୟକୁ ଈର୍ଷା କରନ୍ତି। ତେଣୁ ଏପରି କ୍ଷେତ୍ରରେ ପ୍ରାବନ୍ଧିକ ପୁସ୍ତକ ପଢ଼ି ଜ୍ଞାନରେ ମନୁଷ୍ୟର ମାନସିକ ପରିପକ୍ୱତା ଆସେ ନାହିଁ ବୋଲି ଦୃଢ଼ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି। ପୁନଶ୍ଚ ବୋଝ ବୋହିବା ସମ୍ପର୍କରେ ରାଧାନାଥ ନିଜସ୍ୱ ମତ ପ୍ରଦାନ କରି କହନ୍ତି ଯେ, ସେ ମାନବ ହେଉ ବା ପଶୁ ହେଉ, ନିଜ ଶକ୍ତିଠାରୁ ଅଧିକ ଭାର ବହନ କଲେ ତାହା ସେ ବୋହି ପାରେ ନାହିଁ, ବୋଝ ଭାରାରେ ନଇଁଯାଏ। ରାଧାନାଥଙ୍କ ଦୃଷ୍ଟିରେ ଭଗ୍ନମନତା ମାନବ ଜୀବନର ସବୁଠାରୁ ବଡ଼ ଓ ମହତ୍ ବୋଝ। ଯେଉଁମାନେ ଶିକ୍ଷିତ ସେମାନଙ୍କର ଶାରୀରିକ ବୋଝ ଅପେକ୍ଷା ମାନସିକ ବୋଝ ଅଧିକ। ଏ କ୍ଷେତ୍ରରେ ଲେଖକ ଜନସାଧାରଣଙ୍କୁ ବିବେକାନୁମୋଦିତ ହେବାକୁ ଆହ୍ୱାନ ଦେଇଛନ୍ତି। ଯିଏ ଯେପରି କାର୍ଯ୍ୟ କରିପାରିବ ତାକୁ ସେହି କାର୍ଯ୍ୟ କରିବାକୁ ସେ ପରାମର୍ଶ ଦେଇଛନ୍ତି ଓ ଲୋଭର ଶିକାର ନହୋଇ ସମାଜରେ ନିଜ କର୍ତ୍ତବ୍ୟ ପଥରେ ଅଗ୍ରସର ହେବାକୁ ସେ ପରାମର୍ଶ ଦେଇଛନ୍ତି।

ବିବେକୀର କଳେବର ସୁଦୀର୍ଘ ହେଲେ ହେଁ ଏହାର ବିଷୟାନୁଶୀଳନ ସୁଚିନ୍ତିତ ସୁପରିକଳ୍ପିତ। ଉପଦେଶାତ୍ମକ ଶୈଳୀ ଏବଂ କଥନରୀତିରେ ଏହା ରଚିତ। ଅନେକ ସ୍ଥଳରେ ଘଟଣାବର୍ଣ୍ଣନା କ୍ରମରେ ରାଧାନାଥଙ୍କ ଅଜ୍ଞାତରେ 'ବିବେକୀ' ପ୍ରବନ୍ଧରେ ଅଯୌକ୍ତିକ ଏବଂ ଅପ୍ରାସଙ୍ଗିକ ପରିବେଶ ସୃଷ୍ଟି ହୋଇଛି। ଫଳତଃ ଏହା ଅନେକ ସ୍ଥଳରେ କଥନଭଙ୍ଗୀକୁ ସୁଖପାଠ୍ୟ କରିପାରି ନାହିଁ। ଏହାସତ୍ତ୍ୱେ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ 'ବିବେକୀ'ର ଦାନ ଅତୁଳନୀୟ।

'ବିବେକୀ' ରଚନାର ଏକ ବର୍ଷ ପରେ ୧୮୭୪ ମସିହାରେ ରାଧାନାଥଙ୍କ 'ଇଟାଲୀୟ ଯୁବା'ର ସୃଷ୍ଟି। ଏ ସମ୍ପର୍କରେ ବ୍ୟାସକବି ଫକୀରମୋହନ କହନ୍ତି– ''ଦିନେ ଗଡ଼ଗଡ଼ିଆଠାରେ ରାଧାନାଥ କହିଲେ, ମୁଁ ଇଟାଲୀୟ ଯୁବା ବୋଲି ଗୋଟିଏ ଗଳ୍ପ ଇଂରାଜୀରେ ପଢ଼ିଅଛି, ତାହାକୁ ଲେଖିବି ବୋଲି ମନେ କରୁଅଛି। ଏହା କହି ସେ ତାହା ପ୍ରବନ୍ଧାକାରରେ ଲେଖିଲେ ଏବଂ ମୋତେ ସମସ୍ତ ଶୁଣାଇଲେ। ତାହା 'ଉତ୍କଳ ଦର୍ପଣ'ରେ କ୍ରମଶଃ ପ୍ରକାଶିତ ହେଲା। (୨) ଏହି ଗଳ୍ପର ନାୟକ ଜଣେ ସ୍ୱାଭିମାନୀ ଯୁବକ। ଶୈଶବରୁ ନିଜ ପିତାଙ୍କର ଅବହେଳାର ଶିକାର ହୋଇ ଜେନେଭା ନଗରୀରେ ଚିତ୍ରବିଦ୍ୟା ବ୍ୟବସାୟ କରି ଜୀବିକାନିର୍ବାହ କରୁଥିଲା। ସେହି ସହରରେ ଅବସ୍ଥାନ କରିବା ସମୟରେ ସେ ଲରା ନାମ୍ନୀ ଜଣେ ରୂପବତୀ ସୁଶ୍ରୀ ତରୁଣୀର ସଂସ୍ପର୍ଶରେ ଆସିଥିଲା ଓ ତା ହୃଦୟରେ ଗଭୀର ପ୍ରେମବୋଧ ଜାତ ହୋଇଥିଲା। ଫଳତଃ ଉଭୟ ଉଭୟଙ୍କୁ ଖୁବ୍ ଭଲ ପାଉଥିଲେ। ମାତ୍ର ଯୁବକ ପିତାଙ୍କର ଅସୁସ୍ଥତାର ଖବର ପାଇ ହଠାତ୍ ସ୍ୱଗୃହକୁ ଚାଲିଗଲା ଏବଂ ଗଲାବେଳେ ଲରାକୁ ପ୍ରତ୍ୟାବର୍ତ୍ତନର ପ୍ରତିଶ୍ରୁତି ମଧ୍ୟ ଦେଇଥିଲା। ଏହି ସମୟରେ ସେହି ଯୁବକଙ୍କର

ଜଣେ ବନ୍ଧୁ ଫିଲିପ୍ ଇର୍ଷା ପ୍ରଣୋଦିତ ହୋଇ ଲରାଙ୍କୁ ତାର ପ୍ରେମିକର ମିଥ୍ୟା ମୃତ୍ୟୁ ସମ୍ବାଦ ଦେଇ ଲରାଙ୍କୁ ବିବାହ କଲା, ମାତ୍ର ଯୁବକ କିଛି ଦିନପରେ ଜେନେଭା ଫେରିଆସି ଯେତେବେଳେ ତାର ସାଙ୍ଗରେ ଏପରି କାର୍ଯ୍ୟକଳାପ ଦେଖିଲା ତାକୁ ହତ୍ୟା କଲା। ଏହି ଗଳ୍ପମଧ୍ୟରେ ରାଧାନାଥ ପ୍ରେମ ପ୍ରଣୟର ଅକୃତ୍ରିମ ବିକାଶ, ସରଳ ପ୍ରେମମଧ୍ୟରେ ବିଷ ମିଶ୍ରଣ ପୁନଶ୍ଚ ପ୍ରଣୟର ଭୟଙ୍କର ପରିଣତି ସହିତ ପ୍ରେମ କିପରି ମାନବକୁ ପାଗଳ କରିଦିଏ ଓ ଅନ୍ଧକରି ପକାଏ ତାହା ଉଲ୍ଲେଖ କରିଛନ୍ତି।

ଇତାଲୀୟ ଯୁବା ଗଦ୍ୟ ଶୈଳୀରେ ଲିଖିତ ଏକ ଗଳ୍ପ ହେଲେ ମଧ୍ୟ ଏହାର ଆତ୍ମା ହେଉଛି କାବ୍ୟମୟ, ଅନ୍ତଃସଲୀଳା ଫଲ୍‌ଗୁ ପରି ଏହା ତରଳ ଓ ସାବଲୀଳ ଭାବ ପ୍ରକାଶରେ ରାଧାନାଥ ଏଥିରେ ବିବେକୀ ଅପେକ୍ଷା ଅଧିକ ସୁସ୍ପଷ୍ଟ ଓ ରୁଚିଶୀଳ। ଅନେକ ସ୍ଥାନରେ ବ୍ୟବହାରିକ ଭାଷା ପ୍ରୟୋଗରେ ରାଧାନାଥ ଶୃଙ୍ଖଳା ରକ୍ଷାକରି ପାରି ନଥିଲେ ମଧ୍ୟ ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶ ପର୍ବରେ ଇତାଲୀୟ ଯୁବା ପାଠକ ଓ ଗବେଷକମାନଙ୍କ ପାଇଁ ଏକ ନୂତନ ସରଣୀ ପ୍ରସ୍ତୁତ କରିଛି, କହିବା ବାହୁଲ୍ୟ ମାତ୍ର। ପୂର୍ବ ପ୍ରଚଳିତ ସମ୍ବାଦଧର୍ମୀ ଗଦ୍ୟ ଭାଷାକୁ ଲେଖକ ଏହି ପର୍ଯ୍ୟାୟରେ ପରିହାସ କରି ଏକ ନୂତନ ରୀତିରେ ଶବ୍ଦ ଗୁମ୍ଫନ କରିଛନ୍ତି। କେତେକ ସ୍ଥଳରେ ଭାଷା ସଂସ୍କୃତାନୁସାରୀ ହୋଇଛି। ତଥାପି ଆଧୁନିକ ଗଳ୍ପକଳାର ସମସ୍ତ ରୀତିକୁ ରକ୍ଷାକରି ଏହା ପ୍ରାରମ୍ଭିକ ପର୍ଯ୍ୟାୟରେ ଓଡ଼ିଆ ଗଳ୍ପ ସାହିତ୍ୟର ଧାରାକୁ ପୁଷ୍ଟ କରିଛି ଓ ଭବିଷ୍ୟତ ପାଇଁ ନୂତନ ଆଲୋକବର୍ତ୍ତିକା ହୋଇଛି।

୧୮୮୭ ମସିହାରେ 'ନବସମ୍ବାଦ' ପତ୍ରିକାରେ ରାଧନାଥଙ୍କର 'ଭ୍ରମଣକାରୀର ପତ୍ର' ପ୍ରକାଶିତ। ଭ୍ରମଣ ସାହିତ୍ୟ ହେଉଛି ସାହିତ୍ୟିକର ଏକ ସୁବିସ୍ତୃତ ଜୀବନର ପ୍ରତିଲିପି। ମାତ୍ର ରାଧାନାଥଙ୍କ ଭ୍ରମଣକାରୀର ପତ୍ର ରଚନା ବେଳକୁ ଓଡ଼ିଶାରେ ଗମନାଗମନର ସୁବିଧା ନଥିଲା, ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯିବାକୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡୁଥିଲା। ତଥାପି କବିପ୍ରାଣ ରାଧାନାଥ ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟରେ ପୁଲକିତ ହୋଇ ବହୁ ପ୍ରତିବନ୍ଧକ ସତ୍ତ୍ୱେ ତାଳଚେର, ବାମଣ୍ଡା, ପାଲଲହଡ଼ା, କେନ୍ଦୁଝର ପ୍ରଭୃତି ଅଞ୍ଚଳକୁ ଯାତ୍ରା କରିଛନ୍ତି ଓ ତାହାକୁ 'ଭ୍ରମଣକାରୀର ପତ୍ର' ମଧ୍ୟରେ ବ୍ୟକ୍ତ କରିଛନ୍ତି। ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଉଚ୍ଛ୍ୱସିତ ପ୍ରଶଂସାରେ କବି ଶତମୁଖ ହୋଇପଡ଼ିଛନ୍ତି। ପ୍ରକୃତିର ନବରୂପ ଓ ସୌନ୍ଦର୍ଯ୍ୟରେ ସେ ବିମୋହିତ ହୋଇଛନ୍ତି, ଦେବଗଡ଼ଠାରେ ପ୍ରଧାନପାଟ ଜଳ-ପ୍ରପାତ କବି ମନରେ ଆଣିଛି ଅଫୁରନ୍ତ ଆନନ୍ଦ। ଏହି ବିଷୟକୁ କବି ପ୍ରକାଶ କରିଛନ୍ତି ତାଙ୍କର ଭ୍ରମଣବୃତ୍ତାନ୍ତରେ। ତାଳଚେରର ଅବସ୍ଥିତି ସମ୍ପର୍କରେ ରାଧାନାଥ ଉଲ୍ଲେଖ କରି ପ୍ରକାଶ କରିଛନ୍ତି- "ତାଳଚେର ଗଡ଼ କ୍ଷୁଦ୍ର ସ୍ଥାନ ହେଲେହେଁ ଏହାର ଅବସ୍ଥଇତି ଅତି ସୁନ୍ଦର। ଗଡ଼କାନ୍ଥରୁ ମହାରଣ୍ୟ ଆରମ୍ଭ ହୋଇ ବାମଣ୍ଡା ସୀମା ପର୍ଯ୍ୟନ୍ତ ବିସ୍ତୃତ ରହିଅଛି। ବ୍ରାହ୍ମଣୀ ନଦୀ

ନଗରର ପଦ ଧୌତ କରି ପ୍ରବାହିତ ହେଉଅଛି। ନଗରକାନ୍ଥିରେ ନଦୀଶଯ୍ୟା ଗଭୀର ଓ ପ୍ରସ୍ତରମୟ, ନଗରର ଅବସ୍ଥା ଅତି ପରିଷ୍କୃତ। ମୁନିସିପାଲ କଟକ ଅପେକ୍ଷା ଅରଣ୍ୟ ତାଳଚେର ଶତ ଗୁଣରେ ପରିଷ୍କୃତ। ରାଜଦାଣ୍ଡମାନ୍ ସର୍ବଦା ସୁସଂସ୍କୃତ ଅବସ୍ଥାରେ ପରିଲକ୍ଷିତ ହେଉଥିବାର ବୋଧହେଲା।'' (୩)

ବାମଣ୍ଡା ଭ୍ରମଣ ଅବସରରେ ରାଧାନାଥ ସେଠାରେ ପ୍ରାୟ ଛଅ ଦିନ ଅବସ୍ଥାନ କରିଛନ୍ତି ବୋଲି ପୁସ୍ତକରେ ସୂଚନା ଦେଇଛନ୍ତି। ସେ ଉଲ୍ଲେଖ କରିଛନ୍ତି ''ଏହି ୬ ଦିନ ମଧ୍ୟରେ ସ୍ଥାନୀୟ ତାବତ୍ ଦ୍ରଷ୍ଟବ୍ୟ ଦର୍ଶନ କଲୁଁ। ପୂର୍ବୋକ୍ତ 'ପ୍ରଧାନ ପାଟ' ଜଳପ୍ରପାତ ବାମଣ୍ଡାର ସର୍ବପ୍ରଧାନ ଦୃଶ୍ୟ। କେନ୍ଦୁଝରର ଖଣ୍ଡାଧାର ପ୍ରପାତ ଆମ୍ଭେମାନେ ଦେଖିନାହୁଁ, ମାତ୍ର ପଞ୍ଚବଟୀର ଅନତିଦୂରବର୍ତ୍ତୀ ଗୋଦାବରୀର ଜଳପ୍ରପାତ ଏବଂ ଜବ୍ଲଲପୁରର ନିକଟସ୍ଥ ନର୍ମଦାର ଧୂଆଁଧାର ନାମକ ଜଳପ୍ରପାତ ଆମ୍ଭେମାନେ ଏଥିପୂର୍ବେ ଦେଖିଥିଲୁଁ। ଅଥଚ ପ୍ରଧାନପାଟ ସମ୍ମୁଖରେ ଦଣ୍ଡାୟମାନ ହୋଇ ଆମ୍ଭେମାନେ ଭାବିଲୁଁ ଯେ, ଏ ଦୃଶ୍ୟ ନଦେଖିଲେ ଚକ୍ଷୁଷ୍ମତାର ପୂର୍ଣ୍ଣ ଫଳରୁ ବଞ୍ଚିତ ହୋଇଥାନ୍ତୁ।'' (୪) ରାଧାନାଥ ବାମଣ୍ଡା ଭ୍ରମଣ କାଳରେ 'ପ୍ରଧାନ ପାଟ'କୁ ପ୍ରାୟ ତିନିଥର ଦେଖିଛନ୍ତି। ଏହା କବିଙ୍କ ମନରେ ଆଶାତୀତ ଉନ୍ମାଦନା ଓ ପୁଲକ ସୃଷ୍ଟି କରିଛି। ୧୮୮୬ ମସିହାରେ ବାମଣ୍ଡାର ରାଜଧାନୀ ଦେବଗଡ଼ଠାରେ ରାଜା ବାସୁଦେବ ସୁଦ୍ଧଳଦେବ 'ଜଗନ୍ନାଥ ବଲ୍ଲଭ' ନାମକ ଏକ ପ୍ରେସ୍ ସ୍ଥାପନ କରିଥିଲେ। ବାମଣ୍ଡା ଭ୍ରମଣ ଅବକାଶରେ ରାଧାନାଥଙ୍କ ସହିତ ବାସୁଦେବ ସୁଦ୍ଧଳଦେବଙ୍କ ସାକ୍ଷାତ ହୋଇଥିଲା। ଏହାଫଳରେ ୧୮୮୭ ମସିହାରେ ବାସୁଦେବ ସୁଦ୍ଧଳଦେବଙ୍କ ପୃଷ୍ଠପୋଷକତାରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ବାମଣ୍ଡାରୁ ଏକ ସାପ୍ତାହିକ ପତ୍ରିକା 'ସମ୍ବଲପୁର ହିତୈଷିଣୀ' ପ୍ରକାଶ ପାଇଥିଲା। ଏହି ପତ୍ରିକା ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲା। ବାମଣ୍ଡା ଭ୍ରମଣ କାଳରେ ରାଧାନାଥ ସୁଦ୍ଧଳ-ଦେବଙ୍କଠାରୁ ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା ଲାଭ କରିଥିଲେ। ଫଳତଃ ଭ୍ରମଣକାରୀର ପତ୍ର 'ବାମଣ୍ଡା' ପର୍ଯ୍ୟାୟରେ ସେ ମହାରାଜାଙ୍କ ପ୍ରଶସ୍ତି ବହୁଭାବରେ କରିବା ଅନୁମେୟ।

ଏହାପରେ କବି ଲହଡ଼ା ଓ କେନ୍ଦୁଝର ଭ୍ରମଣରେ ଯାଇଛନ୍ତି। ଲହଡ଼ାରେ ଓଡ଼ିଶାର ସର୍ବୋଚ୍ଚ ଓ ସର୍ବପ୍ରଧାନ ପର୍ବତ ମାଲ୍ୟଗିରି ସଂସ୍ପର୍ଶରେ ଆସିଛନ୍ତି। ସେହି ପର୍ବତର ସନ୍ଦର୍ଶନରେ କବିଙ୍କର ରାମାୟଣର ମାଲ୍ୟବନ୍ତ କଥା ସ୍ମୃତିକୁ ଆସିଛି ଓ ତାଙ୍କୁ ବିସ୍ମିତ କରିଦେଇଛି। କେନ୍ଦୁଝର ଭ୍ରମଣ କାଳରେ ସେ ଭୂୟାଁ ଜାତିର ସଂସ୍ପର୍ଶରେ ଆସିଥିଲେ। ସେହି ଆଦିବାସୀ ଭୂୟାଁମାନଙ୍କ ଦୈନନ୍ଦିନ ଚାଲିଚଳଣି ସେମାନଙ୍କର ଭାଷା, ସଂସ୍କୃତି ଓ ସଭ୍ୟତା କବି ରାଧାନାଥଙ୍କୁ ବିମୁଗ୍ଧ କରିଥିଲା।

'ଭ୍ରମଣକାରୀର ପତ୍ର' ରଚନା କାଳକୁ ରାଧାନାଥଙ୍କ ଅନୁଭୂତି ଶାଣିତ, ତୀବ୍ର ଓ ପ୍ରଶସ୍ତ ହୋଇସାରିଥିଲା। ତେଣୁ ତାଙ୍କ ପ୍ରତ୍ୟକ୍ଷ ଅନୁଭୂତିର କଳାତ୍ମକ ରୂପ

ଏହା ମଧ୍ୟରେ ପ୍ରତିଫଳିତ। 'ବିବେକୀ' ଓ 'ଇତାଲୀୟ ଯୁବା'ର ଦୀର୍ଘ ସମାସବହୁଳ ଗଦ୍ୟ ଓ ଭାଷା ବ୍ୟବହାରରେ ବିଶୃଙ୍ଖଳା ଏଥିରେ ରାଧାନାଥ ପରିହାର କରିଛନ୍ତି। ଏଥିରେ ତାଙ୍କ ବକ୍ତବ୍ୟ ଅତ୍ୟନ୍ତ ସ୍ପଷ୍ଟ ଓ ମାର୍ଜିତ। ସମକାଳୀନ ଉତ୍କଳର ବର୍ଣ୍ଣିତ ସ୍ଥାନମାନଙ୍କରେ କଳା-ସଂସ୍କୃତି-ସମାଜ-ସାହିତ୍ୟ-ଚଳଣିକୁ ରାଧାନାଥ ଏହି ଗ୍ରନ୍ଥରେ ପ୍ରକଟିତ କରିଛନ୍ତି। ବହୁ ବନ୍ଧୁର–ପଥ ଅତିକ୍ରମକରି ସେ ଯେଉଁ ତିକ୍ତ ମଧୁର ଅନୁଭୂତି ସଂଗ୍ରହ କରିଛନ୍ତି ତାହା କଳାତ୍ମକ ଭାବେ ବ୍ୟାଖ୍ୟା କରିଛନ୍ତି 'ଭ୍ରମଣକାରୀର ପତ୍ର' ମଧ୍ୟରେ। ତେଣୁ ଓଡ଼ିଆ ସାହିତ୍ୟର ଏକ ପ୍ରାଥମିକ ପ୍ରଚେଷ୍ଟା ହେଲେ ଭ୍ରମଣ ସାହିତ୍ୟ ଜଗତରେ ଏହା ଏକ ଅନୁପମ ସୃଷ୍ଟି।

ଭ୍ରମଣ ସମୟରେ ବାମଣ୍ଡାର ପ୍ରାକୃତିକ ଦୃଶ୍ୟ କବି ମନରେ ବାରମ୍ବାର ଉଙ୍କି ମାରିଛି। ତେଣୁ 'ଭ୍ରମଣକାରୀର ପତ୍ର' ରଚନା ପରେ ସେ ବାମଣ୍ଡା ଓ ବାମଣ୍ଡାର ମହାରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସମ୍ପର୍କରେ ଯାହା ଅନୁଭବ କରିଛନ୍ତି ତାହାକୁ ନେଇ ଦୁଇଟି ପ୍ରବନ୍ଧ ପ୍ରକାଶିତ କରିଛନ୍ତି। (୪) 'ବାମଣ୍ଡା', ପ୍ରବନ୍ଧଟି 'ଓଡ଼ିଆ ଓ ନବସମ୍ବାଦ'ରେ ୧୮୯୬ ମସିହାରେ ପ୍ରକାଶ ପାଇଥିଲା। ଏହି ପ୍ରବନ୍ଧରେ ସେ ଉଲ୍ଲେଖ କରିଥିଲେ– "ମୁଁ ସମଗ୍ର ଓଡ଼ିଶା ଭ୍ରମଣ କରି ଏପରି ଗୋଟିଏ ସ୍ଥାନ ଦେଖି ନଥିଲି। ପ୍ରକୃତିର ଶୋଭା ଓ ମନୁଷ୍ୟର ଅଧ୍ୟବସାୟର ଏପରି ସମାବେଶ ଦେଖି କିଏ ପ୍ରୀତ ନ ହେବ? କି ଭକ୍ତ, କି କବି, କି ବିଷୟୀ, ସମସ୍ତଙ୍କ ପକ୍ଷରେ ଏ ସ୍ଥାନ ସମାନ ଉପଯୋଗୀ। ରାଜଧାନୀ ଦେବଗଡ଼ ଅପେକ୍ଷା ଏହାର ଜଳବାୟୁ ସମ୍ଭବତଃ ଅଧିକ ସ୍ୱାସ୍ଥ୍ୟକର। ଶୈଳପ୍ରାଚୀର– ବେଷ୍ଟିତ ହୋଇ ସୁଦ୍ଧା ଏଠାର ବିଶାଳ ଚକ୍ରବାଳ ପବନର ଅପ୍ରତିହତ ସଞ୍ଚାର ସକାଶେ ସମ୍ୟକ୍ ଉପଯୋଗୀ। ବର୍ଷାକାଳେ ଏ ସ୍ଥାନ କେଡ଼େ ମନୋହର ହେଉନଥିବ? ଆକାଶରେ ଜଳଭାରାବନତ ଜଳଦମାଳା, କେକାମୁଖରିତ ଆସାରସିକ୍ତ ପ୍ରଫୁଲ୍ଲ ବନରାଜି ପ୍ରତିଭାତ ହେଉଥିବ। ମେଘଦୂତ ବର୍ଣ୍ଣିତ ଅଧିକାଂଶ ଦୃଶ୍ୟ ଏଠାରେ ସୁଲଭ ଏବଂ ଏହିପରି ସ୍ଥାନ ଏକା ମେଘଦୂତ ପାଠର ଉପଯୋଗୀ। ଶୁଣିବାରେ ସୁଢ଼ଳଦେବ ସାହିତ୍ୟଚର୍ଚ୍ଚା ଏବଂ କବିତା ରଚନା ଉଦ୍ଦେଶ୍ୟରେ ବଳମଗଣ୍ଡ ଶୈଳଶିଖରରେ ଏହି ଗୃହନିର୍ମାଣ କରାଇଅଛନ୍ତି। ଏଭଳି ସଂକଳ୍ପ ତାଙ୍କର ପାଣ୍ଡିତ୍ୟ ଏବଂ ଶକ୍ତିମତ୍ତାର ସମୁଚିତ, ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ। କବିତା ଅନନ୍ୟାସହା ଦେବତା; ଏହା ସେ ଉତ୍ତମରୂପେ ଜାଣନ୍ତି।" (୫)

'ସାର ରାଜା ବାସୁଦେବ ସୁଢ଼ଳଦେବ K.C.I.E.'ପ୍ରବନ୍ଧ ମଧ୍ୟରେ ରାଧାନାଥ ରାଜା ବାସୁଦେବଙ୍କୁ ଜଣେ ଉପଯୁକ୍ତ ପ୍ରଜାପାଳକ ଓ ଶ୍ରେଷ୍ଠ ରାଜପୁରୁଷ ଭାବେ ବର୍ଣ୍ଣନା କରିଛନ୍ତି। ତାଙ୍କ ରାଜ୍ୟରେ ସମସ୍ତେ କିପରି ସୁଖ ଓ ଶାନ୍ତିରେ ଜୀବିକାନିର୍ବାହ କରିବେ ତାହା ହୋଇଛି ବାସୁଦେବ ସୁଢ଼ଳଦେବଙ୍କର ପ୍ରଧାନ କର୍ତ୍ତବ୍ୟ। ତେଣୁ ସେ ନିଜେ ନିରାଡ଼ମ୍ବର, ନିରଭିମାନ, ନିରଳସ ଏବଂ କର୍ତ୍ତବ୍ୟନିଷ୍ଠ ଜୀବନଯାପନ କରିଛନ୍ତି।

ରାଧାନାଥ ଉଲ୍ଲେଖ କରିଛନ୍ତି– ''ଇତିହାସ କହେ ଯେ ବୀର ବିକ୍ରମାଦିତ୍ୟଙ୍କର ଗୃହର ସାଜସଜ୍ଜା ଖଣ୍ଡିଏ ମଶିଣା ଏବଂ ଗୋଟିଏ ଜଳପୂର୍ଣ୍ଣ ଢାଳ ମାତ୍ର ଥିଲା। ବାସୁଦେବଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଗୃହର ସାଜସଜ୍ଜା ଅବିକଳ ସେହିପରି ଥିଲା। ଗୃହର ସାଜସଜ୍ଜା ଯେପରି, ଶାରୀରିକ ବେଶଭୂଷା ମଧ୍ୟ ତଦନୁରୂପ। ଆଡ଼ମ୍ବର ତାଙ୍କୁ ସ୍ପର୍ଶ କରିନଥିଲା।'' (୬) ପୁନଶ୍ଚ ସେ ଥିଲେ ଜଣେ ସାହିତ୍ୟିକ, ସାହିତ୍ୟ ସ୍ରଷ୍ଟା ଓ ସାହିତ୍ୟର ପୃଷ୍ଠପୋଷକ। ଓଡ଼ିଆ ସାହିତ୍ୟର ବିକାଶପାଇଁ ସେ ଯାହା କରିଛନ୍ତି, ତାହା କ୍ୱଚିତ୍ ରାଜାଙ୍କ ପକ୍ଷରେ ସମ୍ଭବ। ତାଙ୍କ ସଙ୍କଳିତ 'ଅଳଙ୍କାର ବୋଧୋଦୟ' ତାଙ୍କ ରଚିତ ''ଚିତ୍ରୋତ୍ପଳା' ଓଡ଼ିଆ ସାହିତ୍ୟରେ ସୁପରିଚିତ। 'ଚିତ୍ରୋତ୍ପଳା' ଏକ କ୍ଷୁଦ୍ର କାବ୍ୟ ହେଲେ ମଧ୍ୟ ଓଡ଼ିଆ ଭାଷାର ଏହା ଏକ ଉଲ୍ଲେଖଯୋଗ୍ୟ ରଚନା।

ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ପଠିତ 'ଉତ୍କଳ ସାହିତ୍ୟର ଉନ୍ନତି' ରାଧାନାଥଙ୍କର ପରବର୍ତ୍ତୀ କାଳରେ ରଚିତ ଏକ ସୁଚିନ୍ତିତ ପ୍ରବନ୍ଧ ତଥା ଅଭିଭାଷଣ। ଜାତି, ଦେଶ ଓ ସାହିତ୍ୟର ଉନ୍ନତି ପାଇଁ ସେ ଏଥିରେ ଚିନ୍ତା କରିଛନ୍ତି। ସେ ଅନୁଭବ କରିଛନ୍ତି ଜାତିର ଉନ୍ନତି ପାଇଁ ସାହିତ୍ୟର ଉନ୍ନତି ଏକାନ୍ତ ଅପରିହାର୍ଯ୍ୟ। ସେହି ପ୍ରସଙ୍ଗ ଅଭିଭାଷଣ ମାଧ୍ୟମରେ ସେ ଉପସ୍ଥାପିତ କରି କହନ୍ତି– ''ଜାତିକୁ ଉନ୍ନତି କରିବାକୁ ହେଲେ ଉନ୍ନତ ଜାତୀୟ ସାହିତ୍ୟ ନିତାନ୍ତ ପ୍ରୟୋଜନୀୟ। ନବ୍ୟ ଶିକ୍ଷିତମାନଙ୍କ ମଧ୍ୟରେ ସମୟ ସମୟରେ ଏହିପରି ମତବାଦ ମଧ୍ୟ ଶୁଣାଯାଏ ଯେ, ସାହିତ୍ୟ ଚର୍ଚ୍ଚା କିମ୍ବା ସାହିତ୍ୟୋନ୍ନତିର ଚେଷ୍ଟାର ଆବଶ୍ୟକତା ନାହିଁ, ବିଜ୍ଞାନ ଆମ୍ଭମାନଙ୍କର ଏକମାତ୍ର ଶିକ୍ଷା ଏବଂ ଆଲୋଚନାର ବିଷୟ ହେବା ଉଚିତ।'' (୭) ଏହି ପ୍ରବନ୍ଧ ରଚନା ଓ ଉତ୍କଳ ସାହିତ୍ୟ ସମାଜର ଅଧିବେଶନରେ ପାଠ କାଳରେ ଓଡ଼ିଆ ସାହିତ୍ୟ ଅବସ୍ଥା ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ଥିଲା। ଉତ୍କଳୀୟ ଜନଜୀବନ ସାହିତ୍ୟ ସଂସ୍କୃତି ପାଇଁ ବ୍ୟସ୍ତ ଓ ବିବ୍ରତ ନଥିଲା। ତେଣୁ ରାଧାନାଥ ତାଙ୍କ ଅଭିଭାଷଣ ପ୍ରସଙ୍ଗରେ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଆଲୋଚ୍ୟ ପ୍ରବନ୍ଧ ମଧ୍ୟରେ ଯେଉଁ ପ୍ରସ୍ତାବ ଆଗତ କରିଥିଲେ ତାହା ହେଲା– ୧. ସାଧାରଣ ଓଡ଼ିଆ ପୁସ୍ତକାଳୟ ସ୍ଥାପନ ଏବଂ ପ୍ରାଚୀନ ପାଣ୍ଡୁଲେଖ୍ୟ ସଂଗ୍ରହ, ୨. ନବ୍ୟ ଲେଖକମାନଙ୍କ ଉତ୍ସାହ ସକାଶେ ଗୋଟିଏ ପାଣ୍ଠି ସଂସ୍ଥାପନ, ୩. ଉତ୍କଳ ଭାଷାର ଇତିହାସ ପ୍ରଣୟନ, ୪. ପ୍ରାଚୀନ ଉତ୍କଳ ସାହିତ୍ୟର ଆଲୋଚନା। ଏହି ଅଭିଭାଷଣ ମଧ୍ୟରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଯେଉଁ ପରିମାଣରେ ଆଲୋଚନା ହେବା ଉଚିତ୍ ତାହାର ଏକ ଶତାଂଶ ଆଲୋଚନା ହୋଇପାରିନଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ। ଏହା ସହିତ ବଙ୍ଗଳା ଭାଷା ସାହିତ୍ୟ କ୍ରମଶଃ ଓଡ଼ିଆ ଭାଷା ସାହିତ୍ୟକୁ ଗ୍ରାସ କରୁଥିବାରୁ ସେ ନିଜର ପ୍ରତିକ୍ରିୟା ପ୍ରକାଶ କରିଥିଲେ। ଏଥିରୁ ରାଧାନାଥଙ୍କର ଗଭୀର ସ୍ୱଦେଶପ୍ରେମ, ଭାଷା ଓ ସଂସ୍କୃତି ପ୍ରୀତି ଲକ୍ଷ୍ୟଣୀୟ।

'ଟିପାଖାତା' ରାଧାନାଥଙ୍କର ଅନ୍ୟ ଏକ ଗଦ୍ୟ ରଚନା। ନିଜ ଜୀବଦ୍ଦଶାରେ

ଓଡ଼ିଶାର ବିଭିନ୍ନ ସ୍ଥାନକୁ ଗମନକାଳରେ ରାଧାନାଥ ସାଥିରେ ନେଇଥିବା ଖାତାରେ ଯେଉଁ ସ୍ମରଣୀୟ ଘଟଣା ଓ ବିଷୟ ସମ୍ବନ୍ଧରେ ସଂକ୍ଷିପ୍ତରେ ଟିପି ରଖୁଥିଲେ ତାହା ହେଉଛି ତାଙ୍କର ଟିପାଖାତା। ଏ ସମ୍ପର୍କରେ ରାଧାନାଥ ଗ୍ରନ୍ଥାବଳୀରେ ଉଲ୍ଲେଖ ଅଛି– "କବିବର କି ଭ୍ରମଣ କାଳରେ, କି ଅଧ୍ୟୟନ କାଳରେ ଖଣ୍ଡିଏ ଖାତା ଓ ଗୋଟିଏ ପେନ୍‌ସିଲ୍ ସର୍ବଦା ନିକଟରେ ରଖୁଥିଲେ। କୌଣସି ନୂତନ ବିଷୟ ଦେଖିଲେ ବା ନୂତନ ବିଷୟ ପାଠକଲେ ଅଥବା ନୂତନ ଭାବ ମନରେ ଉଦିତ ହେଲେ ସଙ୍ଗେ ସଙ୍ଗେ ତାହା ସାଙ୍କେତିକ ଆକାରରେ ଟିପି ରଖୁଥିଲେ। ଏହିପରି ତାଙ୍କର ଅନେକଗୁଡ଼ିକ ଟିପାଖାତା ସଞ୍ଚିତ ହୋଇ ରହିଅଛି। ସେଗୁଡ଼ିକ ନାନା ବିଷୟାବଳୀରେ ପରିପୂର୍ଣ୍ଣ।" (୮) 'ଭ୍ରମଣକାରୀର ପତ୍ର' ପରି ରାଧାନାଥ 'ଟିପାଖାତା' ମଧ୍ୟରେ ଓଡ଼ିଶାର ଯେଉଁ ସ୍ମରଣୀୟ ଓ ଐତିହାସିକ ସ୍ଥାନ ଭ୍ରମଣ କରିଛନ୍ତି, ଯେଉଁ ସ୍ଥାନର ପ୍ରାକୃତିକ ଦୃଶ୍ୟ ତାଙ୍କ ମନୋଭୂମିରେ ଗଭୀର ରେଖାପାତ କରିଛି ସେହି ସ୍ଥାନର ବିଭିନ୍ନ ଦୃଶ୍ୟ, ସେ ସ୍ଥାନର ଶାସକ, ରାଜା, ରାଜ୍ୟ ଶାସନ, ପରିବେଶ ପ୍ରଭୃତି ସମ୍ପର୍କରେ ଉଲ୍ଲେଖ କରିଛନ୍ତି। ଏହାର ମୂଳ ବିଷୟ ଢ଼େଙ୍କାନାଳରୁ ଆରମ୍ଭ ହୋଇ ତାଳଚେର, ସମ୍ବଲ, ଗହମ, ଖମାର, ମାଲ୍ୟଗିରି, ବାମଣ୍ଡା ପ୍ରଭୃତି ସ୍ଥାନକୁ ଗତି କରିଛି। ଏଥିରେ ରାଧାନାଥଙ୍କର ଅନ୍ତଃପ୍ରକୃତି ବହିଃ ପ୍ରକୃତି ସହିତ ଏକାତ୍ମ୍ୟ ହୋଇ ଉଠିଛି। ଟିପାଖାତାର ଆମୂଳଚୂଳ ପ୍ରକୃତି ବର୍ଣ୍ଣନାରେ ପରିପୂର୍ଣ୍ଣ ହୋଇପଡ଼ିଛି।

'ଖଣ୍ଡିଏ ପତ୍ର' ମଧ୍ୟରେ ରାଧାନାଥ ଓଡ଼ିଆ ସାହିତ୍ୟରେ ଦେଖା ଦେଇଥିବା ଅନୁକରଣ ନୀତିର ତୀବ୍ର ବିରୋଧ କରି ପତ୍ରିକାର ସମ୍ପାଦକଙ୍କ ନିକଟକୁ ଏକ ପ୍ରତିବାଦପୂର୍ଣ୍ଣ ପତ୍ର ପ୍ରେରଣ କରିଛନ୍ତି। ରାଧାନାଥ ଅନ୍ୟର ଲେଖାକୁ ଅବିକଳ ଅନ୍ୟ ଭାଷାରୁ ଆଣି କିଛି ଦିନପରେ ନିଜ ଭାଷାରେ ସ୍ୱନାମରେ ପ୍ରକାଶ କରିବାର ପ୍ରବୃତ୍ତିକୁ ଏଥିରେ ନିନ୍ଦା କରିଛନ୍ତି। ଏଥିରେ ସେ ସ୍ପଷ୍ଟ ଭାବେ ଉଲ୍ଲେଖ କରିଛନ୍ତି– ବିଗତ ସଂଖ୍ୟା 'ଗୁଣଦର୍ପଣ'ରେ ଲିଖିତ ଜାତୀୟ ସଂଗୀତ ଶୀର୍ଷକ ପଦ୍ୟଟି ଏହି ଶ୍ରେଣୀର ବୋଧ ହେଉଅଛି। ପ୍ରାୟ କେତେକ ବର୍ଷ ପୂର୍ବେ ସୁଲେଖକ ବାବୁ ଗୋପବନ୍ଧୁ ଦାସ ଗୋଟିଏ ସୁନ୍ଦର ସଂଗୀତ ଲେଖିଥିଲେ। ପୂର୍ବୋକ୍ତ ପଦ୍ୟଟି ସେହି ସଂଗୀତର ବିରୂପୀକୃତ ଏବଂ ବିକଳାଙ୍ଗୀକୃତ ସଂସ୍କରଣ ବ୍ୟତୀତ ଆଉ କିଛି ନୁହେଁ। ସେ ପୁନଶ୍ଚ ସଂପାଦକ ମହୋଦୟଙ୍କୁ ପ୍ରଶ୍ନ ପଚାରିଛନ୍ତି– ଗୁଣଦର୍ପଣ ସଂପାଦକ ଏ ଶ୍ରେଣୀର ପଦ୍ୟକୁ କାହିଁକି ପତ୍ରସ୍ଥ କଲେ ? କବିତା ତ ଦୂରର କଥା ଏ ଭଲ ପଦ୍ୟ ସୁଦ୍ଧା ନୁହେଁ। ତାଙ୍କର ଏପରି ପଦ୍ୟଦ୍ୱାରା କଦାଚ ପ୍ରତିଷ୍ଠା ବଢ଼ିବ ନାହିଁ। ଏପରି ଗଦ୍ୟ କେବଳ ଅନ୍ୟୋନ୍ୟ- ଶ୍ଳାଘାସମ୍ପାଦିନୀ ସଭାରେ ପଠିତ ହେବାର ଯୋଗ୍ୟ।" (୯) ତେଣୁ ରାଧାନାଥ ସେହି କବି ବା ଲେଖକଙ୍କୁ ଏପରି କାର୍ଯ୍ୟରୁ ନିବୃତ୍ତ ରହିବାକୁ ଉପଦେଶ ଦେଇଛନ୍ତି ଓ ନିଜସ୍ୱ ରୀତିରେ ସାହିତ୍ୟ ସୃଷ୍ଟିକରିବାକୁ ନିବେଦନ କରିଛନ୍ତି। ଯହିଁରେ ସଂପୃକ୍ତ କବି ବା ଲେଖକର ମୌଳିକତା ପ୍ରତିହତ

ହେବ। ସାହିତ୍ୟ କ୍ଷେତ୍ରରେ ମିତ୍ରାକ୍ଷର ଓ ଅମିତ୍ରାକ୍ଷର ଛନ୍ଦକୁ ନେଇ ସାହିତ୍ୟିକମାନଙ୍କ ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ଓ ମତାନ୍ତର ପ୍ରକାଶ ପାଇଥିଲା କବି ରାଧାନାଥ ସେ ସମ୍ପର୍କରେ ''ସାହିତ୍ୟ ସମ୍ବନ୍ଧରେ ଏଣୁ ତେଣୁ ପାଞ୍ଚ କଥା'' ମଧ୍ୟରେ ତାହାକୁ ବ୍ୟକ୍ତ କରିଛନ୍ତି। ସ୍ୱମତ ଉପସ୍ଥାପନ କରିବାକୁ ଯାଇ ମିତ୍ରାକ୍ଷର ଛନ୍ଦ ଅପେକ୍ଷା ଅମିତ୍ରାକ୍ଷର ଛନ୍ଦ ରଚନା ଅଧିକ କଷ୍ଟସାଧ୍ୟ ବୋଲି ସେ ଅନୁଭବ କରିଛନ୍ତି।

୧୮୮୦ ମସିହାରେ 'ସମ୍ବଲପୁର ହିତୈଷିଣୀ'ରେ ପାର୍ବତୀ କାବ୍ୟ ପ୍ରକାଶ ପାଇଥିଲା। ଏହା ୧୮୮୦ ମସିହା ଅଗଷ୍ଟ ମାସରୁ ଆରମ୍ଭ ହୋଇ ଡିସେମ୍ବର ମାସ ପର୍ଯ୍ୟନ୍ତ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା ଓ ୧୮୯୧ ମସିହାରେ ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ ଏହା ପୁସ୍ତକାକାରରେ ପ୍ରକାଶିତ ହୋଇ ଆଲୋକକୁ ଆସିଥିଲା। ମାତ୍ର ପାର୍ବତୀ କାବ୍ୟ ରଚନା କାଳରେ ୧୮୮୦ ମସିହାରେ ରାଧାନାଥଙ୍କୁ କେନ୍ଦ୍ରକରି ସମଗ୍ର ଓଡ଼ିଶାରେ ଯେଉଁ ପାଠ୍ୟ ପୁସ୍ତକ ଆନ୍ଦୋଳନ ଦେଖାଦେଇଥିଲା ସେଥିରେ ତାଙ୍କୁ ଅତି ମାତ୍ରାରେ ଶରବ୍ୟ ହେବାକୁ ପଡ଼ିଥିଲା। ଏହି ସମୟରେ କେତେକ ବ୍ୟକ୍ତିଙ୍କ ଅଭିଯୋଗ ଫଳରେ ତାଙ୍କୁ ବାରମ୍ବାର ଉଚ୍ଚ କର୍ତ୍ତୃପକ୍ଷଙ୍କ ସମ୍ମୁଖୀନ ହେବାକୁ ହୋଇଥିଲା। ଏହି ତଦନ୍ତର ପରିଶେଷରେ ରାଧାନାଥଙ୍କର କୌଣସି ଅସୁବିଧା ହୋଇନଥିଲେ ମଧ୍ୟ ସେ ଦୀର୍ଘଦିନ ଧରି ଗଭୀର ମାନସିକ ଦୁଶ୍ଚିନ୍ତା ମଧ୍ୟରେ ଗତି କରିଥିଲେ।

ଏହି କାବ୍ୟ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ପ୍ରକାଶ ପାଇବା ପରେ କାବ୍ୟ ବର୍ଣ୍ଣିତ ପିତା ଓ କନ୍ୟାଙ୍କର ପ୍ରଣୟ କାହାଣୀକୁ କେନ୍ଦ୍ରକରି ସମାଲୋଚକମାନେ ଯେଉଁ କଟୁ ମନ୍ତବ୍ୟ ଦେଇଥିଲେ ସେଥିରେ ରାଧାନାଥ ଭାଙ୍ଗିପଡ଼ିଥିଲେ। ଏହା ସହିତ ନିଜ ପୁତ୍ର ସେହି ସମୟରେ ଦୁରାରୋଗରେ ପ୍ରପୀଡ଼ିତ ହେତୁ ତାହା ତାଙ୍କୁ ଖୁବ୍ ବାଧିଥିଲା ଓ ତାଙ୍କ ସଂସାରୀ ମନକୁ ଟହଲାଇ ଦେଇଥିଲା। ସେହି ଦୁଃଖ ତାହାଙ୍କୁ 'ପାର୍ବତୀ' ରଚନାରୁ ବିରତ କରିଥିବା ବିଷୟ ସ୍ଥାନାନ୍ତରରେ କଥିତ ହୋଇଥିଲା। ଯେତିକି କବିତାକାରରେ ଥିଲା ତାହା ପୂର୍ବରୁ ମୁଦ୍ରିତ ହୋଇଅଛି। ସେହି ଦୁଃଖକୁ ସ୍ମରଣୀୟ କରିବାପାଇଁ ପାର୍ବତୀକୁ ଅସଂପୂର୍ଣ୍ଣ ରଖିଥିଲେ ହେଁ ଏହାର ଉତ୍ତରାର୍ଦ୍ଧ 'ପାର୍ବତୀ କାବ୍ୟର ଉପସଂହାର' ଗଦ୍ୟାକାରରେ ସେ ଲେଖି ରଖିଥିଲେ। ତାଙ୍କର ସ୍ୱର୍ଗାରୋହଣ ପୂର୍ବରୁ ଉତ୍କଳର ବହୁ ସଂଖ୍ୟକ ବନ୍ଧୁଙ୍କ ଅନୁରୋଧ କ୍ରମେ ତାହାକୁ କବିତାକାରରେ ସାଙ୍ଗ କରିବାର ଅଭିଳାଷ ଥିଲା, ମାତ୍ର ଦାରୁଣ ବିଧି ବାମ ହେବାରୁ ତାଙ୍କର ସେ ଅଭିଳାଷ ପୂର୍ଣ୍ଣ ହୋଇପାରିଲା ନାହିଁ। ସେହି ଗଦ୍ୟ କାବ୍ୟାଂଶ ବର୍ତ୍ତମାନ ଅବିକଳ ପ୍ରଦତ୍ତ ହେଲା— ଶ୍ରୀ ଶଶିଭୂଷଣ ରାୟ'' (୧୦) ଅତଏବ ପାଠକସମାଜର ଆକ୍ଷେପବାଣ ଓ ନିଜ ପୁତ୍ର ଶଶିଭୂଷଣଙ୍କ ଅସୁସ୍ଥତା— ଉଭୟ କବିଙ୍କୁ ପାର୍ବତୀ କାବ୍ୟ ରଚନାରୁ ଦୂରେଇ ରଖିଥିଲା ଓ ଏହାର ଶେଷାଂଶ ସବୁଦିନ ପାଇଁ ଗଦ୍ୟାକାରରେ ରହିଯାଇଥିଲା।

୧୮୯୫ ମସିହାରେ ରାଧାନାଥ ଚରନା କରିଥିଲେ ଉର୍ବଶୀ କାବ୍ୟ। ଏହା ପଦ୍ୟାକାରରେ ମାତ୍ର ଗୋଟିଏ ସର୍ଗ ରଚିତ ହୋଇ ପରବର୍ତ୍ତୀ ସର୍ଗ ଗଦ୍ୟାକାରରେ

ଲିଖିତ ହୋଇଥିଲା । ଉର୍ବଶୀର ଗଦ୍ୟାଂଶ ବା 'ଉର୍ବଶୀ କାବ୍ୟର ଉପସଂହାର' ରାଧାନାଥ ନିଜର ଟିପାଖାତାରେ ଲେଖି ରଖିଥିଲେ । ଯାହା ପରବର୍ତ୍ତୀ କାଳରେ ଶଶିଭୂଷଣଙ୍କ ଦ୍ୱାରା ପ୍ରକାଶ ପାଇଥିଲା । କାବ୍ୟର ଆରମ୍ଭରେ କବି ରାଧାନାଥ ସ୍ୱାଭାବିକ ରୀତିରେ ପ୍ରକୃତି ସହିତ ଏକାତ୍ମ୍ୟ ହୋଇପଡ଼ିଛନ୍ତି ଓ ଏହା ସହିତ ସୁମଧୁର ସମ୍ପର୍କ ସ୍ଥାପନ କରିଛନ୍ତି । କାବ୍ୟର ପ୍ରଥମ ସର୍ଗରେ କେବଳ କଥାବସ୍ତୁର ଉନ୍ମୋଚନ ହୋଇଛି । ପରବର୍ତ୍ତୀ ପ୍ରସଙ୍ଗ ଗଦ୍ୟାକାରରେ ପାଞ୍ଚୋଟି ସର୍ଗରେ ପ୍ରକାଶ ପାଇଛି । ପୁରୁରବା ଓ ଉର୍ବଶୀଙ୍କ ମଧ୍ୟରେ ପ୍ରେମ ପ୍ରଣୟର ସମ୍ପର୍କକୁ କବି ଏହି ପର୍ଯ୍ୟୟରେ ବ୍ୟକ୍ତ କରିଛନ୍ତି ।

ଉଭୟ ପାର୍ବତୀ ଓ ଉର୍ବଶୀର ଗଦ୍ୟ ହେଉଛି ସଂସ୍କୃତାନୁସାରୀ । ଉଭୟ ରଚନା ସମୟକୁ ରାଧାନାଥ ଓଡ଼ିଆ ପଦ୍ୟ ଓ ଗଦ୍ୟ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜ୍ଜନ କରିସାରିଥିଲେ । ତେଣୁ ତାଙ୍କର ପ୍ରଥମ ପର୍ଯ୍ୟାୟର ଗଦ୍ୟ ବିବେକୀ, ଇତାଲୀୟ ଯୁବା ପ୍ରଭୃତି ମଧ୍ୟରେ ଯେଉଁ ଶୈଳୀ ପରିଲକ୍ଷିତ ହୋଇଥିଲା ଏହି ରଚନା ବେଳକୁ ତାହା ସମ୍ପୂର୍ଣ୍ଣ ରୂପେ ନବରୂପରେ ପ୍ରକାଶ ପାଇଥିଲା । ପୁନଶ୍ଚ ୧୮୮୦ ମସିହାର ଓଡ଼ିଶାରେ ସୃଷ୍ଟ ଓଡ଼ିଆ ପାଠ୍ୟ ପୁସ୍ତକ ଆନ୍ଦୋଳନ ତାଙ୍କୁ ଗଦ୍ୟ ସାହିତ୍ୟ ସୃଷ୍ଟିକରିବାରେ ବହୁଭାବରେ ସହାୟକ ହୋଇଥିଲା ।

ରାଧାନାଥ ଥିଲେ ଆଧୁନିକ ଓଡ଼ିଆ କାବ୍ୟ କୋଣାର୍କର ଆଦ୍ୟ ନିର୍ମାତା — ବିଶ୍ୱକର୍ମା । ଆଧୁନିକ କବିତା ତାଙ୍କ ଲେଖନୀରେ ହୋଇଥିଲା ବଳିଷ୍ଠ, ପ୍ରାଣବନ୍ତ ଓ ସଜୀବ । ଉତ୍କଳୀୟ ପ୍ରକୃତି ତାଙ୍କ କାବ୍ୟ କବିତା ମଧ୍ୟରେ ଯେପରି ପ୍ରତିବିମ୍ବିତ ହୋଇଥିଲା ତାହା ସମକାଳୀନ ପ୍ରାନ୍ତୀୟ ଭାରତୀୟ ଅନ୍ୟାନ୍ୟ କବିମାନଙ୍କୁ ଊଣା ଅଧିକେ ପ୍ରଭାବିତ କରିଥିଲା । ତଥାପି ଓଡ଼ିଆ ଗଦ୍ୟ ସାହିତ୍ୟ ଜଗତର ତାଙ୍କର ସ୍ଥିତି ନ୍ୟୂନ ନୁହେଁ । ଓଡ଼ିଆ ଗଦ୍ୟର ଏକ ଘଡ଼ିସନ୍ଧି କାଳରେ ସେ ଏହାକୁ ପୁଷ୍ଟିତ କରିବାକୁ ଚେଷ୍ଟା କରି ଗଦ୍ୟ ସାହିତ୍ୟର ସବୁ ବିଭାଗରେ ଲେଖନୀ ଚାଳନା କରିଥିଲେ । ଓଡ଼ିଆ ପ୍ରବନ୍ଧ, ଭ୍ରମଣକାହାଣୀ, ରମ୍ୟରଚନା ପ୍ରଭୃତିର ସେ ହେଉଛନ୍ତି ଆଦ୍ୟ ସ୍ରଷ୍ଟା । କାବ୍ୟ ସୃଷ୍ଟି ମଧ୍ୟରେ ତାଙ୍କର ଅଭାବନୀୟ ସାଫଲ୍ୟ ତାଙ୍କୁ ହୁଏତ ଗଦ୍ୟ ସାହିତ୍ୟ ଜଗତରେ ନ୍ୟୂନ କରି ଦେଇଛି । ମାତ୍ର ବାସ୍ତବ ଦୃଷ୍ଟିକୋଣରୁ ରାଧାନାଥ ପଦ୍ୟରେ ଯେପରି ଗଦ୍ୟରେ ମଧ ଅନୁରୂପ ସାଫଲ୍ୟର ଅଧିକାରୀ ।

# ରାଧାନାଥଙ୍କ କାବ୍ୟରେ ଜୀବନଦର୍ଶନ

ଡଃ ସୁରେନ୍ଦ୍ର ନାଥ ଆଚାର୍ଯ୍ୟ

ଆଧୁନିକ ଓଡ଼ିଆ ସାହିତ୍ୟରେ କବିବର ରାଧାନାଥ ଏକ ବିବଦମାନ ବ୍ୟକ୍ତିତ୍ୱ। ତାଙ୍କର କାବ୍ୟକଳାର ପ୍ରଭାବ ସୁଦୂରପ୍ରସାରୀ ବହୁକାଳ ପର୍ଯ୍ୟନ୍ତ ଅତ୍ୟନ୍ତ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଥିଲା। ଏ ବିଷୟରେ ଆଲୋଚକମାନେ ଏକମତ ହୋଇଥିବାରୁ ଓଡ଼ିଆ ସାହିତ୍ୟର ଆଧୁନିକ କାଳକୁ ଅନେକ ରାଧାନାଥ ଯୁଗ ନାମରେ ନାମିତ କରିଥାନ୍ତି। ସାହିତ୍ୟର ସାଂପ୍ରତିକକାଳରେ ଆଦର୍ଶଗତ ପ୍ରାଧାନ୍ୟ ଓ ନାନା ବିରୋଧ ବିଚାର ବିମର୍ଷର ଉପସ୍ଥାପନା ହେତୁ ଏହି ମତଟି ସର୍ବବାଦୀସମ୍ମତ ହୋଇପାରିନାହିଁ। ଅବଶ୍ୟ ଭାବ ପ୍ରବଣତାର ଆବେଗରେ ସମାଲୋଚକମାନେ ଭିନ୍ନ ମତ ପୋଷଣ କରିଥିଲେହେଁ, କେହି ଅସ୍ୱୀକାର କରି ପାରିବେନାହିଁ ଯେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ରାଧାନାଥ ଥିଲେ ଅପ୍ରତିଦ୍ୱନ୍ଦୀ କାବ୍ୟସ୍ରଷ୍ଟା। ଊନବିଂଶ ଶତାବ୍ଦୀରେ ଓଡ଼ିଆ ସହିତ୍ୟରେ ଏକପ୍ରକାର ଅନ୍ଧକାରଯୁଗ ରାଜପଣ କରୁଥିଲା। ଯେଉଁ ପ୍ରଭାବଶାଳୀ ଆଲୋଚକମାନେ ମତବ୍ୟକ୍ତ କରିଥାନ୍ତି ସେମାନଙ୍କ ମତରେ ସାହିତ୍ୟରେ ଏକ ପାରମ୍ପରିକ ଜୀବନଶକ୍ତି-ହୀନ ରୀତିଯୁଗୀୟ ଧାରା ଅତି କ୍ଷୀଣ ଭାବରେ ଜାତୀୟ ଜନ ମାନସରେ ପ୍ରତିଫଳିତ ହେଉଥିଲା। ଯଦି ଏ ଦେଶକୁ ଇଂରେଜମାନେ ଶାସକ ଭାବରେ ଅଧିକାର କରି' ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ଧାରାକୁ ପ୍ରବାହିତ କରି ନଥାନ୍ତେ ତାହାହେଲେ ଓଡ଼ିଶାର ସାମାଜିକ ଜୀବନ ଭଳି ସାଂସ୍କୃତିକ ଓ ସାହିତ୍ୟିକ ଜୀବନରେ ମଧ୍ୟ ଅଭାବନୀୟ ପରିବର୍ତ୍ତନ ସମ୍ଭବ ହୋଇନଥାନ୍ତା। ଏହି ପରିବର୍ତ୍ତନର ସୂତ୍ର ଧରି ସେ କାଳରେ ବହୁ ସାରସ୍ୱତ ସାଧକ ଜାତୀୟ ରଙ୍ଗମଞ୍ଚରେ ନିଜ ନିଜର କୃତି ଓ କୃତିତ୍ୱର ମହାନ ବୈପ୍ଳବିକ ଭୂମିକା ଗ୍ରହଣ କରିଥିଲେହେଁ ଶିକ୍ଷାବିତ ତଥା କବି ରାଧାନାଥ ଥିଲେ ସେହି ପରମ ଆବର୍ତ୍ତନ ଯୁଗର ମହାନ ମନ୍ତ୍ରଦାତା। ପାଶ୍ଚାତ୍ୟ ଆଭିମୁଖ୍ୟ ଓ ଆଦର୍ଶରେ ଅନୁପ୍ରାଣିତ ଓ ଆଲୋଡ଼ିତ ହୋଇ କବି ରାଧାନାଥ ଯେଉଁ ପରିବର୍ତ୍ତନ ସ୍ରୋତକୁ ଏ ଦେଶରେ ପ୍ରବାହିତ କରିଦେଲେ, ତାହା ଯଦି ଏ ଜାତିର ଭାବ ଓ ମନରେ ଗଭୀର ରେଖାପାତ କରି ନ ଥାନ୍ତା, ତାହାହେଲେ ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଯେଉଁ ଅଭିନବ ବୈପ୍ଳବିକ ପରିବର୍ତ୍ତନ ସମ୍ଭବ ହୋଇଅଛି ତାହା ହୋଇଥାନ୍ତା କଳ୍ପନାତୀତ। ଅଙ୍ଗିକ

ଓ ଆତ୍ମିକ ଦୃଷ୍ଟିରୁ ବିଚାର କଲେ ଏହି ପରିବର୍ତ୍ତନ କେବଳ ରୂପଗତ ନ ଥିଲା, ଥିଲା ରସଗତ।

ଇତିହାସର ପଥଧାରରେ ସମାଜର ଅବିଶ୍ରାମ ସାଧନା ଓ ସଂଗ୍ରାମର ଯଜ୍ଞାନଳରେ ରାଧାନାଥଙ୍କ ଲେଖନୀ ଯେପରି ପ୍ରଦୀପ୍ତ ହୋଇଅଛି ତାହା ବାସ୍ତବିକ ଆଧୁନିକ ଚିନ୍ତାଧାରାର ଏକ ସ୍ମରଣୀୟ ଚିତ୍ରରେଖା ସଦୃଶ। ରାଧାନାଥଙ୍କ ପ୍ରତ୍ୟେକ ରଚନାରେ ସୃଷ୍ଟିଶିଳ୍ପ ଯଥାର୍ଥ ସମାଜର ସଂଧାନ ସାହିତ୍ୟରେ ଲିପିବଦ୍ଧ କରି ଯାଇଛନ୍ତି। ଯୁଗ ଜୀବନର ରୂପ ଓ ପ୍ରକୃତିର ସୌନ୍ଦର୍ଯ୍ୟ ଓ ସୌରଭର ଜୟଗାନ ଯେପରି ରାଧାନାଥଙ୍କର କାବ୍ୟ ସମୂହରେ ପ୍ରତିଧ୍ୱନିତ; ପାଠକ ମନେକରେ ରାଧାନାଥ ଏକ ସମସ୍ୟା ଏକକ ସୌନ୍ଦର୍ଯ୍ୟ ବହୁବିଧ ବିଚିତ୍ରର ସ୍ୱପ୍ନାତୁର ଆଉ ରୂପାତୁର ଜୀବନରେ ବିଶ୍ୱସ୍ତ ପ୍ରତିନିଧି ଏବଂ ନିର୍ଭୀକ ଲିପିକାର। ପ୍ରାଚୀନ ଓ ନବୀନ ମଧ୍ୟରେ ରାଧାନାଥ ଯେପରି ଗୋଟିଏ ସୀମାରେଖା ଆଉ ତାଙ୍କ କାବ୍ୟଗୁଡ଼ିକ ସେହି ସୀମାରେଖାର ଗୋଟିଏ ଗୋଟିଏ ସ୍ମୃତିବିନ୍ଦୁ ମାତ୍ର। ସେହି ପରିପ୍ରେକ୍ଷୀରେ ରାଧାନାଥଙ୍କ କାବ୍ୟ ସାହିତ୍ୟ ବିଶଦ ଆଲୋଚନାର ଅପେକ୍ଷା ରଖେ।

ଜୀବନର ସ୍ରୋତସ୍ୱିନୀ ଧାରା ଅସଂଖ୍ୟ ଘଟଣା ବହୁଳ ଅନୁଭୂତିକୁ ପାଥେୟ କରି ସଂସାରର ଗତି ପଥରେ ଅବାରିତ ପ୍ରବାହିତ ହୁଏ। ବହୁରଙ୍ଗଣୀ ଅନୁଷ୍ଠାନ ମାଧ୍ୟମରେ ଜୀବନ ରସାଣିତ ଓ ରୂପାୟିତ ହୁଏ। ତାହାରି ମାଧ୍ୟମରେ ସଂସାରର ଚିରନ୍ତନ କୁସୁମ କଳିକା ପ୍ରସ୍ଫୁଟିତ ହୁଏ। ସତ୍ୟ ଶିବ ସୁନ୍ଦରର ଆବାହନୀ ଏହି ଅଳୀକ ସଂସାରରେ ଜୀବନକୁ ଅମୃତର ଅଧିକାରୀ କରେ। ନୈରାଶ୍ୟର ଘନ କୁହୁଡ଼ି ମଧ୍ୟରୁ ଆଶା ଓ ଆଲୋକର ପଥ ଉନ୍ମୋଚନ ହୋଇଥାଏ। ଜୀବନ ସ୍ରୋତସ୍ୱତୀର ଦୁଇଟି ଧାରା ସୁଖ ଓ ଦୁଃଖ। ଗୋଟିଏ ମଧୁମୟୀ ଚାନ୍ଦିନୀ ସ୍ପର୍ଶରେ ସ୍ପନ୍ଦିତା, ଅନ୍ୟଟି ଉତ୍ତା କଷାଘାତରେ କୃଶା। ଗୋଟିଏ କଳକଳ ନିନାଦରେ ସହଜ ସରଳ ଗତି କରୁଛି। ଅନ୍ୟଟି ନାନା ଶୈଳାଘାତରେ ବାଧାପ୍ରାପ୍ତ ବକ୍ରୀକୃତା ଓ ଜଟିଳା। ସୁଖ ଦୁଃଖ ଗୋଟିଏ ଯବନିକାର ଦୁଇପାଖପରି। ଗୋଟିଏ ପାଖ ଦିବସର ମଞ୍ଜୁଳ ଲୋକରେ ଦୀପ୍ତିମୟ ଓ ଅନ୍ୟପାଖ ସକଳ ଅନ୍ଧକାରକୁ ପୁଞ୍ଜିଭୂତ କରି ଘନ କୃଷ୍ଣ। ପୃଥିବୀ ସୁଖ ଦୁଃଖର ଆଧାର। ଜୀବନ ଉଦ୍ୟାନରୁ କିଏ କେବଳ ଆନନ୍ଦ କୁସୁମ ଆହରଣ କରେ କିଏ ବା ଜୀବନ ମରୁରେ ଆର୍ତ୍ତ ପଥିକର ହାହାକାର ଶୁଣେ। କାହାର ଜୀବନ କୁଞ୍ଜ ଆମୋଦର ପରଭୃତ ଗାନରେ ନିତ୍ୟ ଝଙ୍କାରିତ କିଏ ବା ଜୀବନ ରଙ୍ଗମଞ୍ଚରେ ବଜ୍ରଝଟିକା, ଭୂକମ୍ପ ଓ ଅଗ୍ନ୍ୟୁତ୍ପାନର ଆସ୍ଫାଳନ ଶ୍ରବଣ କରେ। ଜୀବନର ସୁଖ ଦୁଃଖ ଆନନ୍ଦ ନିରାନନ୍ଦର ଗାଥାକୁ ବିଷୟବସ୍ତୁ କରି ସାହିତ୍ୟ ଗଠିତ। ସାହିତ୍ୟର ଅଙ୍ଗ ଭାଷା ହେଲେ ତାର ରକ୍ତ ମାଂସ ଓ ଅସ୍ଥି, ପୁଣି ଭାବ ତାର ପ୍ରାଣ, ଚନ୍ଦ୍ର ବିନା ଚନ୍ଦ୍ରିକା, କୁସୁମ ବିନା ସୌରଭ, ଲାବଣ୍ୟ ବିନା କୋମଳତା ଅନୁଭବ କରିବା ଯେପରି ଅର୍ଥହୀନ ସ୍ରଷ୍ଟାବିନା ସୃଷ୍ଟି ଓ କବି ବିନା ତଦୀୟ

କନ୍ୟା କବିତା ହୃଦୟଙ୍ଗମ କରିବା ସେହିପରି ବିଡ଼ମ୍ବନାର ବସ୍ତୁ। କବିତାଠାରୁ କବିଙ୍କ ଜୀବନ ଅଧିକ ମୂଲ୍ୟବାନ ଓ ଶିକ୍ଷାପ୍ରଦ କହିଲେ, ଅତ୍ୟୁକ୍ତି ହେବନାହିଁ। କବି ହିଁ କବିତାର ଗୋଟିଏ ବିଶିଷ୍ଟ ଉପାଦାନ। ତା ବ୍ୟତିରେକ କବିତାର ରସ ଆସ୍ୱାଦନ ସଂପୂର୍ଣ୍ଣ ଅବଶ୍ୟମ୍ଭାବୀ।

ରାଧାନାଥ ପ୍ରତିଭା ସରସ୍ୱତୀଙ୍କର ସୁଯୋଗ୍ୟ ସନ୍ତାନ ଥିଲେ; କବିତାର ମୋହନ ବୀଣା ବାଦନ ପାଇଁ ଯାହା ଆବଶ୍ୟକ ତାହାହିଁ ତାଙ୍କଠାରେ ଥିଲା। ଶାରୀରିକ ଓ ମାନସିକ ଶାନ୍ତି କବିତା ରଚନାର ଅନୁକୂଳ ପଥପ୍ରଦର୍ଶକ, ଆଜୀବନ ଆଧି, ବ୍ୟାଧି ପୀଡ଼ିତ କଙ୍କାଳ ସାର ବିଶିଷ୍ଟ ରାଧାନାଥ ଅଶାନ୍ତର ଜ୍ୱାଳାମୟ ନାଗଫାଶରୁ ବହୁଦୂର ଅଗ୍ରସର ହେବା ତାଙ୍କ ପକ୍ଷରେ ସମ୍ଭବପର ହୋଇ ପାରି ନଥିଲା। ଆବାଲ୍ୟ ଦୁଃଖଭୋଗୀ ପକ୍ଷରେ ସଂସାର ଜୀର୍ଣ୍ଣାରଣ୍ୟକ୍ଷମ ଭଙ୍ଗୁର ମାନବଜୀବନ ଦୁଃଖ ଝଞ୍ଜା ଜର୍ଜରିତ ରସନା ବିଷାଦ କଷାୟିତ ନ ହେଲେ ଏପରି ବାଣୀ ଉଚ୍ଚାରିତ ହୁଏନାହିଁ। ଯେଉଁମାନବ ଆବାଲ୍ୟରୁ ସୁଖ, ବିଳାସ ବାସନାରୁ ବଞ୍ଚିତ ହୋଇ କ୍ଲେଶ ଯାତନା ଭୋଗ କରେ ସର୍ବଶେଷରେ ଭାଗ୍ୟକୁହିଁ ଦୋଷୀ କରେ।

ରାଧାନାଥ ଭାଗ୍ୟଦେବୀଙ୍କର ନୈଷ୍ଠିକ ପୂଜାରୀ ଥିଲେ। ଯେଉଁ ଭାଗ୍ୟ ତାଙ୍କୁ କବିତ୍ୱ ପ୍ରତିଭାରେ ବିମଣ୍ଡିତ କରିଛି, ସେହି ଭାଗ୍ୟ ତାଙ୍କୁ ଜୀବନ୍ମୃତ ଚିରରୋଗୀ କରି ରଖିଛି। ଏହା ସେ ଆବାଲ୍ୟରୁ ବିଶ୍ୱାସ କରି ଆସୁଥିଲେ। ଦୁଃଖ ଭୋଗ ତାଙ୍କ ଭାଗ୍ୟ ବିଶ୍ୱାସର ପ୍ରଧାନ କାରଣ। ନିୟତି ପୀଡ଼ନକୁ ଏଡ଼ି ନପାରି ସେ କିପରି ଭାଗ୍ୟ ବିଶ୍ୱାସୀ ହୋଇଥିଲେ ତାର ଭୂୟସୀ ପ୍ରମାଣ ତାଙ୍କ କାବ୍ୟ କବିତାରେ ପରିଦୃଷ୍ଟ ହୁଏ।

ପଙ୍କରୁ ଜାତ ହୋଇ ମଧ୍ୟ ପଙ୍କଜ ତହିଁରେ ନିର୍ଲିପ୍ତ ରହେ। ଗିରିସୂଳ କଟିତଃ ସଞ୍ଚାଳିତ ଜଳଛାୟାଦ୍ୱାରା ଅନ୍ଧାରିତ ହେଲେ ସୁଦ୍ଧା ଶିଖର ପ୍ରଦେଶ ସୌର ରଶ୍ମିଦ୍ୱାରା ଶାଶ୍ୱତ ଉଦ୍ଭାସିତ ହୋଇଥାଏ। ସେହିପରି କବି ସଂସାର କ୍ଷେତ୍ରରେ, ବିଚରଣ କଲେ ସୁଦ୍ଧା ଗ୍ରାମ୍ୟ ଶୂକର ପରି ତହିଁରେ ଲିପ୍ତ ନ ଥିଲେ। ତାଙ୍କର ହୃଦୟ ଚକୋର ନିତ୍ୟଜ୍ଞାନ ଜ୍ୟୋସ୍ନାର ସ୍ୱପ୍ନଦେଖୁଥିଲା। ତଡ଼ାଗ ଜଳପୂର୍ଣ୍ଣ ହେଲେ ଯେପରି ସରଣୀ ଅନୁସନ୍ଧାନ କରେ ମାନବ ଜୀବନ ଦୁଃଖ ଘନଘଟାଦ୍ୱାରା ଆଚ୍ଛନ୍ନ ହେଲେ ତାହା ମଧ୍ୟ ପ୍ରକାଶ ପଥ ଲୋଡ଼େ। ବିଷାଦ ଦ୍ରବୀଭୂତ ହୋଇ ଲୋତକ ରୂପ ଧାରଣ କରେ, ଅନ୍ୟ ସମ୍ମୁଖରେ ପ୍ରକାଶଦ୍ୱାରା ଏହି ଦୁଃଖ ଲାଘବ ହୁଏ। ଏହି କ୍ଲେଶପନୋଦନ ନିମିତ୍ତ କବି ବିଷାଦ ଜୀର୍ଣ୍ଣାରଣ୍ୟରୁ କେତୋଟି ଶାଖାଛିନ୍ନ କରି ବାଗଦେବୀଙ୍କ ଚରଣତଳେ ଅର୍ପଣ କରିଛନ୍ତି। ଏହାର ପ୍ରମାଣ ତାଙ୍କ କବିତା ଗୁଚ୍ଛରୁ ପ୍ରତିଫଳିତ ହୁଏ।

ଦୁଃଖକ୍ଳିଷ୍ଟ ରାଧାନାଥ ସୁଖପରେ ଆସ୍ଥା ସ୍ଥାପନ କରି ନାହାନ୍ତି। ସୁଖ ହେଉଛି ମାନସିକ ବିକାର ମାତ୍ର। ସଂସାରୀ ଚକ୍ଷୁରେ ଯାହା ସୁଖ ବୋଲି ପ୍ରତୀତ ହୁଏ ତାହା ଦୁଃଖର ଛଦ୍ମବେଶ। କନକ ଗୋରା ବିଜୁଳି ଝଟକ ପରି ତାହା କ୍ଷଣିକ

କୁହୁକରେ ଭୁଲାଇ ମାନବକୁ ଅଧିକ ଅନ୍ଧକାରରେ ନିମଗ୍ନ କରାଏ, କାମନାର ପରିତୁଷ୍ଟରେ ବା ଲାଳସାର ପରିତୃପ୍ତିରେ ପ୍ରକୃତ ସୁଖ ମିଳେ ନାହିଁ। କାରଣ ଲାଳସା ବା ଆଶାର ପୂର୍ଣ୍ଣ କୋଷ୍ଠାଗାର ଗଚ୍ଛିତ ନାହିଁ। ସଂସାରୀ ଅବସ୍ତୁରେ ବସ୍ତୁର ଆରୋପ କରି କରକାକୁ ହୀରକ ଦୃଷ୍ଟିରେ ଦେଖନ୍ତି, ଅଗ୍ନିରୁ ଶୀତଳତା, ମରୀଚିକାରୁ ଜଳ ଆଶା କରନ୍ତି; ଯେଉଁ ଅନୁଭବ ଦ୍ୱାରା କାଳ ବଜ୍ର ଗଣ୍ଠି ନେଇ ମାନବକୁ ସଂସାର ବୃକ୍ଷରେ ବନ୍ଧନ କରେ ରାଧାନାଥଙ୍କ ମତରେ ତାହାହିଁ ସଂସାରିକ ସୁଖ। ସଂସାରୀ ଚକ୍ଷୁରେ ଯାହା ନେତ୍ରପ୍ରୀତିକର, ରାଧାନାଥଙ୍କ ଚକ୍ଷୁରେ ନେତ୍ର ପୀଡ଼ନକ ପରି ମନେହୁଏ। କବି ଏହି ଅଳୀକ ଅନିତ୍ୟ ସୁଖକୁ ଉଚ୍ଚାସନ ଦେଇ ନାହାନ୍ତି।

ରାଧାନାଥଙ୍କର ପାର୍ବତୀ କାବ୍ୟ ଆଲୋଚନା କଲେ ସାଂସାରିକ ଲୀଳାର ଏକ ମୂର୍ତ୍ତିମନ୍ତ ଛାୟା ପ୍ରତିବିମ୍ବିତ ହୁଏ। ଏହି କାବ୍ୟରେ ରାଧାନାଥ ମାନବ ସମାଜରେ ଜୀବନଦର୍ଶନ ବୃଦ୍ଧ କଚୁକୀ ମୁଖରେ ପ୍ରକାଶ କରିଛନ୍ତି –

''ପୁଣ୍ୟ ଶ୍ଳୋକ ଚୋର ଗଙ୍ଗର ଅଙ୍ଗଜ
ହୋଇ ହେଲେ ଏଡ଼େ କ୍ରୁର
ମଦମତ୍ତ ହୋଇ ନିତ୍ୟ ମଣନ୍ତି ଯା
ସ୍ୱଭାବେ କ୍ଷଣ ଭଙ୍ଗୁର
କେହି ରହିନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମିତଳେ
ସର୍ବ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳ ବଳେ''

ପାର୍ଥିବ ଜଗତରେ ସବୁକିଛି ନଶ୍ୱର। କାଳର କରାଳ କବଳରୁ କାହାରି ରକ୍ଷା ପାଇବାର ଉପାୟ ନାହିଁ। ମାନବ ଜୀବନ ନାଟିକା ଯେ କୌଣସି ପ୍ରକାରରେ ଆରମ୍ଭ ହେଲେ ମଧ୍ୟ ତାର ଅବସାନ ନିଶ୍ଚୟ ହେବ। ସର୍ବଗ୍ରାସୀ କାଳର କରାଳ ଡୋରିରେ ଜେତା ବିଜେତା ଶତ୍ରୁ ମିତ୍ର ଧନୀ ନିର୍ଦ୍ଧନର ତାରତମ୍ୟ ଦେଖିବାକୁ ସ୍ୱପ୍ନ। କବିଙ୍କ ଭାଷାରେ –

''ବୃଥାଦମ୍ଭେ ମାତି ଦିଗ୍‌ବିଜୟୀ ବୀର
ଭ୍ରମୁଥାନ୍ତି ଦେଶେ ଦେଶେ
ଜେତା ବିଜେତାକୁ କୃତାନ୍ତ କରାଳ
ପେଷିଦିଏ ନିର୍ବିଶେଷେ''

ସାଧାରଣତଃ ଲୋକମାନଙ୍କର ଧାରଣା ରାଜକୁଳରେ ଜନ୍ମଲାଭ କରିବା ପରମ ସୌଭାଗ୍ୟର ବିଷୟ। କାରଣ ଅଭାବ ଉତ୍ତାପ ହୃଦୟ ଶତଦଳର ଦଳଗୁଡ଼ିକୁ ସ୍ପର୍ଶ କରି ପାରେ ନାହିଁ। କୌଶଲ୍ୟା ମୁଖରେ ସେ ବିଶ୍ୱାସ ଭର୍ଣ୍ଣଜାଲ ଛିନ୍ନକରି ପ୍ରକାଶ କରିଛନ୍ତି, ଯେଉଁ ସଂସାର ନୃଶଂସ ଅତ୍ୟାଚାରୀର ବିଳାସଭୂମି, ଯେଉଁଠାରେ ଦୁର୍ବଳ ନିଃସ୍ୱ କୀଟର ଦାୟାଦପରି ଅବହେଳିତ, ଲାଞ୍ଛିତ ଓ ନିଷ୍ପେଷିତ, କବିଙ୍କ ମତରେ

ସେ ସ୍ଥାନରେ ସନାତନ ସୁଖର ଆର୍ବିଭାବ ଏକ ବିଡ଼ମ୍ବନାର ବସ୍ତୁ। ସଂସାରର ଭୋଗ ବିଳାସରେ ତୃପ୍ତି ନାହିଁ, ଶାନ୍ତି ନାହିଁ, ସୁଖ ଭୋଗରେ ନାହିଁ ବରଂ ସୁଖ ପ୍ରାପ୍ତି ଆଶାରେ ରହିଛି। ଆଶା ସୁଖ ଅପେକ୍ଷା ଅଧିକ ଆନନ୍ଦଦାୟକ। ଯେତେବେଳେ ପ୍ରଦୀପ ହୃଦୟ-ଗୃହକୁ ଆଲୋକିତ କରି ଜଳିଉଠେ, ସେତେବେଳେ ମନପ୍ରାଣ ଅପୂର୍ବ ଆନନ୍ଦ- ରସରେ ଆପ୍ଳୁତ ହୁଏ। ଧନ, ଜନ ମାନ, ପ୍ରାପ୍ତିର ପୂର୍ବରୁ ଆଶା ଚନ୍ଦ୍ରିକାରେ ହୃଦୟାକାଶ ହସିଉଠେ, କିନ୍ତୁ ଲବ୍ଧ ସୁଖରେ ମଣ୍ଡିତ ହେଲେ ସୁଖର ଆସ୍ୱାଦନ ଊଣା ହୋଇଯାଏ।

ନୈରାଶ୍ୟର ଘନ କୁହେଳିକା ମଧ୍ୟରେ ସେ ମ୍ରିୟମାଣ, ସଂସାରର ସକଳ ବସ୍ତୁ, ଅସାର, ନିୟତିର ନିର୍ଦ୍ଦେଶନା, ଆକସ୍ମିକଭାବେ ମୃତ୍ୟୁଦୈତ୍ୟର ବିକଟ ଛାୟା ପାତରେ ସବୁ ଲୀନ ହୋଇଯିବ, ସକଳ ଅସାଂଜନ ବୁଦ୍‌ବୁଦ୍ ଆକାରରେ ମିଳେଇ ଯିବ। କାରଣ ମନୁଷ୍ୟର ଜୀବନ କ୍ଷଣିକ ଅଳୀକ କହି ରଙ୍ଗର ଆବରଣକୁ ଘୃଣା କରିଛନ୍ତି, କାଳ ନିକଟରେ ଏ ସମସ୍ତ ତୁଚ୍ଛ ଓ ହୀନପ୍ରଭ ଅଟେ। ଦୁଃଖ ନୈରାଶ୍ୟ ଅରଣ୍ୟରେ ରାଧାନାଥ ପଥଭ୍ରଷ୍ଟ ହୋଇଛନ୍ତି। ଏହି ନୈରାଶ୍ୟତିମିର ଅତିକ୍ରମ କରି ମାନସ ବିହଙ୍ଗ ସୁଖ କିରଣ ଜାଜ୍ୱଲ୍ୟମାନ ଉନ୍ମୁକ୍ତ ଆକାଶରେ ଭ୍ରମଣ କରି ପାରିନାହିଁ, ନିଜେ ଶୃଙ୍ଖଳିତ ହୋଇ ଅନ୍ୟମାନଙ୍କୁ ସାବଧାନ କରାଇଛନ୍ତି।

ଚରିତ୍ର ଚିତ୍ରଣରେ ରାଧାନାଥ ଦୁଃଖବାଦର ରଗାଂଜୀବନ୍ତ ଫୁଟାଇ ଅଛନ୍ତି। ବିଷାଦାବଗୁଣ୍ଠିତା ନନ୍ଦିକା ମୃତ୍ୟୁର ଛାୟାରେ ମିଶିଯାଇଛି। ରମଣୀ ସୀମନ୍ତ-ରେଖା କୌଶଲ୍ୟା କରୁଣ କ୍ରନ୍ଦନରେ ବୃକ୍ଷର ଶୁଷ୍କପତ୍ର ମର୍ମରିତ ହୋଇ ଉଠୁଛି। କୌଶଲ୍ୟାର ଦୁଃଖରେ ପାଠକ ଯେପରି ମର୍ମାହତ ହୁଏ, ନନ୍ଦିକେଶ୍ୱରୀରେ ନାୟିକା ନନ୍ଦିକେଶ୍ୱରୀଙ୍କ ପିତା ଉତ୍କଳକେଶରୀ ଚୋରଗଙ୍ଗ ଦ୍ୱାରା ଦୁର୍ଗ ଅବରୋଧ ହେବାପରେ ଦେବୀ ମନ୍ଦିରରେ ଆଶ୍ରିତ ଥିବା ସମୟରେ ଦେବୀମୁଖ ନିଃସୃତ ବାଣୀ ସେହିପରି ଦୁଃଖଦପୂର୍ଣ୍ଣ –

"ମନାସନ୍ତି ମହାରୁଦ୍ର ଯାହାମନେ
ନିୟତ ରୂପେ ତା ଫଳେ ତ୍ରିଭୁବନେ
ଶକ୍ତି ନାହିଁ ବସ କାହାର ଜଗତେ
ନିୟତିକୁ ନେବ ନିଜ ଇଚ୍ଛା ମତେ"

ରୂପପ୍ରେମୀ ରାଧାନାଥ ଦୁଃଖରୂପର ମଧ୍ୟଦେଇ କରିଛନ୍ତି ବୀକ୍ଷଣ ଓ ଅନ୍ୱେଷଣ। କାରଣ ରସହିଁ ତାଙ୍କ କାବ୍ୟର ହୃତ୍‌ପିଣ୍ଡ। ନନ୍ଦିକେଶ୍ୱରୀ କାବ୍ୟର ବୀରତ୍ୱବ୍ୟଞ୍ଜକ ଭାବଧାରା କାବ୍ୟରେ ପାଠକକୁ ଯେତିକି ଆପ୍ଳୁତ ନ କରେ, ନନ୍ଦିକାର ଦୁଃସହ ଯୌବନ ଜ୍ୱାଳା ଓ ତାର ପ୍ରେମର ଶୋଚନୀୟ ପରିଣତି ତାଠାରୁ ଅଧିକ ଅଶ୍ରୁ ବ୍ୟଥା ଓ କାରୁଣ୍ୟର ସଂଚାର କରିଥାଏ, ରାଜନନ୍ଦିନୀ ନନ୍ଦିକା ଅପ୍ରାପ୍ତି ଜନିତ ବ୍ୟଥାର ଯେପରି ଏକ ଅପ୍ରାପ୍ତ ରୂପ ପ୍ରତିମା। ଅମରଦାୟିନୀ କ୍ରୋଡ଼ରେ ଶେଷ ବିଶ୍ରାମ ନେବା ପୂର୍ବରୁ ତାର କଜ୍ଜଳାକ୍ତ ଲୋତକାଙ୍କିତ ପତ୍ରର ଭାଷା କି କରୁଣ,

କି ମର୍ମସ୍ପର୍ଶୀ। ଏକ ବ୍ୟଥାର ଫଲ୍‌ଗୁ ମୁହୂର୍ତ୍ତକ ପାଇଁ ଭୂଗର୍ଭରୁ ଆତ୍ମପ୍ରକାଶ ଉଦ୍ଦେଶ୍ୟରେ ବାହାରି ପୁଣି ଚିରଦିନପାଇଁ ଭୂଗର୍ଭରେ ଯେପରି ସ୍ତିମିତ ଓ ସମାଧିସ୍ଥ ଲାଭ କରିଛି। ସ୍ମୃତି ଆତ୍ମକୃତ ପାପର ସ୍ମୃତି ନୁହେଁ ବରଂ ପକ୍ଷାଘାତ-ପ୍ରାପ୍ତ ପ୍ରଣୟଜନିତ ବ୍ୟଥାର ସ୍ମୃତି। ନନ୍ଦିକାର ଅନୁତପ୍ତ ମାନସ-ଚିତ୍ରର ବର୍ଣ୍ଣନା ଅତ୍ୟନ୍ତ ପାଂଶୁଳ ନୁହେଁ। ବରଂ ନନ୍ଦିକାର ପତ୍ରବର୍ଣ୍ଣିତ ଅଶ୍ରୁ ଆବେଗମୟୀ ଭାଷାରେ ଯେଉଁଠି ସେ ଅନ୍ତିମ ଅନୁରୋଧ ଜଣାଇଛି ନିଜକୁ ଦୁଃସ୍ୱପ୍ନ ଭଳି ଭୁଲିଯାଇ ତାର ପ୍ରଣୟୀକୁ ପୁତ୍ର ସ୍ନେହରେ ଦେଖିବାପାଇଁ ପ୍ରଣୟିନୀ ପକ୍ଷରେ ଏହାଠାରୁ ଅଧିକ ହୃଦୟବିଦାରକ ଓ କରୁଣତମ ଦୀର୍ଘଶ୍ୱାସ କଅଣ ଥାଇପାରେ। ରାଜଜେମା ନନ୍ଦିକା ଏକ ବିଗ୍ରହବନ୍ତ କରୁଣ-ରସର ପ୍ରତୀକ। କବିଙ୍କ ଭାଷାରେ–

"ଫୁଟିଥିଲା ଯାହା ବାଲ୍ୟରୁ ବଉଳି, ରୂପ ପୁଷ୍ପଗଲା ନିମିଷେ ମଉଳି
ମଉଳଇ ନବ ମାଳିକା ଯେମନ୍ତ, ମୂଳ କାଟିଦେଲେ ବାଲ୍ମୀକ ଦୂରନ୍ତ
ଥିଲା ଯେ ଶରୀର ଶୋଭାର ଉଦ୍ୟାନ, ଏବେ ତାହା ଆହା ଶୋଭାର ଶ୍ମଶାନ
ଫୁଲେଶ୍ୱରୀଥିଲା ରୂପ ଉପବନେ, ଯେଉଁ ଫୁଲ ଶୁଷ୍କ କାଳ-ହୁତାଶନେ"

ବିଧିବିଡ଼ମ୍ବିତ ଉତ୍କଳରାଜ ନିଜର ଟାଣପଣ ରଖିବା ଲାଗି ମନ୍ତ୍ରୀ ବାସୁଦେବଙ୍କର ସନ୍ଧି ପ୍ରସ୍ତାବକୁ ଅଗ୍ରାହ୍ୟ କରି ତାକୁ ନିର୍ବାସନ ଦଣ୍ଡ ଦେଇଥିଲେ। ଏକମାତ୍ର ସନ୍ତତି ନନ୍ଦିକା, ତୁମ୍ବର ନେତ୍ରପିତୁଳି, ଦରିଦ୍ର ସଂଖାଳି, ଅନ୍ଧର ଲଉଡ଼ି ସଦୃଶ ଥିଲା। ତାହାର ଅପୂର୍ବ କରଣୀ ସ୍ୱପ୍ନରେ ତୁମେ ବିଶ୍ୱାସ କରିପାରିନାହିଁ– କିନ୍ତୁ ଏ ଜଗତରେ Facts are often stranger than fiction ତେଣୁ ପ୍ରବୁଦ୍ଧ କବି ଗାଇଥିଲେ, "ସୁଖ ବୋଲି ଯାହା ଜନ ନେତ୍ରେ ଦିଶେ, ହାତେ ଆସେ ହାତୁ ପଡ଼ିବାପାଇଁ ସେ"

ତନ୍ୱୀ ଚନ୍ଦ୍ରଭଗା, ଲାବଣ୍ୟସରସେ ନବ କମଳ କଳିକା ସଦୃଶ। ଏହି ଲାବଣ୍ୟମୟୀର ରୂପବିଭବ ଅତ୍ୟନ୍ତ ଆକର୍ଷଣୀୟ ଓ ମନମୁଗ୍ଧକର। ଦିବ୍ୟ ଶୋଭାପିତୁଳା ଓ ଜଗତ ଜନମନ ନୟନକାରୀ ସଦୃଶ। ସାଗର ବେଳାଭୂମିରେ କନ୍ଦୁକକ୍ରୀଡ଼ାରତ, ଆନନ୍ଦ, ଉଲ୍ଲାସରେ ଧାବମାନ ହେଉଥିବା ସମୟରେ ଚାରୁ ଭୁରୁ ନର୍ତ୍ତନରେ ସୁଗୋଲ ନିତମ୍ବଲମ୍ବିତ ହେମ ମେଖଳା, ଅର୍ଦ୍ଧେନ୍ଦୁ ଲଲାଟ ସିନ୍ଦୂର ବିନ୍ଦୁ ସଦୃଶ ବିରାଜମାନ କରୁଛି। ଅପୂର୍ବରମଣୀ ସହିତ ସ୍ୱର୍ଣ୍ଣତାଳ ସଦୃଶ କାନ୍ତି ବିପ୍ରଯୁବା ବେଶଧାରୀ ଦେବ ମିହିରଙ୍କର ଅପୂର୍ବ ବେଶ ହୋଇଛି। କିନ୍ତୁ ଚନ୍ଦ୍ରଭାଗା ପ୍ରେମ ବିରାଗ ଭାବ ପୋଷଣ କରି ଆତ୍ମରକ୍ଷା ପାଇଁ ମାତାଙ୍କର ଶରଣାପନ୍ନ ହୋଇଛି। ଦୁଃଖିନୀ ଦୁଃଖରେ ପ୍ରକାଶ କରିଛି–

"ଦୁଃଖ ଫେଡ଼ ମୋର ଜନନୀ
ହର ଏ ରୂପ ମୋର
ବିଭୂଷଣ ହୋଇ ହେଲା ଏ
ସିନା ଦୂଷଣ ଘୋର"

କନ୍ୟାର ଏଭଳି ବିନୟଭାବ ସନ୍ଦର୍ଶନ କରି ଊର୍ମିମାଳା ପର୍ବତାକାରରେ କାୟା ବିସ୍ତାର କଲା ଓ ନିଜ କନ୍ୟାକୁ କୋଳରେ ଆଶ୍ରୟ ଦେଲା, ଚନ୍ଦ୍ରଭାଗା ସାଗର ଗର୍ଭରେ ମିଶିଯିବା ସମୟରେ ପ୍ରବୁଦ୍ଧ କବି ଆତ୍ମା ପରମାତ୍ମାର ମିଳନ ଚିନ୍ତା କରି ଗାଇଛନ୍ତି –

"ମିଶିଯାଏ ଯଥା ପ୍ରଭାତୀ ତାରା ରବି କିରଣେ
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱଆତ୍ମା ଚରଣେ
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ"

ଉଷା କାବ୍ୟରେ ନୁରୁପୁର ରାଜଜେମା ଉଷାର ସ୍ୱୟମ୍ବର ଯଜ୍ଞରେ ଆହୂତ ହୋଇଥିବା ରାଜକୁମାରମାନଙ୍କ ଉଦ୍ଦେଶ୍ୟରେ କଥିତ –

"ବଳୀ ହୋଇ ଦୈବ ବିଧାନକୁ କିଏ କରିବ ଆନ
ମହାବଳୀଠାରୁ ବଳିଆର ପୁଣି ଦୈବ ବିଧାନ"

ଉଷା ଜୟନ୍ତଙ୍କ ପରିଣୟ କାଳରେ ପବିତ୍ର କୁଶରଜ୍ଜୁଦ୍ୱାରା ହସ୍ତ ଗ୍ରନ୍ଥିନି ବନ୍ଧନ ଚିରାଚରିତ ପ୍ରଥାରେ ଅନୁଷ୍ଠିତ ହୋଇଛି। ପୂର୍ବ ଅଭିଶାପ ମୋଚନର କାରଣ ସ୍ୱରୂପ ଉଭୟ ଗନ୍ଧର୍ବ-ଗାନ୍ଧର୍ବୀ ଇହଲୀଳା ସମ୍ବରଣ କରିଛନ୍ତି। ଭାଗ୍ୟବାଦୀ କବି ଏହି ଘଟଣାବଳୀର ଏକ ଅବିକଳ ଚିତ୍ର ଦେଇଛନ୍ତି। ନୁରୁରାଜାଙ୍କ ନିକଟରେ କଥିତ ଦେବୀ କାଳୀଙ୍କ ବାଣୀରେ ପ୍ରକୃତରେ ଚିରସତ୍ୟ ଉନ୍ମୋଚିତ ହୋଇଛି।

"ଦେବେ ହେଲେ ସୁଦ୍ଧା ମୃତ୍ୟୁ ନିବାରଣେ ନାହିଁ ଶକତି
ଜୀବନ ଯାହାକୁ ବୋଲନ୍ତି ସେ ସିନା ମୃତ୍ୟୁକୁ ଗତି"

ରାଧାନାଥଙ୍କ କାବ୍ୟଗୁଡ଼ିକ ବିୟୋଗାତ୍ମକ। ଇଂରେଜ ସମାଲୋଚକଙ୍କ ଭାଷାରେ Our sweetest songs are those who tells us the saddest thoughts"। ଦୁଃଖିନୀ କୌଶଲ୍ୟାର "ଜନନୀ ଲୋ" ଶୋକ ସଂଗୀତ ପଠନ ପାଠକର ନୟନ ସ୍ୱତଃ ଆର୍ଦ୍ର ହୋଇଆସେ। କେଦାରଗୌରୀ କବିଙ୍କର ଦୁଃଖବାଦ ହୃଦୟର ଗୋଟିଏ କରୁଣ ଉତ୍ସ। ପ୍ରେମିକ ପ୍ରେମିକାଙ୍କର ମଧୁର ମିଳନ ମହାଯାତ୍ରାର ମହାମିଳନରେ ପରିଣତ ହୋଇଅଛି। ଆମୋଦର ସୀମା, ମୃତ୍ୟୁ ଯେଉଁଠି ଆଲୋକ ନାହିଁ, ଅନ୍ଧକାର ଅଛି, ସ୍ମିତ ନାହିଁ ବିସ୍ମିତ ଅଛି। ଜୟନ୍ତ ଉଷାର ଅମୃତ ମିଳନ ହଳାହଳମୟ କୁହେଳିରେ ଲୁପ୍ତ ହୋଇଅଛି। ମହାଯାତ୍ରା ମହାକାବ୍ୟରେ କବି ଦୁଃଖବାଦର ଶୀର୍ଷ ସୋପାନ ଆରୋହଣ କରିଛନ୍ତି। ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ କ୍ଳେଶାନୁପାତରେ ଯଥାର୍ଥ ଆନନ୍ଦ ଦାନ ଅସ୍ୱଚ୍ଛ ପ୍ରତିବିମ୍ବ ମାତ୍ର। ଗୋଟିଏ ସ୍ମିତରେ ନିୟତି ଯଯାତିକୁ ରାଜମୁକୁଟ ଦାନ କରିପାରେ ପୁଣି ଗୋଟିଏ ଭ୍ରୁକୁଟିରେ କୌଶଲ୍ୟାକୁ ଦାଣ୍ଡର ଚାଣ୍ଡାଳୁଣୀ କରି ଅନ୍ଧକାର କୂପରେ ନିଜ ଶିଶୁର ମଜ୍ଜାମାଂସ ଭକ୍ଷଣ କରିବାକୁ ବାଧ୍ୟକରେ। ମାନବର ସକଳ ଉଦ୍‌ଯୋଗ ଚେଷ୍ଟା ନିଷ୍ଠା ଓ ଅଧ୍ୟବସାୟ ତା ନିକଟରେ ପରାସ୍ତ।

କବି ମାତ୍ରେ ହିଁ ଦାର୍ଶନିକ। ପ୍ରତ୍ୟେକଙ୍କ ହୃଦୟର ନାନା ଅନୁଭୂତି ତାଙ୍କର ଲେଖା ଦ୍ୱାରା ପ୍ରତିଫଳିତ ହୋଇଥାଏ। ଜୀବନ ଦୁଃଖପୂର୍ଣ୍ଣ, ବିଳାସ ବ୍ୟସନ କେବଳ ସଂସାରର ଅଳୀକ ପିଚ୍ଛିଳ ପଥରେ ବିଦ୍ୟୁତ ସ୍ଫୁରଣ ପରି। ରାଧାନାଥ ଥିଲେ ମୁଖ୍ୟତଃ ନିରାଶବାଦୀ। ତାଙ୍କ କାବ୍ୟ କବିତାର ଛତ୍ରେ ଛତ୍ରେ ନିରାଶବାଦ ପ୍ରତିଫଳିତ ହୋଇଅଛି। ରକ୍ତବାହୁ ପ୍ରସଙ୍ଗରେ କବି କହିଛନ୍ତି –

''ଭ୍ରୂଭଙ୍ଗୀରେ ତାଙ୍କ କମ୍ପିଲା ଭୂତଳ
ମକ୍ଷି ତଡ଼ିବାକୁ ନାହିଁ ଆଜି ବଳ
ଦ୍ୱିସପ୍ତ ଭୁବନ ମଣିଲେ ଯେ ଅଳ୍ପ
ଆଶ୍ରିଲେ ସେ ସପ୍ତ ଚାଖଣ୍ଡର ତଳ୍ପ''

କବିଙ୍କର ଅନ୍ୟ ଏକ ବର୍ଣ୍ଣନା ଚିଲିକା କାବ୍ୟରେ ପରିଲକ୍ଷିତ ହୁଏ।

''ହସି ଖେଳି ଯେହୁ ଗମନ୍ତି ସମୟ
ଜୀବନ ମଣନ୍ତି ମହୋତ୍ସବମୟ
ଛାର ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ''

ଅନିତ୍ୟ ସଂସାରରେ ନାନା ଦୁଃଖ ଯନ୍ତ୍ରଣାରେ ପୀଡ଼ିତ ହୋଇ ସେ ସଂସାରକୁ କାରା ସହିତ ତୁଳନା କରିଛନ୍ତି। ପ୍ରକୃତିର ଚିର ଆଲେଖ୍ୟଶାଳିକା ଚିଲିକାକୁ ସେ ମେଲାଣି ମାଗି ସଂସାରକୁ ଫେରିବା ସମୟରେ ଦୁଃଖରେ ମ୍ରିୟମାଣ ହୋଇ କହିଛନ୍ତି –

''ଏ ସୁଖର ମୁହିଁ ନୁହଇଁ ଭାଜନ
ମୋ ଭାଗ୍ୟେ ସିନା ଏ ଭଙ୍ଗୁର ସ୍ୱପନ
ସଂସାର ନିଗଡ଼େ ସଂସାର କାରାରେ
ଯାପିବି ଜୀବନ ସଦା ହାହାକାରେ
ମାଗୁଛି ମେଲାଣି ଚିଲିକା ତୋଠାରେ
ବାହୁଡ଼ିବି ଏବେ ଦାରୁଣ ସଂସାରେ''

ଅଦୂରଦର୍ଶୀ ସଂସାରର ଅନିତ୍ୟତାକୁ ହୃଦୟଙ୍ଗମ ନ କରି ଅଳୀକ ସୁଖରେ ବିମୋହିତ ହୋଇପଡ଼ୁଛନ୍ତି। କିନ୍ତୁ କବି ନିଜର ଦୂରଦୃଷ୍ଟି ବଳରେ ଏହି ଭବଭଙ୍ଗୁରତା ଠାରୁ ଦୂରରେ ରହିବାକୁ ଇଚ୍ଛାପ୍ରକାଶ କରିଛନ୍ତି –

''ସଂସାରୀ ସଂଗତେ ସଂଗୀ ହେବାପାଇଁ
କେବେହେଁ ମୋହର ମନ ବଳେ ନାହିଁ
ହସିଖେଳି ଯେହୁ ଗମନ୍ତି ସମୟ
ଜୀବନ ମଣନ୍ତି ମହୋତ୍ସବମୟ''

କିନ୍ତୁ ତାଙ୍କର ଜୀବନ ଧାରଣ ପ୍ରଣାଳୀ ସଂସାରୀଙ୍କଠାରୁ ଭିନ୍ନ ଉପାଦାନରେ

ଗଢ଼ା । କବି ନିଜକୁ ଦୁଃଖ ଗୁରୁଙ୍କର ଶିଷ୍ୟରୂପେ ଚିତ୍ରିତ କରିଛନ୍ତି ।

"ଚିର ହାହାମୟ ଏ ଛାର ଜୀବନ
ଜୀବନ ନୁହଁଇ ଜୀବନ୍ତ ମରଣ"

ତାଙ୍କ ଭାଷାରେ

"Hope springs eternal in human breast
Man is never but to be blest"

ସାଂସାରିକ ସୁଖ ସମ୍ଭୋଗକୁ ସଂସାରୀ ଆହ୍ୱାନ ଜଣାଇବା ସମୟରେ ସେ ତାଠାରୁ ଦୂରରେ ରହିବାକୁ ସର୍ବଦା ଇଚ୍ଛୁକ । ତାହା ତାଙ୍କ ଲେଖାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ।

"ସୁଖ ବୋଲି ଯାକୁ ବୋଲଇ ସଂସାର
କରୁ ଥାଇ ତାକୁ ଦୂରଁ ମୁଁ ଜୁହାର"

ସଂସାର କ୍ଷେତ୍ରରେ ଅଦୂରଦର୍ଶୀମାନଙ୍କୁ ସେ ମନ ଇଚ୍ଛାରେ ପରିଚାଳିତ କରେ ।

"ତୋହରି ପୁଳିନେ ମୃଗତୃଷ୍ଣା ପ୍ରାୟେ
ମନୋମୃଗକୁ ସେ ଜଗତେ ଭ୍ରମାଏ"

ତେଣୁ ମୋହମାୟାଗ୍ରସ୍ତ ସଂସାରୀ ଚିତ୍ତର ସୁଖ ଯେ ନିତ୍ୟ ଶାଶ୍ୱତ ସୁଖର ସନ୍ଧାନ ଦିଏ ନାହିଁ । ଏ ନିରାଟ ବାସ୍ତବ ସତ୍ୟକୁ ରାଧାନାଥ ଉପଲବ୍ଧି କରିଥିଲେ । ଦରବାର କବିତାରେ ଇଂରେଜ ଶାସନରେ ଉପାଧିଲାଗି ଲାଳାୟିତ ହୋଇଥିବା ସଂସାରୀଙ୍କୁ ସେ ତାଚ୍ଛଲ୍ୟଭାବେ ଭର୍ତ୍ସନା କରିଛନ୍ତି । ତାଙ୍କର ମନ ଘୃଣା ବିରକ୍ତି, ଅବଶୋଷ ତଥା ଲଜ୍ୟାରେ ମ୍ରିୟମାଣ ହୋଇ ପଡ଼ିଛି । ଅନିତ୍ୟ ସାଂସାରିକ ଲୀଳାକୁ ଓ ଅଳୀକତାକୁ ସେ ନିମ୍ନୋକ୍ତ ପଂକ୍ତିମାନଙ୍କ ଦ୍ୱାରା ସୂଚାଇଛନ୍ତି ।

"ସର୍ବେ ଯିବେ ଭାଇ ଉଭେଇ ଅଚିରେ
ବୁଦ୍‌ବୁଦ୍ ପରାୟେ ଏହି ସିନ୍ଧୁ ନୀରେ
ମାଟି ଘଟେ ବହି ବୃଥା ଅଭିମାନ
ଅଜ୍ଞାନେ ଧରାକୁ କରେ ସରା ଜ୍ଞାନ"

କ୍ଷଣଭଙ୍ଗୁର ସଂସାରର "ଯଶ" ଯାହାକି ନଶ୍ୱର ନରକୁ ଅବିନଶ୍ୱର କରିବାର ପ୍ରଧାନ ଅବଲମ୍ବନ ତାହାକୁ ମଧ୍ୟ ସେ ଜୀବନର ମାନଦଣ୍ଡ ରୂପେ ଗଣନା କରି ପାରି ନାହାନ୍ତି । ଅଧିକନ୍ତୁ ସେହି ଅବସର ଅନୁସରଣ କରିବାକୁ ସେ ପଶ୍ଚାତ୍‌ପଦ୍ ହୋଇଛନ୍ତି । ତେଣୁ ସେ କହିଛନ୍ତି –

"ଜନତାର ଯଶ ପାଣିର ଫୋଟକା
ହୀରା ଭ୍ରମେ କିଂପା ଲୋଡୁଛୁ କରକା ?
ସାରମଣ କିମ୍ବା ଅସାର ଧନକୁ

ତାରା ମଣ କିଂପା ଜ୍ୟୋତିରିଙ୍ଗଣକୁ''

ଦରବାର କବିତାରେ ଅନିତ୍ୟ ସଂସାରର ଲୀଳା ଅପେକ୍ଷା ପରବର୍ତ୍ତୀ ଜୀବନର ସଞ୍ଚିତ ପାପପୁଣ୍ୟର ବିଚାର ପାଇଁ ଯମ ଦରବାରର ଅବତାରଣା କରାଇ ମାନବ ସମାଜକୁ ସତର୍କ କରାଇ ଅଛନ୍ତି। ଦରବାର କବିତାଟି ହୃଦୟଙ୍ଗମ କଲେ କ୍ଷଣିକ ସଂସାରରେ ଉଚ୍ଚପଦ ଲାଳାୟିତ ହେବାକୁ ମାନବ ଭୟ କରେ। କାରଣ ସଂସାର କ୍ଷେତ୍ରରେ କଳାକୁ ଧଳା କରିଥିବା ଲୋକର ଚିତ୍ରଗୁପ୍ତ ପାଞ୍ଜିରେ ପରିବର୍ତ୍ତନ ହୁଏନାହିଁ–

''ଯେତେ ହୋଇ ଯାଇଥିଲେ ଘସିମାଜି
ଭାଙ୍ଗି ଦିଏ ଦର୍ପ ଚିତ୍ରଗୁପ୍ତ ପାଞ୍ଜି''

ସଂସାର ସାଗର ତରିବାକୁ ଏକମାତ୍ର ଓ ଭବାର୍ଣ୍ଣବ ନୌକା ହେଉଛି ଧର୍ମ।

''ଧର୍ମ ଏକା ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାରବାରିଧି
ଧର୍ମ ଏକାସିନା ମହତ ପଣିଆ
ଆଉ ବଡ଼ପଣ ଅଢ଼େଇ ଦିନିଆ''

ସର୍ବଶେଷରେ କବି ଦରବାର କାବ୍ୟରେ ଏକ ବାସ୍ତବ ସୂଚନା ପ୍ରଦାନ କରିଛନ୍ତି।

''ଭଗ୍ନ ଘଟୁ ସଲୀଳ ଯେସନ
ସରିଯାଉ ଅଛି ଆୟୁ ପ୍ରତିକ୍ଷଣ''

ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ– Smiling they live and call life pleasure, But my life is dealt with another measure''

ତୁଳସୀ ସ୍ତବକର ଶରତ ବର୍ଣ୍ଣନାରେ ସଂସାରର ଅନିତ୍ୟତାକୁ ସେ ନିଖୁଣଭାବେ ଚିତ୍ରଣ କରିଛନ୍ତି–

''ପ୍ରଦୋକ୍ଷେ କାଦମ୍ବିନୀ ବାରୁଣୀପଟେ,
କୁଙ୍କୁମ ବର୍ଣ୍ଣେ କେତେ ଛବି ପ୍ରକଟେ।
କିରଙ୍ଗେ ଶୂନ୍ୟେ ବେଗେ ହୁଏ ଉଭାନ
ଭଙ୍ଗୁର ସୁଖ ଆଶା ସୌଧ ସମାନ''

ମହାଯାତ୍ରା ଆଧୁନିକ ଉତ୍କଳ ସାହିତ୍ୟର ପ୍ରଥମ ମହାକାବ୍ୟ। ଭାବହିଁ କବିତାର ପ୍ରାଣ ଏବଂ ସଙ୍ଗୀତମୟ ଭାଷା ଏହାର ଶରୀର ରୂପେ କଳ୍ପିତ ହୋଇଅଛି। ମହାଭାରତ ଯୁଦ୍ଧର ଅବସାନ ପରେ ଧର୍ମରାଜ ଯୁଧିଷ୍ଠିର ସଂସାର-ବିଷୟ-ବିଷେ-ଜରଜର ହୋଇ ସାରିବାପରେ ଇହଲୀଳା ସାଙ୍ଗକରିବାକୁ ଇଚ୍ଛା ପ୍ରକାଶ କରି କିରଟୀଙ୍କୁ କହିଛନ୍ତି–

''ଦୁଃଖମୟ ଭବ ସିନା ମହାସୁଖ ବୋଲି
ବୋଲନ୍ତି ଜଗତ ଯାକୁ ଜଡ଼ିତ ସେ ସଦା
ମହାଦୁଃଖେ ଆଲୋକ ସେ ଜଡ଼ିତ ତମସେ''

ସର୍ବଗ୍ରାସୀ କାଳର କରାଳ ଗ୍ରାସରେ ସମସ୍ତେ ଦିନେ ହେଲେ ପତିତ ହେବେ। ସେ ଯାତ୍ରା ପାଇଁ କେହି ଅପେକ୍ଷା ନକରି ଯେ କୌଣସି ସ୍ଥାନରେ ଆତ୍ମଗୋପନ କଲେ ମଧ କାଳର ସର୍ବଦ୍ରଷ୍ଟା ଚକ୍ଷୁର ଅନ୍ତରାଳରୁ କେହି ବାଦ ଯିବେ ନାହିଁ। ଯୁଧିଷ୍ଠିରଙ୍କ ମୁଖରେ –

"କାହାରି ବେଳକୁ କାଳ ଅନାଇ ନ ବସେ
ପାଶୋରିଲେ ତାକୁ ସେହି କେବେ ନ ପାଶୋରେ
ଅଦ୍ଭୁତ ସେ ଚୋର ତାକୁ ରୋଧିଲେ ତୋରଣ
ପାଚେରୀ ଲଙ୍ଘିଣ ପୁରେ ପଶେ ଅନାୟାସେ
ତାଲକ-କୀଳିତ ଗୃହେ ପଶେ ଅକୁଣ୍ଠିତେ"

ଯଯାତି କେଶରୀ କାବ୍ୟରେ ଲଳିତା ଉତ୍କଳ ରାଜକନ୍ୟା "ବିମଳା"ର ପୁରୁଷବେଶରେ ଭ୍ରାନ୍ତ ହୋଇ ତାଙ୍କୁ ନିଜର ଜୀବନସାଥୀ ରୂପେ ବରଣ କରିଥିଲେ, କିନ୍ତୁ ବିମଳାର ପ୍ରକୃତ ପରିଚୟ ଅବଗତ ହେଲେ ତାଙ୍କର ଭାବନା ନିହିତ ଜୀବନଦର୍ଶନ –

"ବିଧି ସୃଷ୍ଟି କ୍ରମେ ପ୍ରତୀପେ ବାସନା
ପୋଷଇ ହୃଦେ ଯେ ପ୍ରାଣୀ
ତୃଣ ହୋଇ ସିନା ଭାସିବାକୁ ଲୋଡ଼େ
ପ୍ରପାତ ସ୍ରୋତ ଉଜାଣି"

ସାଧାରଣ ଜୀବନଦର୍ଶନ ଅପେକ୍ଷା ତାଙ୍କର ଆତ୍ମଜୀବନଦର୍ଶନ ଚିଲିକାରେ ବିଶଦ ଭାବରେ ପ୍ରତିଫଳିତ ହୋଇଛି, ସଂସାର ବିଷୟା ବିଷରେ ସେ ବିମୋହିତ ହେବାପାଇଁ ଇଚ୍ଛୁକ ନୁହଁନ୍ତି। ତାଙ୍କର ଅନ୍ତିମ ଇଚ୍ଛାପ୍ରକାଶ କରିଛନ୍ତି –

ଲକ୍ଷ୍ୟଥିଲା ମାତ୍ର ତୋର ତୀର ଗୁହା
ଶାନ୍ତି ରସାସ୍ୱାଦ ସେହି ଦରୀକୋଳେ
ବାକ୍‌ଦେବୀ ଚରଣେ ପୂଜିବି ନିରୋଳେ

ଉକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ରାଧାନାଥ ଉଭୟ ବିଷାଦବାଦୀ ଓ ଦୈବ ବିଶ୍ୱାସୀ ଥିଲେ। ଆଧାତ୍ମିକ କାର୍ଯ୍ୟ ଓ ଅନୁଚିନ୍ତନ ନିକଟରେ ମାନବର ସମସ୍ତ ଶକ୍ତି ଓ ପୌରୁଷ ସେ ନତମସ୍ତକ ହୁଏ ତାହା ତାଙ୍କ କାବ୍ୟକବିତା ମାନଙ୍କରୁ ନୀତିଶିକ୍ଷା ମାଧମରେ ଅନୁମିତ ହୁଏ। ତାଙ୍କ କବିତାର ଛନ୍ଦ୍ରେ ଛନ୍ଦ୍ରେ ଦୁଃଖର ମଧୁର ଧ୍ୱନି ଝଙ୍କୃତ ହୋଇଅଛି। ଦୁଃଖର କାଉଁରୀ ସ୍ପର୍ଶରେ ତାହା ଅତ୍ୟନ୍ତ ମଧୁର କୋମଳ ହୋଇପାରିଛି। କବିଙ୍କର ଆତ୍ମଦର୍ଶନ ପର୍ଯ୍ୟାଲୋଚନା କଲେ ଆମେ କେବଳ କବି ଜୀବନର ବିଷାଦବାଦିତା ଦୃଷ୍ଟି ପଥାରୂଢ଼ ହୁଏ। ତାଙ୍କ କାବ୍ୟଗୁଡ଼ିକ ବସ୍ତୁତଃ ରୋମାଣ୍ଟିକ ଓ ପ୍ରେମସମ୍ବଳିତ ନହୋଇ ଜୀବନପ୍ରତି ଗଭୀର ଅର୍ନ୍ତଦୃଷ୍ଟି ତଥା ସୃଷ୍ଟି ରହସ୍ୟର କମନୀୟତା ପ୍ରତିପାଦନ କରୁଛି। ପ୍ରକୃତିର ଅସଂଖ୍ୟ ରୂପ ଭିତରେ ଓ ପାର୍ଥିବ ଜଞ୍ଜାଳର ପୀଡ଼ା ଦାୟାବ ଅନୁଭୂତି ମଧରେ କବିଚିତ୍ତ ନିର୍ଲିପ୍ତ। ଆପଣାର ନିଭୃତ

ଓ ନିଃସଙ୍ଗ ରୂପଟି ଦୁଃଖର ମୂର୍ତ୍ତି ପରିଗ୍ରହ କରି ଯେପରି ତାଙ୍କରି ଭାଷାରେ ବିଶ୍ୱ ଜନମାନସକୁ ଉଦ୍‌ବେଳିତ କରୁଛି ।

''ଚିର ହାହାମୟ ଏ ଛାର ଜୀବନ
ଜୀବନ ନୁହଁଇ ଜୀବନ୍ତ ମରଣ''

ରାଧାନାଥଙ୍କ ଜୀବନଦର୍ଶନର ଭୂୟସୀ ପ୍ରମାଣ ତାଙ୍କ କାବ୍ୟ କବିତା ପ୍ରଦାନ କରିଛି । ରାଧାନାଥଙ୍କୁ ସାଧାରଣ ଭାବରେ ବିଷାଦବାଦୀ କବି ଭାବରେ ଗ୍ରହଣ କରାଯାଉଥିଲେ ମଧ୍ୟ ଦର୍ଶନ ଦୃଷ୍ଟିରୁ ବିଚାର କଲେ ସେ ଜଣେ ଆଦର୍ଶବାଦୀ ଓ ଆଶାବାଦୀ କବି ମଧ୍ୟ ଥିଲେ ।

□ □ □

# ରାଧାନାଥଙ୍କ ରଚନାରେ ପ୍ରାଚ୍ୟ ସାହିତ୍ୟର ପ୍ରଭାବ

ଡକ୍ଟର ପ୍ରଫୁଲ୍ଲ କୁମାର ଦାଶ

କବିବର ରାଧାନାଥ ରାୟ ଆଧୁନିକ ଓଡ଼ିଆ ସାହିତ୍ୟରେ ଯୁଗପ୍ରବର୍ତ୍ତକ ରୂପେ ସୁପରିଚିତ। ସେ ଇଂରେଜ ରାଜତ୍ୱ କାଳରେ ଆବିର୍ଭୂତ ହୋଇଥିଲେ ଏବଂ ତାହାଙ୍କ ସମୟରେ ଓଡ଼ିଶାରେ ଇଂରାଜୀ ଶିକ୍ଷା ପ୍ରସାର ଲାଭ କରିସାରିଥିଲା। ଫଳରେ ସେ ଇଂରାଜୀ ଶିକ୍ଷାଲାଭ ପୂର୍ବକ ବୈଦେଶିକ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ପାଶ୍ଚାତ୍ୟ କାବ୍ୟଦର୍ଶନକୁ ଅନୁସରଣ ପୂର୍ବକ କାବ୍ୟକବିତା ରଚନା ନିମିତ୍ତ ଆଗ୍ରହ ପ୍ରକାଶ କରିଥିଲେ। ଏ ପ୍ରସଙ୍ଗରେ ସ୍ମରଣୀୟ ଯେ, ପୂର୍ବବର୍ତ୍ତୀ ଭଞ୍ଜଯୁଗୀୟ କବିମାନେ ପ୍ରାଚ୍ୟ ବା ସଂସ୍କୃତ ସାହିତ୍ୟର ମହାକବିମାନଙ୍କ ପନ୍ଥା ଅନୁସରଣପୂର୍ବକ କାବ୍ୟ ଓ ମହାକାବ୍ୟମାନ ରଚନା କରିଥିଲେ। ମାତ୍ର କବିବର ରାଧାନାଥ ପ୍ରାଚ୍ୟ ଆଦର୍ଶ ପରିବର୍ତ୍ତେ ପାଶ୍ଚାତ୍ୟ କାବ୍ୟାଦର୍ଶ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ। ତଥାପି ସାହିତ୍ୟ ସର୍ଜନା କ୍ଷେତ୍ରରେ ସେ ପ୍ରାଚ୍ୟ ଆଦର୍ଶଠାରୁ ନିଜକୁ ସଂପୂର୍ଣ୍ଣ ଦୂରେଇ ନେଇଯାଇଥିଲେ ବୋଲି କୁହାଯାଇ ନପାରେ। ପ୍ରାଚ୍ୟ ସାହିତ୍ୟର * ମହାକବିମାନଙ୍କ ତୁଲ୍ୟ ସେ ବିଶାଳକାୟ ମହାକାବ୍ୟ ରଚନା କରିବା ପରିବର୍ତ୍ତେ ପାଶ୍ଚାତ୍ୟ ଆଦର୍ଶରେ କ୍ଷୁଦ୍ରକ୍ଷୁଦ୍ର କାବ୍ୟ, ଖଣ୍ଡକାବ୍ୟ ଓ କବିତାମାନ ରଚନା କରିଥିଲେ ମଧ୍ୟ ସଂସ୍କୃତ ସାହିତ୍ୟର ମହାକବିମାନଙ୍କ ପ୍ରଭାବରୁ ନିଜକୁ ମୁକ୍ତ କରିପାରି ନଥିଲେ।

ଏ ପ୍ରସଙ୍ଗରେ କହିବା ବାହୁଲ୍ୟ ହେବ ଯେ, କବିବର ରାଧାନାଥ ଥିଲେ ଭାରତୀୟ, ସୁତରାଂ ଇଂରାଜୀ ଶିକ୍ଷା ଓ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ମହାଭରତୀୟ ଭାବନା ତାହାଙ୍କ ମନରୁ ସଂପୂର୍ଣ୍ଣ ଭାବରେ ଅପସରି ଯାଇନଥିଲା। ସଂସ୍କୃତ ପୁରାଣସ୍ରଷ୍ଟା ବେଦବ୍ୟାସଙ୍କଠାରୁ ଆରମ୍ଭ କରି କାବ୍ୟସ୍ରଷ୍ଟା ବାଲ୍ମୀକି, କାଳିଦାସ, ଶ୍ରୀହର୍ଷ, ବାଣଭଟ୍ଟ, ମାଘ ଓ ଭାରବି ପ୍ରମୁଖ କବି ତାହାଙ୍କର ବନ୍ଦନୀୟ ଥିଲେ। ସେ ପାଶ୍ଚାତ୍ୟ ସାହିତ୍ୟ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ପ୍ରାଚ୍ୟ ସାହିତ୍ୟର ଏହି

---

* 'ପ୍ରାଚ୍ୟ ସାହିତ୍ୟ' କହିଲେ ସଂସ୍କୃତ ସାହିତ୍ୟକୁହିଁ ବୁଝାଇଥାଏ। କାରଣ ପ୍ରାଚ୍ୟ ସାହିତ୍ୟ (Oriental Literature) ଓ ପ୍ରାଚ୍ୟ ବିଦ୍ୟା କହିଲେ କହିଲେ ସଂସ୍କୃତ ସାହିତ୍ୟ ଓ ସଂସ୍କୃତ ଭାଷାର ବିଭିନ୍ନ ଶାସ୍ତ୍ରକୁ ବୁଝାଇଥାଏ।

ସମସ୍ତ ମହାକବିଙ୍କ ରଚନାକୁ ମଧ୍ୟ ତନ୍ନତନ୍ନ ଭାବରେ ଅଧ୍ୟୟନ କରିଥିବା ବିଷୟ ତାହାଙ୍କ ଜୀବନୀରୁ ଜଣାଯାଇଥାଏ। ସ୍ୱର୍ଗତଃ ଦୁର୍ଗାଚରଣ ରାୟଙ୍କ ଲିଖିତ 'ରାଧାନାଥ ଜୀବନୀ'ରେ ଉଲ୍ଲିଖିତ ବିଭିନ୍ନ ପ୍ରସଙ୍ଗରୁ ଏହି ବିଷୟ ସ୍ପଷ୍ଟ ଜଣାଯାଇଥାଏ। ଏହି ଗ୍ରନ୍ଥର ପୃଷ୍ଠା ୯୮ରେ ତତ୍କାଳୀନ ବଙ୍ଗ ଓଡ଼ିଶାର ଶିକ୍ଷାବିଭାଗର ଇନିସ୍‌ପେକ୍‌ଟର ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ରାଧାନାଥଙ୍କ ସଂପର୍କ ବିଷୟ ଉଲ୍ଲେଖ କରାଯାଇଛି। ସେଥିରେ ପ୍ରସଙ୍ଗକ୍ରମେ ରାଧାନାଥଙ୍କର ଏକ ଉକ୍ତି ସ୍ଥାନ ପାଇଛି। ତାହା ହେଉଛି— ''ଭୁବନେଶ୍ୱର ପରିତ୍ୟାଗ କରି ଆମ୍ଭେମାନେ ଶରଦେଇପୁର ଚଟିରେ ଅବସ୍ଥାନ କଲୁ। ସେଠାରେ ଅବସ୍ଥାନ ସମୟରେ ଭୁବନେଶ୍ୱରର ପ୍ରାଚୀନ ଆର୍ଯ୍ୟ କୀର୍ତ୍ତିରାଜି ପ୍ରସଙ୍ଗରେ ଅନେକ କଥୋପକଥନ ହେଲା। ଏହି ପ୍ରସଙ୍ଗରୁ ସ୍ୱଭାବତଃ ସଂସ୍କୃତ ସାହିତ୍ୟର କଥା ମଧ୍ୟ ଉଠିଲା। ଓଡ଼ିଶାରେ ସଂସ୍କୃତ ଶ୍ଳୋକସମୂହ ଲୋକେ ସ୍ୱର ସଂଯୋଗରେ ପଢ଼ିଥାନ୍ତି, ଏହି କଥା ଶୁଣି ସେ ମୋତେ ସ୍ୱର ସଂଯୋଗରେ କୌଣସି ଗୋଟିଏ ଶ୍ଳୋକ ପଢ଼ିବାକୁ କହିଲେ। ମୁଁ ମେଘଦୂତର ନିମ୍ନୋକ୍ତ ଶ୍ଳୋକ ମନ୍ଦାକ୍ରାନ୍ତା ଛନ୍ଦରେ ଆବୃତ୍ତି କଲି—

''ତାଂ ଜାନୀଥା ପରିମିତ କଥାଂ ଜୀବିତଂ ମେ ଦ୍ୱିତୀୟଃ
ଦୂରୀଭୂତେ ମୟି ସହଚରେ ଚକ୍ରବାକିମିବୈକାମ୍
ଗାଢୋତ୍କଣ୍ଠାଂ ଗୁରୁଷୁ ଦିବସେଷ୍ୱେଷୁ ଗଚ୍ଛତ୍ସୁ ବାଳାଂ
ଜାତାଂ ମନ୍ୟେ ଶିଶିର ମଥିତାଂ ପଦ୍ମିନୀବାନ୍ୟରୂପାମ୍''

ଶ୍ଳୋକ ଶୁଣି ତାହାଙ୍କର ବିଶାଳ ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ହେଲା। ଶ୍ଳୋକ ଦ୍ୱାରା ଯେପରି ତାହାଙ୍କ ହୃଦୟରେ କୌଣସି ଅନିର୍ବଚନୀୟ ଅନୁସ୍ମୃତି ଉପୁଜି ଉଠିଲା। ସେ ହଠାତ୍ କହିଲେ, 'ଆହା ! କି ସାହିତ୍ୟ ! କି କୀର୍ତ୍ତି ! ଆମ୍ଭେ କଣ ହୋଇଗଲୁଣି !''

''ସଂସ୍କୃତ ସାହିତ୍ୟ ପ୍ରସଙ୍ଗରେ ଅନୁସଙ୍ଗତଃ ଉତ୍କଳସାହିତ୍ୟ କଥା ଉଠିଲା।''

(ରାଧାନାଥ ଜୀବନୀ- ପୃ: ୯୮)

ମହାକବି କାଳିଦାସଙ୍କ ରଚନାରେ କବିବର ରାଧାନାଥଙ୍କର କିପରି ଗଭୀର ଅବଗାହ ଥିଲା, ଏହି ବିଷୟ ଏଥିରୁ ଅନୁମାନ କରାଯାଇପାରେ। ସେପରି ପାଣ୍ଡିତ୍ୟ ନଥିଲେ 'ମେଘଦୂତ'ର ଶ୍ଳୋକ ଆବୃତ୍ତି ପୂର୍ବକ ଭୂଦେବବାବୁଙ୍କ ତୁଲ୍ୟ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ଇଂରାଜୀ ସାହିତ୍ୟ ବିଶାରଦଙ୍କୁ ଅଭିଭୂତ କରିଦେବା ସହଜସାଧ୍ୟ ନୁହେଁ।

ଏହା ସଙ୍ଗେ ସଙ୍ଗେ 'ଉତ୍କଳସାହିତ୍ୟ' ପତ୍ରିକାରେ ଏକଦା ରାଧାନାଥଙ୍କ ଅଧ୍ୟୟନର ପରିସର ତଥା ପାଣ୍ଡିତ୍ୟ ସଂପର୍କରେ ବାଗ୍ମିପ୍ରବର ବିଶ୍ୱନାଥ କର ଲେଖିଥିଲେ— ''ତାଙ୍କ ଅଧ୍ୟୟନର ସୀମା ନିରୂପଣ କରିବା ସହଜ ନୁହେଁ। ଓଡ଼ିଆ, ବଙ୍ଗଳା, ହିନ୍ଦୀ, ସଂସ୍କୃତି, ଇଂରାଜୀ ଭାଷାମାନଙ୍କର ସାବବଡ଼ କେତେ ପୁସ୍ତକ ଅଧ୍ୟୟନ କରିଛନ୍ତି, ତାହାର ପରିମାଣ କରିବା କଠିନ। ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଯେଉଁ ରାଧାନାଥ ବ୍ୟାସ, ବାଲ୍ମୀକି, କାଳିଦାସ, ଶ୍ରୀହର୍ଷ, ଭାରବି, ହୋମର, ଭର୍ଜିଲ, ଦାନ୍ତେ,

ଗେଟେ, ସିଲର୍, ସେକ୍ସପିଅର୍, ମିଲ୍‌ଟନ୍, ବାଇରନ୍, ସେଲି, ଓ୍ୱାଡ଼ସ୍‌ୱାର୍ଥ ପ୍ରଭୃତି ସ୍ୱଦେଶ ଓ ବିଦେଶର ମହାକବି ଓ ସାହିତ୍ୟରଥୀମାନଙ୍କର ରଚନାବଳୀ ପାଠକରି ସେ ସମସ୍ତର ଉନ୍ନତ, ଉଦାର ଓ ମଧୁରଭାବ ଗ୍ରହଣରେ ସର୍ବଦା ତତ୍ପର, ସେ ଯେ କେବଳ ଉତ୍କଳର ଖ୍ୟାତନାମା ପ୍ରାଚୀନ ମହାକବି ସାରଳାଦାସ, ବଳରାମ ଦାସ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ ପ୍ରଭୃତିଙ୍କ ଗ୍ରନ୍ଥମାନ ଆଗ୍ରହ ସହକାରେ ପାଠକରି ତୃପ୍ତ ହୋଇଥିଲେ, ତାହାନୁହେଁ, ଆଧୁନିକ ଉତ୍କଳର୍ ଅତି ନଗଣ୍ୟ କୌଣସି ଲେଖକଙ୍କର ଅତି ସାମାନ୍ୟ ଖଣ୍ଡିଏ ପୁସ୍ତକ ବା ଗୋଟିଏ ସାମାନ୍ୟ ରଚନା ବାହାରିବା ମାତ୍ରକେ ତାହା ପାଠ ନ କରି ରହିପାରୁ ନଥିଲେ।''

(ଉତ୍କଳ ସାହିତ୍ୟ, ଏକାଦଶ ଭାଗ, ଦ୍ୱାଦଶ ସଂଖ୍ୟା)

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କବିବର ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ସହିତ ପ୍ରାଚ୍ୟ ସାହିତ୍ୟକୁ ମଧ ତନ୍ନତନ୍ନ ଅଧ୍ୟୟନ କରିଥିଲେ। ସୁତରାଂ ତାହାଙ୍କ ରଚନାବଳୀ ସଂପୂର୍ଣ୍ଣ ଭାବରେ ପ୍ରାଚ୍ୟ ସାହିତ୍ୟର ପ୍ରଭାବରୁ ମୁକ୍ତ ହୋଇପାରି ନଥିଲା। ଅତଏବ ରାଧାନାଥଙ୍କ କବିତ୍ୱର ବିଭିନ୍ନ ବିଭାବ ସଂପର୍କରେ ଆଲୋଚନା କରିବାକୁ ଗଲାବେଳେ ତାହାଙ୍କ ରଚନାବଳୀରେ ପ୍ରାଚ୍ୟ ସାହିତ୍ୟର ପ୍ରଭାବ ବିଷୟ ଆଲୋଚନା କରିବା ଯଥାର୍ଥ ମନେହୁଏ। ନିମ୍ନରେ ଏହାର କେତେଗୋଟି ଦିଗ ଉପରେ ଆଲୋକପାତ କରାଗଲା।

**କାବ୍ୟକବିତାର ବିଷୟବସ୍ତୁ—**

କବିବର ରାଧାନାଥ ମୁଖ୍ୟତଃ ପାଶ୍ଚାତ୍ୟ ସାହିତ୍ୟରୁ ବିଷୟବସ୍ତୁ ଆହରଣ ପୂର୍ବକ କାବ୍ୟକବିତା ରଚନା କରିଥିଲେ ବୋଲି କୁହାଯାଇଥାଏ। ତାହାଙ୍କର କେଦାରଗୌରୀ, ପାର୍ବତୀ, ଉଷା, ଚନ୍ଦ୍ରଭାଗା ଇତ୍ୟାଦି କାବ୍ୟ ଏହାର ଦୃଷ୍ଟାନ୍ତ। ତଥାପି ବିଷୟବିନ୍ୟାସ କ୍ଷେତ୍ରରେ ସେ ସଂପୂର୍ଣ୍ଣ ଭାବରେ ପ୍ରାଚ୍ୟ ସାହିତ୍ୟକୁ ଭୁଲିଯାଇ ନଥିଲେ। କେତେକ ଖଣ୍ଡକାବ୍ୟ ଓ କବିତା ରଚନା କ୍ଷେତ୍ରରେ ସେ ଭାରତୀୟ ପୁରାଣଶାସ୍ତ୍ରକୁ ମୁଖ୍ୟ ଅବଲମ୍ବନ ରୂପେ ଗ୍ରହଣ କରିଛନ୍ତି। ତାହାଙ୍କର ପୌରାଣିକ ରଚନାବଳୀ ମଧରେ ଦଶରଥ ବିୟୋଗ, ସାବିତ୍ରୀ ଚରିତ, ବେଣୀ ସଂହାର, ଦୁର୍ଯୋଧନଙ୍କର ରକ୍ତନଦୀ ସନ୍ତରଣ, ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ ପ୍ରଭୃତି ଉଲ୍ଲେଖଯୋଗ୍ୟ। ବ୍ୟାସଦେବଙ୍କ ପ୍ରଣୀତ ମହାଭାରତ ଓ ବାଲ୍ମୀକି ରାମାୟଣ ଏହି ସମସ୍ତ ରଚନା ସୃଷ୍ଟି କ୍ଷେତ୍ରରେ କବିଙ୍କର ମୁଖ୍ୟ କରାବଲମ୍ବ ହୋଇଥିବା ଜଣାଯାଏ। ଏତଦ୍‌ବ୍ୟତୀତ 'ମହାଯାତ୍ରା' ଓ ଅନ୍ୟାନ୍ୟ କେତେକ କାବ୍ୟରେ ବିଷୟବିନ୍ୟାସ କ୍ଷେତ୍ରରେ ସ୍ଥାନେ ସ୍ଥାନେ ପ୍ରାଚ୍ୟସାହିତ୍ୟର ଏହି ଦୁଇଗୋଟି ମହାଗ୍ରନ୍ଥର ପ୍ରଭାବ ଅନୁଭୂତ ହୋଇଥାଏ। ସେ ରାଜପୁତ୍ର ଓ ରାଜକନ୍ୟାଙ୍କର ପ୍ରଣୟ କାହାଣୀକୁ ଭିତ୍ତିକରି ତାହାଙ୍କର କାଳ୍ପନିକ କାବ୍ୟମାନ ରଚନା କରିଛନ୍ତି। କବିବର ରାଧାନାଥ ମଧ ସେହି ଭଞ୍ଜୀୟ ଆଦର୍ଶର ପ୍ରଭାବରୁ ନିଜକୁ ମୁକ୍ତ କରିପାରି ନାହାନ୍ତି। ତାହାଙ୍କର ଉଷା, ନନ୍ଦିକେଶ୍ୱରୀ, ପାର୍ବତୀ, ଯଯାତିକେଶରୀ ପ୍ରଭୃତି କାବ୍ୟ

ରାଜପୁତ୍ର ଓ ରାଜକନ୍ୟାଙ୍କ ପ୍ରଣୟ କାହାଣୀ ଅଥବା ରାଜପରିବାରର ଘଟଣାକୁ ନେଇ ରଚିତ ହୋଇଛି। ଏ ପ୍ରସଙ୍ଗରେ କହିବା ବାହୁଲ୍ୟ ହେବ ଯେ, ରାଜପୁତ୍ର ଓ ରାଜକନ୍ୟାଙ୍କ ପ୍ରେଣୟ କାହାଣୀ ତଥା ରାଜ ଅନ୍ତଃପୁର ଓ ରାଜପରିବାରର ବିଭିନ୍ନ ଘଟଣାକୁ ଭିତ୍ତିକରି ସଂସ୍କୃତ ଭାଷାରେ ବହୁ କାବ୍ୟ ଓ ନାଟକ ରଚିତ ହୋଇଛି। କବିବର ରାଧାନାଥ ମଧ୍ୟ ନିଜକୁ ସେହି ଆଦର୍ଶରୁ ମୁକ୍ତ କରିପାରି ନାହାନ୍ତି।

## ଚରିତ୍ର ସୃଷ୍ଟି –

ସଂସ୍କୃତ ଭାଷାର ବିଭିନ୍ନ ପୁରାଣ, ରାମାୟଣ, ମହାଭାରତ ଏବଂ ବିଭିନ୍ନ କାବ୍ୟ ଓ ନାଟକ ପ୍ରଭୃତିରେ ଦେବଦେବୀ, ଅଭିଶାପଗ୍ରସ୍ତ ହୋଇ ମର୍ତ୍ତ୍ୟରେ ମାନବ ରୂପରେ ଜନ୍ମଲାଭ କରିଥିବା ଦେବତା ଅଥବା ଗନ୍ଧର୍ବ-ଗନ୍ଧର୍ବୀ, ରାଜପୁତ୍ର ଓ ରାଜକନ୍ୟା ମୁଖ୍ୟ ଚରିତ୍ର ରୂପେ ଚିତ୍ରିତ ହୋଇଥିବା ଦେଖାଯାଏ। ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର କବି ଉପେନ୍ଦ୍ରଭଞ୍ଜ ମଧ୍ୟ ଏହି ଆଦର୍ଶରେ ତାହାଙ୍କର ବିଭିନ୍ନ କାବ୍ୟରେ ଚରିତ୍ର ସଂଯୋଜନା କରିଛନ୍ତି। କବିବର ରାଧାନାଥଙ୍କ କାବ୍ୟରାଜିରେ ସ୍ଥାନଲାଭ କରିଥିବା ବିଭିନ୍ନ ଚରିତ୍ର ମଧ୍ୟ ଏହି ଶ୍ରେଣୀର। ଉଷା, ନନ୍ଦିକେଶ୍ୱରୀ, ପାର୍ବତୀ, ଚନ୍ଦ୍ରଭାଗା, ମହାଯାତ୍ରା, ଯଯାତିକେଶରୀ ପ୍ରଭୃତି କାବ୍ୟର ବିଭିନ୍ନ ଚରିତ୍ର ମଧ୍ୟ ଏହି ଜାତୀୟ ଅଟନ୍ତି। 'ଉଷା' କାବ୍ୟର ମୁଖ୍ୟ ନାୟିକା ଉଷା ଓ ନାୟକ ଜୟନ୍ତ ଉଭୟେ ହେଉଛନ୍ତି ଅଭିଶାପ-ଗ୍ରସ୍ତ ଅପ୍ସରୀ ଓ ଗନ୍ଧର୍ବ। ସେହିପରି ନନ୍ଦିକେଶ୍ୱରୀ, କୌଶଲ୍ୟା, ଯଯାତି ଓ ମହାଯାତ୍ରାର ଯୁଧିଷ୍ଠିର ପ୍ରମୁଖ ହେଉଛନ୍ତି ରାଜ ପରିବାର ପୁତ୍ରକନ୍ୟା। ବାସ୍ତବ ପକ୍ଷରେ କହିବାକୁ ଗଲେ, କବିବର ରାଧାନାଥ ପାଶ୍ଚାତ୍ୟ ସାହିତ୍ୟରୁ ବିଷୟବସ୍ତୁ ଆହରଣ ପୂର୍ବକ କାବ୍ୟକବିତା ରଚନା କରିଥିଲେ ମଧ୍ୟ ପ୍ରାଚ୍ୟ ସାହିତ୍ୟର ବିଭିନ୍ନ ଚରିତ୍ରକୁ ଏଥିରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇଛନ୍ତି।

## ପ୍ରକୃତି ବର୍ଣ୍ଣନାରେ ପ୍ରାଚ୍ୟ ପ୍ରଭାବ

କବିବର ରାଧାନାଥ ଆଧୁନିକ ଓଡ଼ିଆ ସାହିତ୍ୟରେ ଜଣେ ମହାନ୍ ପ୍ରକୃତିପ୍ରାଣ କବି ଭାବରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି। ତାହାଙ୍କର ପ୍ରତ୍ୟେକ କାବ୍ୟରେ ପ୍ରକୃତିରେ ଜୀବନ୍ତ ବର୍ଣ୍ଣନା ଦେଖିବାକୁ ମିଳେ। ବନ, ପର୍ବତ, ନଦୀ, ପୁଷ୍କରିଣୀ, ହ୍ରଦ, ବୃକ୍ଷଲତା, ସମୁଦ୍ର, ପଶୁପକ୍ଷୀ, ପ୍ରଭାତ, ସନ୍ଧ୍ୟା ଓ ବିବିଧ ଋତୁ ଇତ୍ୟାଦି ପ୍ରାକୃତିକ ଶୋଭାସମ୍ଭାରରେ ରାଧାନାଥ ସାହିତ୍ୟ ଋଦ୍ଧିମନ୍ତ ହୋଇ ଉଠିଛି। ମାତ୍ର ଉକ୍ତ ପ୍ରାକୃତିକ ଶୋଭାବର୍ଣ୍ଣନା କ୍ଷେତ୍ରରେ କବି ବହୁସ୍ଥଳରେ ପ୍ରାଚ୍ୟ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇଥିବା ଦେଖାଯାଏ। କାବ୍ୟ ମଧ୍ୟରେ ବିଭିନ୍ନ ପ୍ରାକୃତିକ ଶୋଭା କିପରି ବର୍ଣ୍ଣନା କରାଯିବ ଏବଂ ଏକ ନିର୍ଦ୍ଦିଷ୍ଟ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କଲାବେଳେ କେଉଁ କେଉଁ ବିଷୟ ଉଲ୍ଲେଖ କରିବା ଆବଶ୍ୟକ, ସେ ସଂପର୍କରେ ପ୍ରାଚ୍ୟ ଆଳଙ୍କାରିକଗଣ ବିଭିନ୍ନ ଗ୍ରନ୍ଥରେ କେତେକ ନିୟମ ନିର୍ଦ୍ଦେଶ କରିଛନ୍ତି। ସଂସ୍କୃତ ଭାଷାରେ ପ୍ରକୃତି ବର୍ଣ୍ଣନା ବିଷୟକ ନିୟମ

ହୋଇଥିବା ବିଭିନ୍ନ ଅଳଙ୍କାରଗ୍ରନ୍ଥ ମଧ୍ୟରେ କେଶବ ମିଶ୍ରଙ୍କ ପ୍ରଣୀତ 'ଅଳଙ୍କାର ଶେଖର' ନାମକ ଗ୍ରନ୍ଥ ବିଶେଷ ଉଲ୍ଲେଖଯୋଗ୍ୟ। ବନ, ପର୍ବତ, ନଦୀ, ଉପବନ ବିଭିନ୍ନ ଋତୁ, ସଂଧ୍ୟା, ପ୍ରଭାତ ଇତ୍ୟାଦି ପ୍ରାକୃତିକ ଶୋଭା ବର୍ଣ୍ଣନା କଲାବେଳେ କେଉଁ କେଉଁ ବିଷୟ ପ୍ରତି ଦୃଷ୍ଟି ଦିଆଯିବ ତାହା ଏହି ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି। ଉଦାହରଣ ସ୍ୱରୂପ, ବନବର୍ଣ୍ଣନା ସଂପର୍କରେ ଏଥିରେ କୁହାଯାଇଛି –

''ଅରଣ୍ୟେ ହି ବରାହେ ବା ଯୂଥ ସିଂହାଦୟୋ ଦ୍ରୁମାଃ
କାକୋଲୂକ କପୋତାଦ୍ୟା ଭିଲ୍ଲ ଭଲ୍ଲୁ ଦବାଦୟଃ।''

ଅର୍ଥାତ୍ ଅରଣ୍ୟ ବର୍ଣ୍ଣନା କଲାବେଳେ ସର୍ପ, ବରାହ, ହସ୍ତୀ, ସିଂହ, ବୃକ୍ଷ, କାକ, ଭଲ୍ଲୁକ, କପୋତ, ବନାଗ୍ନି ପ୍ରଭୃତି ବିଷୟ ଉଲ୍ଲେଖ କରାଯିବା ଆବଶ୍ୟକ। ରାଧାନାଥ ସାହିତ୍ୟ ଅନୁଶୀଳନ କଲେ ଜଣାଯାଏ ଯେ, କବି ତାହାଙ୍କର ବିଭିନ୍ନ କାବ୍ୟରେ ବନବର୍ଣ୍ଣନା କଲାବେଳେ ଏଥିମଧ୍ୟରୁ ଅଧିକାଂଶ ବିଷୟ ଉଲ୍ଲେଖ କରିବାକୁ ଭୁଲିନାହାନ୍ତି। ଦୃଷ୍ଟାନ୍ତ ସ୍ୱରୂପ ତାହାଙ୍କ ମହାଯାତ୍ରା କାବ୍ୟର ନିମ୍ନ ଅଂଶ ପ୍ରତି ଲକ୍ଷ୍ୟ କରାଯାଇପାରେ –

''ଦେଖିଲେ କୌତୁକେ ପାଣ୍ଡେ ସେ କାନ୍ତାର ପଥ,
ଅନନ୍ତ ବୈଚିତ୍ର୍ୟମୟୀ ଅରଣ୍ୟ-ପ୍ରକୃତି
କି ଅବା ସେ ମାର୍ଗରେଖା ଗୈରିକେ ଅରୁଣ
ସୀମନ୍ତେ ସିନ୍ଦୂର ରେଖା ବନଲକ୍ଷ୍ମୀଙ୍କର ?
କାହିଁ ଊର୍ଦ୍ଧ୍ୱେ ଉଠି ମାର୍ଗ ମିଶିଛି ଆକାଶେ

× × ×

ନୀଳ ବନସ୍ଥଳୀ ମଧ୍ୟେ ଦୂର ପ୍ରସାରିତ
ସୌରକରୋଦ୍ଭାସି ଶୁଭ୍ର ନଦୀବାଲିରେଖା
ସ୍ନିଗ୍ଧ ଛାୟା-ଦ୍ରୁମମତୀ ଭୀମ ମହାଟବୀ,
ଆବରିଛି ମହୀନଭଃ ପଲ୍ଲବ ଗହଳେ

× × ×

କାହିଁ ମୁଖରିତ ସ୍ଥଳୀ ଶ୍ୱାପଦ ନିର୍ଘୋଷେ,
ପ୍ରତି-ଘୋଷେ ପ୍ରତିବାଣୀ ଦିଅଇ ଯା ଶୁଣି
ପ୍ରତିଧ୍ୱନି ଗିରିଗୁହା-କ୍ରୋଡ଼ପ୍ରଣୟିନୀ,

× × ×

ଶୃଙ୍ଗଧର କୃଷ୍ଣସାର ସଙ୍ଗେ କୁରଙ୍ଗିନୀ
ଧରଣୀ-ସୀମାନ୍ତ-ସେତୁ ସମ ଟଙ୍କ ଭୂମି

× × ×

ତୋଳିଛନ୍ତି ନୀଳଶିଖା ଦୂର ଗିରିମାଳା
ଗଜା ବଉଦର ଭ୍ରମ ଚିତ୍ତେ ଉପୁଜାଇ।'

ସେହିପରି କବିଙ୍କ 'ଉଷା' କାବ୍ୟର ବନ ବର୍ଣ୍ଣନାର ଏକ ଅଂଶ ମଧ୍ଯ ଏଠାରେ ଉଲ୍ଲେଖ କରାଯାଇପାରେ—

''ଝିଲ୍ଲିଝଙ୍କାରିତ ମହାରଣ୍ୟ ତହିଁ ଥିଲା ସେକାଳେ
ସଦା ସୁଶୀତଳ ନାନା ବନସ୍ପତି ବ୍ରତତୀମାଳେ।
ମହା ଘୋରବନ ପଶିବାକୁ ଯହିଁ ଡରନ୍ତି କାକ
ପୁଞ୍ଜିତ ହୋଇଛି ଯେହ୍ନେ କୃଷ୍ଣପକ୍ଷ ଅନ୍ଧାରଯାକ।
ଅଶନ ଶିଂଶପା କକୁଭ ତିଲୁକା କୂଟଜ ଶାଳ
ହରିତକି ନୀପ ଧାତ୍ରୀ ବିଭିତକୀ ଧବ ପିଆଳ
ଏ ଆଦି ଗହନ ପାଦପେ ଗହଳ ଥିଲା ସେ ସ୍ଥଳୀ।''

## ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ନୈଷଧୀୟ ପ୍ରଭାବ

ସଂସ୍କୃତ ସାହିତ୍ୟର 'ଷଟ୍‌କାବ୍ୟ' ମଧ୍ୟରେ ମହାକବି ଶ୍ରୀହର୍ଷଙ୍କ 'ନୈଷଧ' କାବ୍ୟ ଅତ୍ୟନ୍ତ ପାଣ୍ଡିତ୍ୟ-ପୂର୍ଣ୍ଣ ରୂପେ ବିବେଚିତ ହୋଇଛି। ସୌନ୍ଦର୍ଯ୍ୟ ବର୍ଣ୍ଣନା କ୍ଷେତ୍ରରେ ଚମତ୍କାର କଳ୍ପନା ଚାତୁରୀର ପରିପ୍ରକାଶ ହେତୁ ଏହି କାବ୍ୟଟି ଭାରତୀୟ ବିଦ୍ୱାନ୍ ପଣ୍ଡିତମଣ୍ଡଳୀରେ ବିଶେଷ ଆଦର ଲାଭ କରିଆସିଛି। ରାଧାନାଥ-ପୂର୍ବବର୍ତ୍ତୀ ଭଞ୍ଜଯୁଗୀୟ କାବ୍ୟରାଜି ଉପରେ ଏହି କାବ୍ୟଟିର ସର୍ବାଧିକ ପ୍ରଭାବ ଲକ୍ଷ୍ୟ କରିବା କଥା। ଆଧୁନିକ ଯୁଗସ୍ରଷ୍ଟା କବି ରାଧାନାଥ ପାଶ୍ଚାତ୍ୟ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ତାହାଙ୍କ ରଚନାବଳୀରେ କେତେକ ସ୍ଥାନରେ ନୈଷଧୀୟ ଛଟାର ମୁଦ୍ରାଙ୍କନ ଦେଖିବାକୁ ମିଳେ।

ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ, ନୈଷଧକାର ଶ୍ରୀହର୍ଷ ଥିଲେ ଏକାଧାରରେ କବି, ବହୁଶାସ୍ତ୍ରଦର୍ଶୀ ପଣ୍ଡିତ, ତାର୍କିକ, ବୈୟାକରଣ ଓ ଦାର୍ଶନିକ। ସୁତରାଂ ସେ ନୈଷଧ କାବ୍ୟରେ ଅତି ବିଲକ୍ଷଣ ରୀତିରେ ବିଷୟ ବିନ୍ୟାସ କରିଥିବା ଦେଖାଯାଏ। ଅଧିକାଂଶ କ୍ଷେତ୍ରରେ ସେ ସାଧାରଣ କବିଙ୍କ ପରି ସରଳ ଭାବରେ ବିଷୟ ବିନ୍ୟାସ ନ କରି ବକ୍ରରୀତିରେ ଅତି ଚମତ୍କାର ଭାବରେ ତାହା ପ୍ରକାଶ କରିଛନ୍ତି। ତାହାଙ୍କର ନୈଷଧ କାବ୍ୟରେ ଏହିପରି ବିଲକ୍ଷଣ ଚାତୁର୍ଯ୍ୟମଣ୍ଡିତ ବହୁ ଶ୍ଳୋକ ରହିଛି। କବିବର ରାଧାନାଥ ଇଂରାଜୀ, ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ପ୍ରଭୃତି ଭାଷାର ସାହିତ୍ୟ ସହିତ ସଂସ୍କୃତ ସାହିତ୍ୟରେ ମଧ୍ୟ ଗଭୀର ଅବଗାହୀ ଥିଲେ। ସଂସ୍କୃତ 'ଷଟ୍‌କାବ୍ୟ'ର ଅନ୍ତର୍ଭୁକ୍ତ 'ନୈଷଧ' କାବ୍ୟ ତାହାଙ୍କ ଅଧ୍ୟୟନର ପରିସର ମଧ୍ୟରୁ ଦୂରେଇ ଯାଇ ନ ଥିଲା। ଅତଏବ ତାହାଙ୍କ ରଚନାରେ ମଧ୍ୟ ସ୍ଥାନେ **ସ୍ଥାନେ ନୈଷଧୀୟ ଛଟାର** ଅପୂର୍ବ ପରିପ୍ରକାଶ **ଘଟିଛି**। ନିମ୍ନରେ ତାହାର ଗୋଟିଏ **ଦୃଷ୍ଟାନ୍ତ** ପ୍ରଦାନ କରାଗଲା।

ବଳାଙ୍ଗୀ ନଦୀରେ ରାଜନନ୍ଦନା ଉଷାର ନୌଚାଳନା ସଂପର୍କରେ କବି ଲେଖିଛନ୍ତି -

"କୁସୁମିତ ସ୍ୱର୍ଣ୍ଣକାନ୍ତି ଷଣକ୍ଷେତ୍ର ପଳାନ୍ତି ଖରେ
ବାମା ବର୍ଣ୍ଣବିଭା ଚୋରି କରି ଅବା ପଳାନ୍ତି ଦୂରେ ।"

ଅର୍ଥାତ୍, ରାଜନନ୍ଦନା ଉଷା ଯେତେବେଳେ ବଳାଙ୍ଗୀ ନଦୀରେ ନୌକା ଚଳାଇ ତୀବ୍ର ଗତିରେ ଯାଉଥିଲା, ସେତେବେଳେ ମନେ ହେଉଥିଲା ଯେ, ସ୍ୱର୍ଣ୍ଣକାନ୍ତି ଯୁକ୍ତ ଷଣକ୍ଷେତ୍ରଗୁଡ଼ିକ ସତେ ଯେପରି ତାହାର ଶରୀରର ବର୍ଣ୍ଣବିଭାକୁ ଚୋରି କରି ଅତି ଶୀଘ୍ର ଶୀଘ୍ର ଦୂରକୁ ପଳାୟନ କରୁଛନ୍ତି । ମାତ୍ର ଗଭୀର ଅନୁଧ୍ୟାନ କଲେ, ଏଠାରେ କବି ନୈଷଧୀୟ ଭଙ୍ଗୀରେ ଉଷାର ବାହ୍ୟ ସୌନ୍ଦର୍ଯ୍ୟ ଓ ଅନ୍ତଃ ସୌନ୍ଦର୍ଯ୍ୟ ବା ଗୁଣ ବର୍ଣ୍ଣନା କରିଥିବା ଜଣାଯାଏ । ବାହ୍ୟ ସୌନ୍ଦର୍ଯ୍ୟ ହେଉଛି, ତାହାର ଅଙ୍ଗକାନ୍ତି ଏବଂ ଅନ୍ତଃ ସୌନ୍ଦର୍ଯ୍ୟ ହେଉଛି ନୌଚାଳନା କରିବାରେ ତାହାର ଅପୂର୍ବ ଦକ୍ଷତା । ଅର୍ଥାତ୍ ଏଥିରେ କବି ବ୍ୟଞ୍ଜନା ମାଧ୍ୟମରେ ଉଷାର ବାହ୍ୟ ଓ ଅନ୍ତଃ ସୌନ୍ଦର୍ଯ୍ୟ ବିଷୟକ ମୁଖ୍ୟତଃ ପାଞ୍ଚଗୋଟି କଥା କହିଛନ୍ତି । ତାହା ହେଉଛି –

(କ) ବଳାଙ୍ଗୀ ନଦୀର ଉଭୟପାର୍ଶ୍ୱରେ ବହୁଦୂରବ୍ୟାପୀ ଅନେକ ଷଣକ୍ଷେତ୍ର ରହିଥିଲା ।

(ଖ) ଉକ୍ତ ଷଣଗଛରେ ପ୍ରଚୁର ପରିମାଣରେ ହଳଦିଆ ରଙ୍ଗର ଫୁଲ ଫୁଟିଥିବାରୁ କ୍ଷେତଗୁଡ଼ିକରେ ସୁନା ବିଛେଇ ହେଲା ପରି ଦେଖାଯାଉଥିଲା ।

(ଗ) ରାଜନନ୍ଦନା ଉଷାର ଅଙ୍ଗକାନ୍ତି ମଧ୍ୟ ସ୍ୱର୍ଣ୍ଣମୟ ଥିଲା ।

(ଘ) ଯେତେବେଳେ ଉଷା ବଳାଙ୍ଗୀ ନଦୀରେ ନୌକା ଚଳାଇ ଯାଉଥିଲା, ସେତେବେଳେ ଉଭୟ ପାର୍ଶ୍ୱର କୁସୁମିତ ଷଣକ୍ଷେତ୍ରଗୁଡ଼ିକ ତାହାର ବର୍ଣ୍ଣବିଭାକୁ ଚୋରି କରି ବିପରୀତ ଦିଗକୁ ଦୌଡ଼ି ଗଲାପରି ଦେଖାଯାଉଥିଲା । ଏଠାରେ ସ୍ମରଣୀୟ ଯେ, ବସ୍ ବା ରେଳରେ ବସି ଯାତ୍ରା କଲାବେଳେ ସଡ଼କ ପାର୍ଶ୍ୱସ୍ଥ ବୃକ୍ଷ, ଗୃହ ଓ ମାଇଲ୍ ଖୁଣ୍ଟ ଇତ୍ୟାଦି ବିପରୀତ ଦିଗକୁ ଗତିକଲା ପରି ପ୍ରତୀତ ହେଉଥାଏ । ଯାନଟି ଯେତେ ପ୍ରଖର ଗତିରେ ଯାଉଥାଏ, ମାର୍ଗ ପାର୍ଶ୍ୱସ୍ଥ ଏହି ବସ୍ତୁଗୁଡ଼ିକ ସେତେ ପ୍ରଖର ଗତିରେ ବିପରୀତ ଦିଗକୁ ଗଲାପରି ଜଣାଯାଉଥାଏ । ସେହିପରି ଉଷା ବଳାଙ୍ଗୀ ନଦୀରେ ଏତେ ପ୍ରଖର ଗତିରେ ନୌକା ଚଳାଉଥିଲା ଯେ, ନଦୀର ଉଭୟ ପାର୍ଶ୍ୱରେ ଥିବା ଷଣକ୍ଷେତ୍ରଗୁଡ଼ିକ ବିପରୀତ ଦିଗକୁ ପ୍ରଖର ଗତିରେ ଶୀଘ୍ର ଶୀଘ୍ର ଦୌଡ଼ିଗଲା ପରି ଜଣାଯାଉଥିଲା । ଅର୍ଥାତ୍ ନୌଚାଳନାରେ ଉଷାର ଅପୂର୍ବ ଦକ୍ଷତା ବିଷୟ କବି ଏଠାରେ ଅତି ଚମତ୍କାର ଭାବରେ ଉଲ୍ଲେଖ କରିଛନ୍ତି ।

(ଙ) ଉଷାର ଶରୀର ଥିଲା ସ୍ୱର୍ଣ୍ଣକାନ୍ତିମୟ ଏବଂ ଷଣଫୁଲର ବର୍ଣ୍ଣ ମଧ୍ୟ ସ୍ୱର୍ଣ୍ଣମୟ । ଜଣେ ବ୍ୟକ୍ତି କୌଣସି ଦ୍ରବ୍ୟ ଚୋରି କଲେ ଭୟରେ ଖୁବ୍ ଶୀଘ୍ର ଦୌଡ଼ି ଚାଲିଯାଏ । ସେହିପରି ଉକ୍ତ ଷଣକ୍ଷେତ୍ରଗୁଡ଼ିକ ଉଷାର ଶରୀର ସ୍ୱର୍ଣ୍ଣକାନ୍ତିକୁ ଚୋରିକରି ଦୌଡ଼ି ଚାଲିଯାଉଥିଲା ପରି ବୋଧ ହେଉଥିଲା । ଅର୍ଥାତ୍ ଉଷାର ଅଙ୍ଗକାନ୍ତି ଅପେକ୍ଷା ଷଣଫୁଲର ସ୍ୱର୍ଣ୍ଣକାନ୍ତି କିପରି ନିକୃଷ୍ଟ ଥିଲା, ତାହା କବି ଏଥିରେ ସୂଚାଇଛନ୍ତି ।

କବିବର ରାଧାନାଥ ନୈଷଧୀୟ ଭଙ୍ଗୀରେ ଏହି ପାଞ୍ଚଗୋଟି ବିଷୟ ଉକ୍ତ ଉଦ୍ଧୃତିରେ ପ୍ରକାଶ କରିଛନ୍ତି। ତାହାଙ୍କର ବିଭିନ୍ନ କାବ୍ୟରେ ଏହି ବିଲକ୍ଷଣ ପ୍ରକାଶଭଙ୍ଗୀର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ।

**ଅଳଙ୍କାର ପ୍ରୟୋଗ –**

କାବ୍ୟ ମଧ୍ୟରେ ବିଭିନ୍ନ ଅଳଙ୍କାରର ସମାବେଶ ହେଉଛି ପ୍ରାଚ୍ୟ ସାହିତ୍ୟର ଅନ୍ୟତମ ପ୍ରଧାନ ବୈଶିଷ୍ଟ୍ୟ। ସଂସ୍କୃତ ସାହିତ୍ୟର ମହାକବିମାନଙ୍କ ତୁଲ୍ୟ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ସମସ୍ତ ବିଶିଷ୍ଟ କବି କାବ୍ୟସୁନ୍ଦରୀଙ୍କୁ ଅଳଙ୍କାରର ବିବିଧ ସମ୍ଭାରରେ ମଣ୍ଡନ କରିଯାଇଛନ୍ତି। କବିବର ରାଧାନାଥଙ୍କ କାବ୍ୟ ସାଧନାବେଳକୁ ଓଡ଼ିଆ ସାହିତ୍ୟରେ ଅଳଙ୍କାରଯୁଗର ଅବସାନ ଘଟିଥିଲେ ମଧ୍ୟ ରାଧାନାଥ ସାହିତ୍ୟ ସଂପୂର୍ଣ୍ଣ ଭାବରେ ଅଳଙ୍କାର ପ୍ରଭାବରୁ ମୁକ୍ତ ହୋଇ ନଥିଲା। କବିବର ରାଧାନାଥ ତାହାଙ୍କ ରଚନାବଳୀରେ ବିଭିନ୍ନ ସ୍ଥାନରେ ପ୍ରକାଶ ଭଙ୍ଗୀର ଚମତ୍କାରିତା ଫୁଟାଇବାକୁ ଯାଇ ବହୁ ଅଳଙ୍କାର ସମାବେଶ ଘଟାଇଛନ୍ତି। ନିମ୍ନରେ ଏହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା –

**(କ) ଅନୁପ୍ରାସ –**

(୧) ଉତ୍କଳ କମଳା-ବିଳାସ-ଦୀର୍ଘିକା
ମରାଳ-ମାଳିନୀ ନୀଳାମ୍ବୁ ଚିଲିକା (ଚିଲିକା)

(୨) ତରଳ-ତାରକା-ହାରମୟୀ ନାକ-ନାଗରୀ ଟୀକା
ସମକକ୍ଷ ତାର ହେଲେ ହେବେ ଶଚୀ ସ୍ୱର୍ଗ ଚନ୍ଦ୍ରିକା (ଉଷା)

(୩) ବିରାଜଇ ଚାରୁ ଚନ୍ଦ୍ରାତପ ପ୍ରାୟେ
ଉର୍ଦ୍ଧ୍ୱେ ହୋଇ ଲମ୍ବମାନ
ବିରଳ-ତରଳ-ତାରକା-ଗୁମ୍ଫିତ
ସୁନୀଳ ନଭ-ଖିଲାନ (ପାର୍ବତୀ)

**(ଖ) ଯମକ ଅଳଙ୍କାର –**

(୧) ସଦାଶିବ-ପ୍ରିୟ ପବିତ୍ର ଶ୍ରୀଫଳ
ସଦା ଚଳଦଳ ପବିତ୍ର ପିପ୍ପଳ (ଚିଲିକା)

(୨) କ୍ଷେପଣୀ କ୍ଷେପଣେ ତୋହର ସଲିଳେ
ହୀରକର ଉତ୍ସ ଉଠିଲା ସଲୀଳେ (ଚିଲିକା)

**(ଗ) ଶ୍ଳେଷ ଅଳଙ୍କର -**

ଜୟ ଅରିନ୍ଦମ ଶ୍ରୀ ପୁରୁଷୋତ୍ତମ
ବିଶ୍ୱେ ତୁମ୍ଭେ ବିଶ୍ୱରକ୍ଷା ବ୍ରତ କ୍ଷମ

ଲଭିଲ ଦେଖାଇ ଜଗତେ ଯୋଗ୍ୟତା
ସତ୍କ୍ରିୟା ରୂପେ ଏ ରୂପକଳ୍ପଲତା (ଚିଲିକା)

(ଘ) ଉପମା –

(୧) ସ୍ଥାନେସ୍ଥାନେ ନୀର ଭେଦିଛି ସୈକତ
ଶାରଦ ଆକାଶେ ଯେହ୍ନେ ଛାୟାପଥ (ଚିଲିକା)

(୨) ମିଶିଯାଏ ଯଥା ପ୍ରଭାତୀ ତାରା ରବି କିରଣେ
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱଆତ୍ମା ଚରଣେ
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ
ମିଶିଗଲା ତଥା ଅବଳା ସେହି ଜଳତରଙ୍ଗେ। (ଚନ୍ଦ୍ରଭାଗା)

(ଙ) ବ୍ୟତିରେକ –

ନୀଳିମାରେ ବାମା ଚାରୁ କେଶ ପାଶ
ତୋ ନୀଳ ବୀଚିକି କଲା ଉପହାସ
ତେଣୁ କି ତରଙ୍ଗ ଅପମାନ ଭରେ
ଶିର ପିଟୁଥିଲେ ତରଣୀ ପଞ୍ଜରେ (ଚିଲିକା)

(ଚ) ଅନନ୍ୱୟ –

ତହିଁ ସିଂହାସନେ ସୁନ୍ଦରୀ ଆସୀନା
ଜଗତେ ତୁଳନା ସେହି ତାର ସିନା (ଚିଲିକା)

(ଛ) ଉତ୍ପ୍ରେକ୍ଷା –

(୧) ଶ୍ୱେତାଙ୍ଗ ଚଢ଼ାଇଗୁହା ସମୁଦ୍‌ଗତ
ନୀର ଭେଦି କିବା ଉଠେ ଐରାବତ (ଚିଲିକା)

(୨) ଠାବେଠାବେ ଶଇଳ ନୀଳବିଗ୍ରହେ
ଧବଳ ଅଭ୍ରଖଣ୍ଡ କି ଶୋଭା ବହେ
ଚିତ୍ତେ ହୁଅଇ ପ୍ରତେ ପଡ଼ିଛି ଟିକି
କ୍ଷୀରୋଦ ଫେଣ ବିଷ୍ଣୁ ଅଙ୍ଗେ ଛିଟିକି (ତୁଳସୀ ସ୍ତବକ)

(୩) କନକବଲ୍ଲରୀ ମଧ୍ୟେ କି ବିହରେ ହିରହ୍ଲାଦିନୀ
ତାରା ହଲ୍ଲୀସକେ କି ଅବା ରୋହିଣୀ ଇନ୍ଦୁମୋହିନୀ (ଉଷା)

**(ଜ)ଅତିଶୟୋକ୍ତି -**

ବୃଥା ହାଣୁଥିଲା ମୃଗୀ ଅଙ୍ଗେ ବାଣ ସିନା ସୁନ୍ଦରୀ
ଚାହାଣି ଭଙ୍ଗୀରୁ ଥିଲେ ସେହି ଯେଣୁ ଆଗହୁଁ ମରି। (ଉଷା)

(ଝ) ସ୍ୱଭାବୋକ୍ତି –

ଅଦୂରେ ତାହାର ନଳବନାକୀର୍ଣ୍ଣ ବିସ୍ତୀର୍ଣ୍ଣ ସର
ନୀର ଆସ୍ତରଣ ନୀଳିମାରେ ଜିଣେ କଳାଭ୍ରମର
କାହିଁ ନୀର ପାଣ୍ଡୁବର୍ଣ୍ଣ ପଡ଼ି ପଦ୍ମ କେଶର ଧୂଳି
ତାରକିତ କାହିଁ କରିଛି ପ୍ରସୂନେ ପାଣିଶିଉଳୀ (ଉଷା)

(ଞ) ବିଭାବନା –

ସୁଖେ ପଡ଼େ ପୁଣି ଏଭଳି ବିପାକ ଏଡ଼େ ବେଗରେ
କେ କହିବ କାହିଁ ଏ ବଜ୍ର ପଡ଼ିଲା ବିନା ମେଘରେ (ଉଷା)

(ଟ) ନିଦର୍ଶନା –

ସ୍ୱୟମ୍ବରେ ଯିବା ପାଇଁ ନିଷେଧିଲେ ବାହନପତି
ଶୈଳରୁଦ୍ଧ ସ୍ରୋତଦଶାକୁ ଭଜିଲା ଜୟନ୍ତ ମତି (ଉଷା)

(ଠ) ପର୍ଯ୍ୟାୟୋକ୍ତି –

କରନ୍ତି ଯୁବକ ପରିପକ୍ୱ ଯହିଁ ଆୟୁଧ ଶିକ୍ଷା
ରୁକ୍ଷ ଯୁବତୀକି ପାରିଧିରେ ଦେଇ ବୈଧବ୍ୟ ଦୀକ୍ଷା । (ଉଷା)

କବିଙ୍କର ବିଭିନ୍ନ କାବ୍ୟରେ ଏହିପରି ବହୁ ସଂଖ୍ୟକ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ସମାବେଶ ଦେଖିବାକୁ ମିଳେ। ଏହା ହେଉଛି କବିଙ୍କ ଉପରେ ପ୍ରାଚ୍ୟ ଅଳଙ୍କାର ଶାସ୍ତ୍ର-ପ୍ରଭାବର ଅନ୍ୟତମ ଦୃଷ୍ଟାନ୍ତ।

**ଭାଷା ପ୍ରୟୋଗ କ୍ଷେତ୍ରରେ ପ୍ରାଚ୍ୟ ପ୍ରଭାବ –**

ଭାଷା ପ୍ରୟୋଗ କ୍ଷେତ୍ରରେ ମଧ୍ୟ ରାଧାନାଥ ସାହିତ୍ୟ ଉପରେ ପ୍ରାଚ୍ୟ ସାହିତ୍ୟର ପ୍ରଭାବ ଦେଖିବାକୁ ମିଳିଥାଏ। କବି ତାହାଙ୍କ ରଚନାବଳୀରେ ସର୍ବାଧିକ ସଂଖ୍ୟକ ତତ୍ସମ ଓ ତଦ୍‌ଭବ ଶବ୍ଦ ବ୍ୟବହାର କରିଛନ୍ତି। କେତେକ ସ୍ଥଳରେ ସଂସ୍କୃତ କାବ୍ୟର ଭାଷା ପ୍ରୟୋଗ ଶୈଳୀ ପ୍ରତି ଦୃଷ୍ଟିଦେଇ ସେ ସାର୍ଥକ ଶବ୍ଦମାନ ବ୍ୟବହାର କରିଥିବା ମଧ୍ୟ ଦେଖାଯାଏ। ନିମ୍ନରେ ଏହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା।

(କ) 'ଚିଲିକା' କାବ୍ୟର ଆରମ୍ଭରେ କବି ଲେଖିଛନ୍ତି - "ଉତ୍କଳ-କମଳା-ବିଳାସ ଦୀର୍ଘିକା।"

ଏଠାରେ ଚିଲିକା ହ୍ରଦକୁ କବି ଏକ 'ଦୀର୍ଘିକା' ବୋଲି ଉଲ୍ଲେଖ କରିଛନ୍ତି। ମାତ୍ର ଆମେ ଏହାକୁ ଏକ 'ହ୍ରଦ' ବୋଲି କହିଥାଉ। ରାଧାନାଥ 'ହ୍ରଦ' ପରିବର୍ତ୍ତେ

ଯେଉଁ 'ଦୀର୍ଘିକା' ଶବ୍ଦ ବ୍ୟବହାର କରିଛନ୍ତି, ତାହା ସଂସ୍କୃତ ବ୍ୟାକରଣ ଓ କୋଷଗ୍ରନ୍ଥ ଅନୁଯାୟୀ ସଂପୂର୍ଣ୍ଣ ଯୁକ୍ତିଯୁକ୍ତ। କାରଣ ସଂସ୍କୃତ ବ୍ୟାକରଣ ଅନୁଯାୟୀ 'ହ୍ରଦ' ଶବ୍ଦ ହେଉଛି ପୁଂଲିଙ୍ଗ ବାଚକ। କବି ଯେହେତୁ ଚିଲିକାକୁ ଏକ ନାୟିକା ରୂପେ ବର୍ଣ୍ଣନା କରିଛନ୍ତି, ସେହି ଦୃଷ୍ଟିରୁ ଏହାକୁ 'ହ୍ରଦ' ବୋଲି ଉଲ୍ଲେଖ କରିଥିଲେ ଯଥାର୍ଥ ହୋଇ ନଥାନ୍ତା। ପୁନଶ୍ଚ ସଂସ୍କୃତ କୋଷଗ୍ରନ୍ଥରେ 'ଦୀର୍ଘିକା' ଶବ୍ଦର ଆଉ ଦୁଇଗୋଟି ବୈଶିଷ୍ଟ୍ୟ ରହିଛି। ପ୍ରଥମତଃ 'ଦୀର୍ଘିକା'ର ଜଳ ଲବଣାକ୍ତ ହୋଇଥାଏ। ଏହି ଦୃଷ୍ଟିରୁ ଚିଲିକା ହ୍ରଦ ନ ହୋଇ ଦୀର୍ଘିକା ହେବା ଯୁକ୍ତିଯୁକ୍ତ। ଦ୍ୱିତୀୟତଃ ସଂସ୍କୃତ କୋଷଗ୍ରନ୍ଥ ଅନୁଯାୟୀ "ତିନିଶହ ଧନୁ ପରିମିତ" ଜଳାଶୟର ନାମ ହେଉଛି 'ଦୀର୍ଘିକା'। ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ, ସଂସ୍କୃତ ଭାଷାର ବିଖ୍ୟାତ କୋଷଗ୍ରନ୍ଥ 'ଶବ୍ଦକଳ୍ପଦ୍ରୁମ'ରେ 'ଦୀର୍ଘିକା' ଶବ୍ଦର ଏହି ଅର୍ଥଗତ ବୈଶିଷ୍ଟ୍ୟ ପ୍ରଦାନ କରାଯାଇଛି। ଅତଏବ ପ୍ରାଚ୍ୟ ବ୍ୟାକରଣ ଓ କୋଷଗ୍ରନ୍ଥକୁ ଆଖି ଆଗରେ ରଖି କବିବର ରାଧାନାଥ ଚିଲିକାକୁ ଏକ 'ଦୀର୍ଘିକା' ବୋଲି ଉଲ୍ଲେଖ କରିଛନ୍ତି।

(ଖ) 'ଚିଲିକା' କାବ୍ୟରେ ସୂର୍ଯ୍ୟାସ୍ତ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି -

"ପାରିଲେଣି ଏବେ ଦେବ ବିକର୍ତ୍ତନ
ଭାଳେରି ଶିଖରେ ସ୍ୱର୍ଣ୍ଣ ସିଂହାସନ"

ଏଠାରେ 'ବିକର୍ତ୍ତନ' ଶବ୍ଦଟିର ପ୍ରୟୋଗ ନିମିତ୍ତ କବି ପ୍ରାଚ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ। ସଂସ୍କୃତ କୋଷଗ୍ରନ୍ଥରେ ପ୍ରଦତ୍ତ ସୂର୍ଯ୍ୟଙ୍କର ବିଭିନ୍ନ ନାମ ମଧ୍ୟରୁ 'ବିକର୍ତ୍ତନ' ଅନ୍ୟତମ। ସୂର୍ଯ୍ୟଙ୍କର ନାମ କାହିଁକି 'ବିକର୍ତ୍ତନ' ହେଲା, ସେ ସଂପର୍କରେ ପୁରାଣରେ ଏକ କିମ୍ବଦନ୍ତୀ ରହିଛି। ତାହା ହେଉଛି -

ସୂର୍ଯ୍ୟ ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞା ବା ଛାୟାଙ୍କୁ ବିବାହ କରିଥିଲେ। ବିବାହ ପରେ ତାହାଙ୍କର ପ୍ରଖର କିରଣ ଛାୟାଙ୍କ ପାଇଁ ଅସହ୍ୟ ହେଲା। ଏହି ବିଷୟ ବିଶ୍ୱକର୍ମା ଜାଣିବାରୁ ସୂର୍ଯ୍ୟଙ୍କର କିରଣକୁ କର୍ତ୍ତନ କରିଦେଲେ। ଫଳରେ ସୂର୍ଯ୍ୟଙ୍କର ତେଜ କିଛି ପରିମାଣରେ ହ୍ରାସ ପାଇଲା ଏବଂ ସେ ସେହି ଦିନଠାରୁ 'ବିକର୍ତ୍ତନ' ନାମରେ ପରିଚିତ ହେଲେ।

'ଚିଲିକା' କାବ୍ୟରେ ମଧ କବି ଅସ୍ତଗାମୀ ସୂର୍ଯ୍ୟଙ୍କ ବର୍ଣ୍ଣନା ପ୍ରସଙ୍ଗରେ 'ବିକର୍ତ୍ତନ' ଶବ୍ଦ ପ୍ରୟୋଗ କରିଛନ୍ତି। ମଧ୍ୟାହ୍ନ ପରେ ଅସ୍ତଗାମୀ ସୂର୍ଯ୍ୟଙ୍କର କିରଣ କ୍ରମଶଃ ହ୍ରାସ ପାଉଥାଏ। ଅତଏବ କିରଣ ହ୍ରାସ ପାଉଥିବା ଅସ୍ତଗାମୀ ସୂର୍ଯ୍ୟଙ୍କୁ କବି 'ବିକର୍ତ୍ତନ' ରୂପେ ଉଲ୍ଲେଖ ପୂର୍ବକ ପ୍ରାଚ୍ୟ ସାହିତ୍ୟର କବିମାନଙ୍କ ତୁଲ୍ୟ ଭାଷା ପ୍ରୟୋଗ କ୍ଷେତ୍ରରେ ସାର୍ଥକତା ସଂପାଦନ କରିଛନ୍ତି।

ଏହାକୁ ସଂସ୍କୃତ ସାହିତ୍ୟର ଶ୍ରୀହର୍ଷ, ମାଘ, ଭାରବି ପ୍ରମୁଖ କବିମାନଙ୍କ ଭାଷା ବା ଶବ୍ଦ ପ୍ରୟୋଗ ଚାତୁରୀର ଅନୁରୂପ ପ୍ରୟୋଗ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ। କବିଙ୍କର ଚିଲିକା, ମହାଯାତ୍ରା, ଦରବାର, ଉଷା ଓ ଚନ୍ଦ୍ରଭାଗା ପ୍ରଭୃତି ବିଭିନ୍ନ

କାବ୍ୟରେ ଭାଷା ପ୍ରୟୋଗ ବା ଶବ୍ଦ ପ୍ରୟୋଗ କ୍ଷେତ୍ରରେ ପ୍ରାଚ୍ୟ ବ୍ୟାକରଣ ଶାସ୍ତ୍ର, କୋଷଗ୍ରନ୍ଥ, ଅଳଙ୍କାର ଶାସ୍ତ୍ର ତଥା କାବ୍ୟଗ୍ରନ୍ଥର ଏତାଦୃଶ ପ୍ରଭାବ ଦେଖିବାକୁ ମିଳେ।

## ସଂସ୍କୃତ ଭାଷାର ରଚନା ଓ ଅନୁବାଦ-

କବିବର ରାଧାନାଥ ସଂସ୍କୃତ ଭାଷାରେ ମଧ୍ୟ କେତେକ ରଚନା ସୃଷ୍ଟି କରିଛନ୍ତି ଏବଂ କେତେଗୋଟି ସଂସ୍କୃତ ରଚନାକୁ ମଧ୍ୟ ଅତି ଚମତ୍କାର ଭାବରେ କାବ୍ୟିକ ରୀତିରେ ଅନୁବାଦ କରିଛନ୍ତି। ତାହାଙ୍କ ଦ୍ୱାରା ରଚିତ ପାଞ୍ଚଗୋଟି ସଂସ୍କୃତ ଗୀତିକା ପ୍ରକାଶିତ ହୋଇଛି। ସେଗୁଡ଼ିକ ହେଉଛି-(କ) ଭାରତଗୀତିକା, (ଖ) ଧବଳେଶ୍ୱର ସ୍ତୋତ୍ରମ୍, (ଗ) କାଳିକାସ୍ତୁତିଃ, (ଘ) ବନ୍ଦନା, (ଙ) ସତ୍ୟବାଦୀ। ଏହି ପାଞ୍ଚଗୋଟି ସଂସ୍କୃତ ଗୀତିକା ପାଠକଲେ ପ୍ରାଚ୍ୟଭାଷା ଓ ସାହିତ୍ୟରେ କବିଙ୍କର ଅସାଧାରଣ ପାଣ୍ଡିତ୍ୟ ବିଷୟ ସହଜରେ ଅନୁମିତ ହୋଇଥାଏ। ଏହି ପାଞ୍ଚଗୋଟି ଗୀତିକା ରଚନା କ୍ଷେତ୍ରରେ କବିଙ୍କର ଛାନ୍ଦପ୍ରୟୋଗ ଚାତୁରୀ ତାଙ୍କର ପ୍ରାଚ୍ୟ ଛନ୍ଦଶାସ୍ତ୍ର ଜ୍ଞାନର ପରିଚୟ ମଧ୍ୟ ଦେଇଥାଏ।

ଏହା ସଙ୍ଗେ ସଙ୍ଗେ କବି ସଂସ୍କୃତ ଭାଷାର ବିଖ୍ୟାତ 'ମେଘଦୂତ' କାବ୍ୟର ପୂର୍ଣ୍ଣାଙ୍ଗ ଅନୁବାଦ ସହିତ 'ହଂସଦୂତ' କାବ୍ୟର କେତେକ ଅଂଶର ଅନୁବାଦ କରିଛନ୍ତି। ଏହି ଉଭୟ ରଚନାର ଅନୁବାଦ କ୍ଷେତ୍ରରେ କବିଙ୍କ ସଂସ୍କୃତ ଭାଷାଜ୍ଞାନ, ପ୍ରାଚ୍ୟ ରଚନାର ଅନୁବାଦ କୌଶଳ ତଥା ଭାଷା ପ୍ରୟୋଗ ଚାତୁରୀ ଓ ମୌଳିକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି। ଉଦାହରଣ ସ୍ୱରୂପ 'ମେଘଦୂତ'ର ଉତ୍ତର ମେଘର ପ୍ରଥମ ଶ୍ଳୋକ ହେଉଛି –

''ହସ୍ତେ ଲୀଳାକମଳମଳକେ ବାଳକୁନ୍ଦାନୁବିଦ୍ଧଂ
ନୀତା ଲୋଧ୍ର ପ୍ରସବ ରଜସା ପାଣ୍ଡୁତାମାନନେଶ୍ରୀ
ଚୂଡ଼ାପାଶେ ନବ କୁରୁବକଂ ଚାରୁକର୍ଣ୍ଣେ ଶିରୀଷଂ
ସୀମନ୍ତେ ଚତ୍ୱଦୁପଗମଜଂ ଯତ୍ରନୀପଂ ବଧୂନାମ୍''

ରାଧାନାଥ ଏହି ଶ୍ଳୋକଟିର ଅନୁବାଦରେ ଲେଖିଛନ୍ତି –

''ପୁଷ୍ପ ଭୂଷଣପ୍ରିୟ ନାଗରୀଦଳ
କରେ ଶୋଭଇ ଯହିଁ ଲୀଳାକମଳ।
ଅଳକେ କୁନ୍ଦକଳି ରାଜେ ମୋହନ
ଲୋଧ୍ର ପରାଗେ ପାଣ୍ଡୁ ଚାରୁ ଆନନ।
ରମ୍ୟ ଶିରୀଷ ଶୋହେ ଶ୍ରବଣମୂଳ
ସୀମନ୍ତେ ଶୋହେ ନବ କଦମ୍ବଫୁଲ
ବକୁଳମାଳ ଶୋଭୀ ଘନଜଘନ
ମନ୍ଦାରଶୋଭୀ କେଶ ଚୁମ୍ବେ ଚରଣ''

କାଳିଦାସଙ୍କ ରଚିତ ମୂଳଶ୍ଳୋକ ଏବଂ ରାଧାନାଥଙ୍କ ଅନୁବାଦ ଉଭୟକୁ ତୁଳନାତ୍ମକ ଭାବରେ ବିଚାର କଲେ ଦେଖାଯାଏ ଯେ, ରାଧାନାଥଙ୍କ ଅନୁବାଦର ଶେଷ ଦୁଇପାଦ ତାହାଙ୍କର ସଂପୂର୍ଣ୍ଣ ମୌଳିକ କଳ୍ପନା। ଏହି ଅଂଗଟିର ଭାବ କାଳିଦାସଙ୍କ ରଚନାରେ ନାହିଁ। ପୁନଶ୍ଚ କବିଙ୍କ ଅନୁବାଦର ସ୍ୱଳ୍ପ କେତୋଟି ମାତ୍ର ତଦ୍‌ଭବ ଶବ୍ଦକୁ ଛାଡ଼ିଦେଲେ ଅନ୍ୟ ସମସ୍ତ ଶବ୍ଦ ହେଉଛି ସରଳ ସଂସ୍କୃତ ଶବ୍ଦ।

ରାଧାନାଥଙ୍କ ମେଘଦୂତ-ଅନୁବାଦ ପାଠକଲେ ଜଣାଯାଏ ଯେ, ସେ ମହାକବି କାଳିଦାସଙ୍କର ଉକ୍ତ କାବ୍ୟଟିକୁ କେବଳ ପଢ଼ିନଥିଲେ, ତା ସହିତ ମେଘଦୂତର ବିଭିନ୍ନ ଟୀକାଗ୍ରନ୍ଥ ମଧ୍ୟ ଅଧ୍ୟୟନ କରିଥିଲେ। ଏହି ବିଷୟ ନିମ୍ନ ଦୃଷ୍ଟାନ୍ତରୁ ସହଜରେ ଜ୍ଞାତ ହୋଇଥାଏ। ପୂର୍ବମେଘର ଚତୁର୍ଦ୍ଦଶ ଶ୍ଳୋକରେ ଲିଖିତ ହୋଇଛି –

''ଦିଙ୍‌ନାଗାନାଂ ପଥିପରିହରନ୍ ସ୍ଥୂଳହସ୍ତାବଲେପାନ୍।''

ଏଥିରେ ଥିବା 'ଦିଙ୍‌ନାଗ' ଶବ୍ଦଟିକୁ ଭାରତ ବର୍ଷର ପଣ୍ଡିତମାନେ ଦୁଇପ୍ରକାର ଭିନ୍ନଭିନ୍ନ ଅର୍ଥ କରିଥାନ୍ତି। ତନ୍ମଧ୍ୟରୁ ଗୋଟିଏ ଅର୍ଥ ହେଉଛି – ଦିଗ୍‌ଦନ୍ତୀ ଏବଂ ଅନ୍ୟ ଅର୍ଥଟି ହେଉଛି ଦିଙ୍‌ନାଗ ନାମକ କାଳିଦାସଙ୍କ ସମୟର ଜଣେ ପଣ୍ଡିତ। ସେ କାଳିଦାସଙ୍କର ପ୍ରତିଦ୍ୱନ୍ଦୀ ଥିଲେ। ଏହା ମେଘଦୂତର ବିଭିନ୍ନ ଟୀକାଗ୍ରନ୍ଥରେ ଉଲ୍ଲେଖ କରାଯାଇଛି। କବିବର ରାଧାନାଥ ମେଘଦୂତର ବିଭିନ୍ନ ଟୀକା ଗ୍ରନ୍ଥ ଅଧ୍ୟୟନ ପୂର୍ବକ ଏହି ଶବ୍ଦଟିର ଦୁଇପ୍ରକାର ଅର୍ଥ ବିଷୟ ସ୍ପଷ୍ଟ ଜ୍ଞାତ ହୋଇଥିଲେ। ମାତ୍ର ନିଜେ ଶ୍ଳୋକଟିର ଅନୁବାଦ କଲାବେଳେ ପ୍ରାଚ୍ୟ ପଣ୍ଡିତମାନଙ୍କର ଏପରି ମତଭେଦଠାରୁ ନିଜକୁ ଦୂରେଇ ନେଇଛନ୍ତି। ଫଳରେ ସେ ଅନ୍ୟ ଏକ ତୃତୀୟ ପନ୍ଥା ଗ୍ରହଣପୂର୍ବକ ଏହି ଶ୍ଳୋକଟିର ଅନୁବାଦରେ ଲେଖିଛନ୍ତି –

''ଅନମ୍ବରେ ଅମ୍ବୁଦ ! ଦିଗବାରଣେ
ତ୍ୟଜିବେ କରଗର୍ବ ତୁମ୍ଭ ଦର୍ଶନେ।''

ଏହା ହେଉଛି କବିଙ୍କର ପ୍ରାଚ୍ୟସାହିତ୍ୟ ଅନୁବାଦର କେତେଗୋଟି ମୁଖ୍ୟ ବୈଶିଷ୍ୟ।

### ପ୍ରାଚ୍ୟଦର୍ଶନର ପ୍ରଭାବ –

କବିବର ରାଧାନାଥ ଆଧୁନିକ ଓଡ଼ିଆ ସାହିତ୍ୟରେ ଜଣେ ବିଷାଦବାଦୀ ଦାର୍ଶନିକ କବି ରୂପେ ବିବେଚିତ ହୋଇଥାନ୍ତି। ବିଷାଦବାଦୀ ହେବା ସଙ୍ଗେ ସଙ୍ଗେ ସେ କର୍ମବାଦ ଓ ଭାଗ୍ୟବାଦ ଉପରେ ବିଶେଷ ଆସ୍ଥା ସ୍ଥାପନ କରିଥିବା ଦେଖାଯାଏ। ଏ କ୍ଷେତ୍ରରେ ମନେ ରଖିବା କଥା ଯେ, କର୍ମବାଦ ଓ ଭାଗ୍ୟବାଦ ହେଉଛି ଭାରତୀୟ ଜୀବନ ଦର୍ଶନର ଅନ୍ୟ ଦୁଇଟି ମୁଖ୍ୟ ଅଙ୍ଗ। ଭାରତବର୍ଷର ଉପନିଷଦ, ଗୀତା ଏବଂ ବିଭିନ୍ନ ପୁରାଣ ଗ୍ରନ୍ଥରେ କର୍ମଫଳ ଓ ଭାଗ୍ୟଫଳ ସଂପର୍କୀୟ ଅନେକ ବିଷୟ ଉଲ୍ଲିଖିତ ହୋଇଥିବା ଦେଖାଯାଏ। ଉଦାହରଣ ସ୍ୱରୂପ, ରାମଚନ୍ଦ୍ର, ନଳ ଓ ଯୁଧିଷ୍ଠିରଙ୍କ ତୁଲ୍ୟ

ପ୍ରଥିତଯଶା ଓ ଧାର୍ମିକ ନୃପତିମାନଙ୍କୁ ମଧ୍ୟ ସେମାନଙ୍କର ଭାଗ୍ୟଫଳ ତଥା କର୍ମଫଳ ଭୋଗ କରିବାକୁ ପଡ଼ିଥିଲା । ଏ ସଂପର୍କରେ କୁହାଯାଇଛି –

"ଅବଶ୍ୟମ୍ଭାବି ଭାବାନାଂ ପ୍ରତିକାରେ ଭବେତ୍ ଯଦି
ତଦା ଦୁଃଖୈର୍ନିଲିପ୍ୟେରନ୍ ନଳ-ରାମ-ଯୁଧିଷ୍ଠିରଃ"

କବିବର ରାଧାନାଥ ସେହିପରି ଭାଗ୍ୟବାଦୀ ଓ କର୍ମବାଦୀ ଥିଲେ । ଜୀବନରେ ଭାଗ୍ୟଫଳ ଭୋଗ ଓ ଦୈବୀନିର୍ଦ୍ଦେଶ ଅଲଘଂନୀୟ ସେ ସ୍ୱଷ୍ଟ ଅନୁଭବ କରିଥିଲେ । ତାହାଙ୍କର ବିଭିନ୍ନ କାବ୍ୟରେ ଏହାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ତନ୍ମଧ୍ୟରୁ କେତେଗୋଟି ଉଦାହରଣ ନିମ୍ନରେ ପ୍ରଦାନ କରାଗଲା –

(କ) ଯାହାହେଉ ଭାଗ୍ୟେ କେବଳ ସାହସ ମୋର ସମ୍ବଳ (ଉଷା)
(ଖ) ବିହି ଅବା ସେହି ଦଶା ମୋର ଭାଗ୍ୟେ ଲିହିଛି ପୁଣି (ଉଷା)
(ଗ) ଭାଗ୍ୟେ ଥିଲେ ମୋର ପ୍ରାଣସଙ୍ଗୀ ହେବ ସେ ମଦାଳସା (ଉଷା)
(ଘ) ଭବିତବ୍ୟ ଯାହା ଅବଶ୍ୟ ଘଟିବ କେ ତାହା କରିବ ଆନ । କିଏ ସେ ବା ଏହି ଜ୍ୟୋତିଶ୍ଚକ୍ର ଗତି ରୋଧିବାକୁ ଭାଗ୍ୟବାନ (ପାର୍ବତୀ)
(ଙ) ଭାଗ୍ୟଫଳେ ତୁମ୍ଭେ ଆସି ମିଳିଲ ଏଠାରେ (ମହାଯାତ୍ରା)
(ଚ) ଭାଗ୍ୟବାନ ବେନି ବାଣୀଙ୍କ କୁମର । କବି ବଳଦେବ ଭଞ୍ଜବୀରବର (ଚିଲିକା)
(ଛ) ସପ୍ତ ବିତସ୍ତିର କୀଟହୋଇ ଭାଇ । ବୃଥା କର କିମ୍ପା ଭାଗ୍ୟର ବଡ଼ାଇ (ଦରବାର)

ପ୍ରାଚ୍ୟ ଦର୍ଶନର ଭାଗ୍ୟବାଦ, କର୍ମବାଦ ଓ ଐଶୀବାଦ ବିଷୟରେ କବିବର ରାଧାନାଥ ଯଥେଷ୍ଟ ଜ୍ଞାନ ଓ ଅନୁଭୂତି ଲାଭ କରିଥିଲେ । ଏହି କାରଣରୁ ତାହାଙ୍କର ବିଭିନ୍ନ କାବ୍ୟରେ ପ୍ରାଚ୍ୟଦର୍ଶନର ଏହି ବିଭାବରାଜି ପରିସ୍ଫୁଟିତ ହୋଇଛି । ଏହା ହେଉଛି ରାଧାନାଥଙ୍କ ଉପରେ ପ୍ରାଚ୍ୟ ପ୍ରଭାବର ଅନ୍ୟତମ ଦୃଷ୍ଟାନ୍ତ ।

## ରସ ଓ ରୀତିର ପ୍ରୟୋଗ –

ପ୍ରାଚ୍ୟସାହିତ୍ୟରେ ପ୍ରଚଳିତ ବିଭିନ୍ନ ବାଦ ମଧ୍ୟରେ 'ରସବାଦ' ଓ 'ରୀତିବାଦ' ଅନ୍ୟତମ । ମଧ୍ୟଯୁଗୀୟ ଓଡ଼ିଆ କବିମାନେ ସେମାନଙ୍କ ରଚନାରେ ରସ, ରୀତି, ଅଳଙ୍କାର ଓ ଧ୍ୱନି ଇତ୍ୟାଦି ବିଭିନ୍ନ ବାଦର ପ୍ରୟୋଗଦ୍ୱାରା ସେମାନଙ୍କର ରଚନାବଳୀକୁ ପ୍ରାଚ୍ୟସାହିତ୍ୟର ଯଥାର୍ଥ ପ୍ରତିନିଧି ରୂପେ ଗଢ଼ି ତୋଳିଛନ୍ତି । କବିବର ରାଧାନାଥ ମଧ୍ୟ ପ୍ରାଚ୍ୟ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇ ତାହାଙ୍କ ରଚନାବଳୀରେ ବିଭିନ୍ନ ପ୍ରସଙ୍ଗରେ ଭାରତୀୟ ରସବାଦ ଓ ରୀତିବାଦର ସଂଯୋଜନା କରିଥିବା ଦେଖାଯାଏ ।

କବି ତାହାଙ୍କର କାବ୍ୟ କବିତାରାଜିରେ ବିଭିନ୍ନ ପ୍ରସଙ୍ଗରେ ବୀର, କରୁଣ ଓ ବାତ୍ସଲ୍ୟ ଇତ୍ୟାଦି ରସର ଅବତାରଣା କରିଛନ୍ତି । ନିମ୍ନରେ ତାହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା ।

ଶୃଙ୍ଗାରରସ –

(କ) ବିଧାତା ସୌନ୍ଦର୍ଯ୍ୟ ସୃଷ୍ଟିରେ ସାର ଏ ରାଜକିଶୋର
ହୋଇ ନଥିବଟି କେତେ ରସବତୀ ହୃଦୟଚୋର ।
ପଙ୍କଜାକ୍ଷୀ କେତେ ଭୁବନେ ହେଉ ନଥିବେଟି ରଙ୍କ
ମଣ୍ଡିବାକୁ ଏହି ତରୁଣ ତିଳକ ଅଙ୍କପଲଙ୍କ ।
କେହି ଯେବେ ଆହା ଫେରାଇ ଦିଅନ୍ତା ଯୁବାମଣିକି
ତା ପାଦେ ଏ ଛାର ପରାଣକୁ ହେଳେ ଦିଅନ୍ତି ବିକି । (ଉଷା)

(ଖ) ପ୍ରେମେ ଶ୍ରୀପୟରେ ହେଲି ମୁହିଁ ବିକା
ନନ୍ଦିକା ଉତ୍କଳ-ନରେନ୍ଦ୍ର-ନନ୍ଦିନୀ
ତୁମ୍ଭ ପଦେ ଆଜ ପ୍ରେମ ଭିକାରିଣୀ ।
ବୀର ପକ୍ଷପାତୀ ସଦା ନାରୀକୁଳ
ନାରୀପ୍ରେମେ ସଦା ବୀର୍ଯ୍ୟ ଅନୁକୂଳ ।
× × ×
ନିଃଶଙ୍କେ ସମର୍ପି ଦେଲି ମୁଁ ସକଳ
ପ୍ରତିଦାନେ ପ୍ରେମ ମାଗୁଛି କେବଳ ।
× × ×
ତୁମ୍ଭପାଦେ ବିକି ଦେଇଛି ପରାଣ
ଏକମାତ୍ର ତୁମ୍ଭ ପ୍ରେମ ମୋର ଧ୍ୟାନ (ନନ୍ଦିକେଶ୍ୱରୀ)

ବୀରରସ –

ଏକାଳେ ସଂଗ୍ରାମ ଶିଙ୍ଗା ଢ଼କ୍କା, ତୂରୀ, ଭେରୀ
ଝଗଝମ୍ପ, ଝରଝରା, ଦାମାମା, ଦୁନ୍ଦୁଭି
ପ୍ରତିଧ୍ୱନି ଉପୁଜାଇ କୁକୁଭ-କୁହରେ
ପୁନଃପୁନଃ ବିଶ୍ୱଧ୍ୱଂସୀ ରୁଦ୍ର ଶିଙ୍ଗା ପରି
ଆମୂଳ ବସୁଧାବନ୍ଧ କମ୍ପାଇ ସେ ତାନେ
ସେ ଆରମ୍ଭେ ମହାଦମ୍ଭେ ମିଶିଲେ ଆହବେ
ଆର୍ଯ୍ୟ-ଯବନର ସେନା ଗର୍ଜି ହୁଂ ହୁଂକାରେ
× × ×
ପଡ଼ିଲା ପ୍ରଚଣ୍ଡ ବେଗେ ରଥୀ ସହ ରଥୀ
ପଦାତି ପଦାତି ସହ, ସାଦୀ ସଙ୍ଗେ ସାଦୀ
ନିଷାଦୀ ନିଷାଦୀ ସହ ମିଶିଲେ ଆହବେ
ରଣୋନ୍ମାଦେ-ଉଦ୍ଦୀପନ-ରଣବାଦ୍ୟ ତାନେ

ଅସ୍ତ୍ରର ଝନ୍‌ଝନେ, ଧନୁଷ୍ଟଙ୍କାର-ଶବଦେ
ଆହତର ଆର୍ତ୍ତନାଦେ, ଜେତାର ହୁଂକାରେ
ଚକ୍ରର ଘର୍ଘରେ, ବାଜିରାଜି ହ୍ରେଷାରବେ
ଦନ୍ତାବଳ ଘଣ୍ଟାରବେ ଆବର ବୃଂହିତେ
ଉଠିଲା ନିନାଦ କର୍ଣ୍ଣବିବର ବିଦାରୀ (ମହାଯାତ୍ରା)

କରୁଣ ରସ –

ଲବେ ହୋଇଗଲା ବିବର୍ଣ୍ଣ ବେନିଙ୍କ ଲାବଣ୍ୟ ଛାୟା
ଜରକା ପରାୟେ ପରଶେ ଶୀତଳ ଲାଗିଲା କାୟା
ଲକ୍ଷଣୁ ଜାଣିଲେ ପ୍ରାଣବିହଙ୍ଗମ ଗଲାଣି ଚାଲି
ଚିରପାଇଁ କରି ଏ ମୃଣ୍ମୟ ଦେହ-ପଞ୍ଜର ଖାଲି ।

× × ×

ଆକୁଳ ଜନତା-ଅର୍ଣ୍ଣବେ ଉଠିଲା ଶୋକକଲ୍ଲୋଳ
ଶୋକାଘାତେ ହେଲେ ଅଚେତନ ନୁରୁ-ନଗର-ସାଇଁ
ରାଜସୁଖ ସଙ୍ଗେ ରାଜଶୋକ ଭାଗ୍ୟ ଦେଲା ଭୁଞ୍ଜାଇ (ଉଷା)

ଅଦ୍‌ଭୁତ ରସ –

ଅନନ୍ତ ନୀଳିମାମୟ ସେ ଜଳକାନ୍ତାରେ
ଉଲ୍ଲୋଳ କଲ୍ଲୋଳ ଲୀଳା ହେରି କୁତୂହଳେ ।
ବୀରବୃନ୍ଦ ସର୍ବେ ହେଲେ ସ୍ତବଧ ବିସ୍ମୟେ
ସହସା ତରଙ୍ଗ ଭେଦି ଉଠିଲେ ଅଗ୍ରତେ
ଦିବ୍ୟ ବପୁଷ୍ମନ୍ତ ଜ୍ୱାଳାମାଳା ବିଭୂଷିତ
ଭାସ୍ୱର ପୁରୁଷ ଏକ ସାଗର ଉଦ୍‌ଭାସି
ଯା ଦର୍ଶନେ ବେଳାଭୂମିଚାରୀ ମୃଗଯୂଥେ
ସଚକିତେ ମହାତ୍ରସ୍ତେ ପଳାଇଲେ ଦୂରେ (ମହାଯାତ୍ରା)

ହାସ୍ୟରସ –

କେହି କହେ କାଶ୍ମୀରେ ମୁଁ ଦେଖିଲି ମାନବ
ଲମ୍ବକର୍ଣ୍ଣ, ଏକ କର୍ଣ୍ଣ ଶେଯ ରୂପେ ପାରି
ଆନକର୍ଣ୍ଣ ଘୋଡ଼ି ହୋଇ ଶୁଅନ୍ତି ସେ ଶେଯେ । (ମହାଯାତ୍ରା)

ବୀଭତ୍ସ

ଭଗ୍ନାୟୁଧ ଛିନ୍ନବର୍ମ ଛିନ୍ନ ଢାଲ

ସଙ୍ଗେ ପଡ଼ିଅଛି ଅସଂଖ୍ୟ କଙ୍କାଳ।
ଏକାଳେ ତୁଳସୀପୁର ସ୍ଥିତ ନାହିଁ
ପିଉଥିଲେ ତହିଁ ରଣରକ୍ତ ମହୀ।
ବିକଟେ ଓଟାରି ତହିଁ ଶବସ୍ନାୟୁ
ଯୁଝୁଥିଲେ ଗୃଧ୍ର ସଙ୍ଗତେ ଗୋମାୟୁ (ନନ୍ଦିକେଶ୍ୱରୀ)

କବିଙ୍କର ବିଭିନ୍ନ କାବ୍ୟ ଅଧ୍ୟୟନ କଲେ ଏହିପରି ଭାବରେ ସେଥିରେ ପ୍ରାଚ୍ୟ ସାହିତ୍ୟ ଅନୁରୂପରେ ବିବିଧ ରସର ଅବତାରଣା କରାଯାଇଛି। ଅର୍ଥାତ୍ କବିବର ରାଧାନାଥ ଆଧୁନିକ ଶିକ୍ଷାପ୍ରାପ୍ତ ଓ ପାଶ୍ଚାତ୍ୟ ସାହିତ୍ୟାନୁରାଗୀ ସାହିତ୍ୟ ସ୍ରଷ୍ଟା ହୋଇଥିଲେ ମଧ୍ୟ ସ୍ୱକୀୟ ସାରସ୍ୱତ ସୃଷ୍ଟି ସର୍ଜନା କରିବାବେଳେ ପ୍ରାଚ୍ୟ ରସବାଦ ଦ୍ୱାରା ପ୍ରଭାବିତ ହୋଇଛନ୍ତି।

ଏହା ସଙ୍ଗେ ସଙ୍ଗେ ରାଧାନାଥ ସାହିତ୍ୟରେ ପ୍ରାଚ୍ୟ ରୀତି ଓ ଗୁଣବାଦର ମଧ୍ୟ ଅପୂର୍ବ ପରିପ୍ରକାଶ ଘଟିଛି। ତାହାର କେତେଗୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଯାଉଛି –

(କ) ଗୌଡ଼ୀରୀତି –

ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ, କବିବର ରାଧାନାଥ ତାହାଙ୍କ କାବ୍ୟରାଜିରେ ଗୌଡ଼ୀରୀତିର ବହୁଳ ପ୍ରୟୋଗ କରିଛନ୍ତି। ତାହାଙ୍କର ଚିଲିକା, ମହାଯାତ୍ରା, ଦରବାର ଓ ଉଷା ପ୍ରଭୃତି ବିଭିନ୍ନ କାବ୍ୟରେ ଏହାର ବହୁ ଦୃଷ୍ଟାନ୍ତ ରହିଛି। ଯଥା –

"ତରୁଣ ଅରୁଣ-ରାଗେ ଦିଶି ଝକଝକ
କାଞ୍ଚନ-କଳସ-ତୁଙ୍ଗ-ଦେବାଳୟ ଚୂଡ଼େ
ଶାରଦ-ସନ୍ଧ୍ୟାଭ୍ର-ପୁଞ୍ଜ ପ୍ରାୟେ ମହୋଜ୍ଜ୍ୱଳ
× × ×
ଅଳିନ୍ଦେ ଦ୍ୱିରଦ-ରଦ-ଗବାକ୍ଷ ଶୋଭିତ
ସ୍ଫଟିକ-ଜଗତୀ-ସୌଧେ, ମନୋହର ଅତି
ରତ୍ନଜାଳେ ସମୁଜ୍ଜ୍ୱଳ ବିପଣିବୀଥିକା (ମହାଯାତ୍ରା)"

ବୈଦର୍ଭୀ ରୀତି –

ଅସମ୍ଭାଳେ ଫିଟି କୁନ୍ତଳ
ଭୂମି ଯାଏ ପରଶି
ଯେଣେ ଅନାଉଛି ଲଳନା
ଫୁଲ ଯାଏ ବରଷି।
ଦୁକୂଳ କବରୀ ସମ୍ଭାଳୁଅଛି
ଦକ୍ଷିଣେ ତରେ

ଫିଙ୍ଗୁଛି ଧରୁଛି କନ୍ଦୁକ
ବାମା ଦକ୍ଷିଣ କରେ (ଚନ୍ଦ୍ରଭାଗା)

ବୈଦର୍ଭୀ, ଗୌଡ଼ୀ ପ୍ରଭୃତି ରୀତି ସହିତ ରାଧାନାଥ ସାହିତ୍ୟରେ ବିବିଧ ଗୁଣର ସମାବେଶ ମଧ୍ୟ ଦେଖିବାକୁ ମିଳିଥାଏ । ଯଥା –

**ଓଜଃଗୁଣ –** ଉତ୍କେଶର ଦେବୀ ବାହନ କେଶରୀ
ପ୍ରାୟେ ଦଉଡ଼ିଲେ ଗ୍ରାସିବାକୁ ତରୀ ।
ତୋ ଇଙ୍ଗିତେ ସଙ୍ଗେ ଘେନି ଊର୍ମିଥାଟ
ଦଉଡ଼ି ଆସିଲେ ନୀଳାମ୍ବୁ ସମ୍ରାଟ ।
ବିଶ୍ୱଧ୍ୱଂସି ରୁଦ୍ର ପ୍ରଖର ନିଃଶ୍ୱାସ
ପରାୟେ ବହିଲା ବାୟୁ ଅଣଚାଶ । (ଚିଲିକା)

**ମାଧୁର୍ଯ୍ୟଗୁଣ –** ବନଦେବୀଙ୍କର ଅଭିସାର ଲୀଳା
ଚଳୁଥାଇ ଅବିରତେ
ଚନ୍ଦ୍ରାଲୋକେ ଯାର ଅଭ୍ର ତାରକିତ
ବିଶାଳ ଶୁଭ୍ର ସୈକତେ ।
ତରୁ ବ୍ରତତୀର ପ୍ରେମେ ବନ୍ଧାବନ୍ଧି
ଛନ୍ଦାଛନ୍ଦି ଘେନାଘେନି
ଯୋଗୁ କୁଞ୍ଜେ କୁଞ୍ଜେ ଅନ୍ଧାରିତ ଯାର
ଠାବେ ଠାବେ ନୀରବେଣୀ (ଯଯାତିକେଶରୀ)

**ପ୍ରସାଦ ଗୁଣ –** ମାଗୁଛି ଚିଲିକା ମେଲାଣି ତୋଠାରେ
ବାହୁଡ଼ିବି ଏବେ ଦାରୁଣ ସଂସାରେ ।
କରିଥିଲି ଆଶା କରିବି ଯାପନ
ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ ।
ଭାଗ୍ୟ ହୋଇଥିଲେ ରୁଚି ଅନୁକୂଳ
ଆଶ୍ରିଥାନ୍ତି ମୁହିଁ ତୋର ରମ୍ୟକୂଳ (ଚିଲିକା)

ରାଧାନାଥ ସାହିତ୍ୟ ଅଧ୍ୟୟନ କଲେ ତନ୍ମଧ୍ୟରେ ଏହିପରି ପ୍ରାଚ୍ୟ ସାହିତ୍ୟର ବିବିଧ ରସ, ରୀତି ଓ ଗୁଣର ବ୍ୟାପକ ପ୍ରଭାବ ଦେଖିବାକୁ ମିଳିଥାଏ ।

**ସଂସ୍କୃତ ସାହିତ୍ୟର କବିମାନଙ୍କ ବିଭିନ୍ନ ରଚନାର ପ୍ରଭାବ –**

ପୂର୍ବରୁ କୁହାଯାଇଛି ଯେ, କବିବର ରାଧାନାଥଙ୍କ ପ୍ରାଚ୍ୟସାହିତ୍ୟର ବାଲ୍ମୀକି, ବ୍ୟାସ, କାଳିଦାସ, ମାଘ, ଶ୍ରୀହର୍ଷ, ଭବଭୂତି ପ୍ରମୁଖ ମହାକବିଙ୍କର ବିଶିଷ୍ଟ ରଚନାମାନ ପୁଙ୍ଖାନୁପୁଙ୍ଖ ଭାବରେ ଅଧ୍ୟୟନ କରିଥିଲେ । ତତ୍‌ସଙ୍ଗେ ସଙ୍ଗେ ସେମାନେ ରଚନାର

ବିଭିନ୍ନ ଅଂଶକୁ ଗ୍ରହଣପୂର୍ବକ ନିଜସ୍ୱ ରୀତିରେ ସ୍ୱକାବ୍ୟ କବିତାରେ ପରିବେଷଣ କରିଛନ୍ତି। ନିମ୍ନରେ ଏହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଯାଉଛି।

କାଳିଦାସଙ୍କ ପ୍ରଭାବ—

(କ) ଚିଲିକା ହ୍ରଦ ମଧ୍ୟରେ ଥିବା ପର୍ବତରାଜି ପ୍ରତି ଲକ୍ଷ୍ୟକରି ରାଧାନାଥ ଲେଖିଛନ୍ତି—

''ପକ୍ଷଚ୍ଛେଦୀ ଶକ୍ର ଭୟେ କି ଶଇଳେ
ଲୁଚି ରହିଥିଲେ ତୋହରି ସଲିଳେ''

କାଳିଦାସଙ୍କ ରଘୁବଂଶର ନିମ୍ନଅଂଶଦ୍ୱାରା ପ୍ରଭାବିତ ହୋଇ ରାଧାନାଥ ଏହା ଲେଖିଥିବା ଜଣାଯାଏ—

''ପକ୍ଷଚ୍ଛିଦା ଗୋତ୍ରଭିଦାତ୍ତ ଗନ୍ଧାଃ
ଶରଣ୍ୟମେନଂ ଶତଶୋ ମହୀଧ୍ରାଃ
ନୃପାଇବୋ ପପ୍ଲବିନଃ ପରେଭ୍ୟୋ
ଧର୍ମୋତ୍ତରଂ ମଧ୍ୟମ ମାଶ୍ରୟନ୍ତେ''(ରଘୁବଂଶ ୧୩.୬)

(ଖ) 'ରଘୁବଂଶ' ମହାକାବ୍ୟର ତ୍ରୟୋଦଶ ସର୍ଗରେ ସମୁଦ୍ର ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

ବୈଦେହି ପଶ୍ୟାମଳୟାଦ୍ ବିଭକ୍ତଂ
ମତ୍ସେତୁନା ଫେନିଳମମ୍ବୁରାଶିମ୍
ଛାୟାପଥେନେବ ଶରତ୍ ପ୍ରସନ୍ନ-
ମାକାଶମାବିଷ୍କୃତ ଚାରୁତାରାମ୍। (୧୩/୨)

ଏହି ଶ୍ଳୋକଟିର ପ୍ରଭାବ ରାଧାନାଥଙ୍କ 'ଚିଲିକା'ର ନିମ୍ନ ଅଂଶ ଉପରେ ପଡ଼ିଥିବା ଜଣାଯାଏ-

''ସ୍ଥାନେ ସ୍ଥାନେ ନୀର ଭେଦିଛି ସୈକତ
ଶାରଦ ଆକାଶେ ଯେହ୍ନେ ଛାୟାପଥ
ତାରା ପୁଞ୍ଜେ ଯଥା ଶୋଭେ ହରିତାଳି
ପୁଳିନ ତେସନ ଶୁଭ୍ର ଶୁକ୍ତିଶାଳୀ।

(ଗ) 'ଚିଲିକା'ରେ ରାଧାନାଥ ଲେଖିଛନ୍ତି—

''ଯହିଁ ଚକ୍ରକାଳେ ଅୟଚକ୍ର ପ୍ରଭ
ନୀଳାର୍ଣ୍ଣବ ଦେହେ ଲଗ୍ନ ନୀଳନଭ।

ଏହା କାଳିଦାସଙ୍କ 'ରଘୁବଂଶ' ତ୍ରୟୋଦଶ ସର୍ଗର ନିମ୍ନ ଶ୍ଳୋକର ଅନୁରୂପ କହିଲେ ଅତ୍ୟୁକ୍ତି ହେବନାହିଁ -

''ଦୂରାଦୟଶ୍ଚକ୍ରନିଭସ୍ୟ ତନ୍ୱୀ

ତମାଳତାଳି ବନରାଜି ନୀଳା-
ମାଭାତିବେଳା ଲବଣାମ୍ବୁରାଶେଃ
ଧାରାନିବଦ୍ଧେବ କଳଙ୍କରେଖା।'' (୧୩/୧୫)

(ଘ) ମହାକବି କାଳିଦାସ ତାହାଙ୍କର ବିଖ୍ୟାତ 'ଋତୁସଂହାର' କାବ୍ୟରେ ଶରତ୍‌ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି-

''କାଶୈର୍ମହୀ ଶିଶିରଦୀଧିତିନା ରଜନ୍ୟୋ
ହଂସୈର୍ଜଳାନି ସରିତାଂ କୁମୁଦୈଃ ସରାଂଶି
ସପ୍ତଚ୍ଛଦୈଃ କୁସୁମଭାର ନତୈର୍ବନାନାଂ
ଶୁକ୍ଳୀକୃତା ନ୍ୟୁପବନାନିଚ ମାଳତୀଭିଃ।'' (ଶ୍ଳୋ : ୮)

ଏହି ଶ୍ଳୋକରେ ପ୍ରଭାବରେ ରାଧାନାଥ ଲେଖିଛନ୍ତି-

''ଶଶାଙ୍କ ଧବଳା ନିତ୍ୟ ଜ୍ୟୋତିଷ୍ମତୀ
କାଶହାସମୟୀ ସ୍ୱଚ୍ଛ ସ୍ରୋତସ୍ୱତୀ।
ମାଳତୀ ବିଶଦ ନିବିଡ଼ ନିକୁଞ୍ଜ
କୁମୁଦ ଧବଳ ସରୋବରପୁଞ୍ଜ।'' (ଚିଲିକା)

(ଙ) 'ରଘୁବଂଶ' କାବ୍ୟର ତ୍ରୟୋଦଶ ସର୍ଗରେ ମହାକବି କାଳିଦାସ ରାମଚନ୍ଦ୍ରଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନକାଳୀନ ବର୍ଣ୍ଣନା ପ୍ରସଙ୍ଗରେ ତାହାଙ୍କ (ରାମଚନ୍ଦ୍ରଙ୍କ) ମୁଖରେ ପ୍ରକାଶ କରାଇଛନ୍ତି –

''ତ୍ୱୟା ପୁରସ୍ତାଦୁପଯାଚିତୋ ଯଃ
ସୋଽୟଂ ବଟଶ୍ୟାମ ଇତି ପ୍ରତୀତଃ
ରାଶିର୍ମଣିନାମି ବିଗାରୁଡ଼ାନାଂ
ସପଦ୍ମରାଗଃ ଫଳିତୋ ବିଭାତି।'' (୧୩/୫୩)

ଏହି ଶ୍ଳୋକଦ୍ୱାରା ପ୍ରଭାବିତ ହୋଇ ବଟଦ୍ରୁମର ପତ୍ରକୁ ମରକତ ମଣି (ଗାରୁଡ଼) ଏବଂ ଲାଲରଙ୍ଗର ବଟଫଳକୁ 'ପଦ୍ମରାଗ ମଣି'ରୂପେ କଳ୍ପନା ପୂର୍ବକ ରାଧାନାଥ ଲେଖିଛନ୍ତି –

''ବଟଦ୍ରୁମ ଯାର ଯୋଗ୍ୟ ପୁତ୍ରବତ
ଭୂସ୍ପର୍ଶୀ ଓହଳ ସ୍ତମ୍ଭେ ପରିଣତ
ମରକତ ପର୍ଣ୍ଣେ ପଦ୍ମରାଗ ଫଳେ
ଯା ବିଗ୍ରହେ ଗ୍ରାମ ସୀମନ୍ତ ଉଜ୍ୱଳେ।'' (ଚିଲିକା)

(ଚ) 'ଉଷା' କାବ୍ୟରେ ଉଷା ସ୍ୱୟମ୍ବରରେ ଯୋଗଦେବା ନିମିତ୍ତ ଅଗ୍ରସର ହେଉଥିବା ଜୟନ୍ତର ମନର ଦୃଢ଼ତା ସଂପର୍କରେ ରାଧାନାଥ ଲେଖିଛନ୍ତି

"ମାତ୍ର ନିମ୍ନମୁଖ ପୟଃ ପୁଣି ଦୃଢ଼ପ୍ରତିଜ୍ଞ ମନ
ଯେତେ ବାରିଲେ ହେଁ ମାନନ୍ତି ନାହିଁ ସେ କେବେ ବାରଣ"

ଏହା କାଳିଦାସଙ୍କ 'କୁମାରସମ୍ଭବ କାବ୍ୟର ପଞ୍ଚମ ସର୍ଗାନ୍ତର୍ଗତ ପାର୍ବତୀଙ୍କ ତପସ୍ୟା ନିମିତ୍ତ ସ୍ଥିର ନିଶ୍ଚୟ ମନର ଅବସ୍ଥା ବର୍ଣ୍ଣନାମୂଳକ ନିମ୍ନ ଶ୍ଳୋକର ଭାବାନୁବାଦ କହିଲେ ଅତ୍ୟୁକ୍ତି ହେବନାହିଁ। ଯଥା –

"ଇତି ଧ୍ରୁବେଚ୍ଛାମନୁଶାସତୀ ସୁତା
ଶଶାକ ମେନା ନନିୟନ୍ତୁ ମୁଦ୍ୟମାତ୍
କ ଇପ୍ସିତାର୍ଥଃ ସ୍ଥିର ନିଶ୍ଚୟଂ ମନଃ
ପୟଶ୍ଚ ନିମ୍ନାଭିମୁଖଂ ପ୍ରତୀପୟେତ୍।" (କୁ:ସ: ୫/୫)

(ଛ) 'ମହାଯାତ୍ରା' କାବ୍ୟରେ ରାଧାନାଥ ସାତକୋଶିଆ ଗଣ୍ଡ ନିକଟବର୍ତ୍ତୀ ବନବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି –

× × × "ବନଗଜବ୍ରଜ –
କଣ୍ଡୁଳ-କପୋଳ-ପିଣ୍ଡ ଘର୍ଷଣେ କମ୍ପିତ
ଦ୍ରୁମାବଳୀ ଦେହୁ ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟ ପୁଷ୍ପ ପୁଞ୍ଜପୁଞ୍ଜ ହୋଇ।"

ଏହି ବର୍ଣ୍ଣନା ଲେଖିଲାବେଳେ କବି ରାଧାନାଥ କାଳିଦାସଙ୍କ କୁମାରସମ୍ଭବର ନିମ୍ନ ଶ୍ଳୋକଦ୍ୱାରା ପ୍ରଭାବିତ ହୋଇଥିବା ସ୍ପଷ୍ଟ ଜଣାଯାଏ। 'କୁମାରସମ୍ଭବ'ର ପ୍ରଥମସର୍ଗରେ ହିମାଳୟ ବର୍ଣ୍ଣନା ପ୍ରସଙ୍ଗରେ କାଳିଦାସ ଲେଖିଛନ୍ତି –

"କପୋଳକଣ୍ଡୁଃ କରିଭିର୍ବିନେତୁଂ
ବିଘଟ୍ଟିତାନାଂ ସରଳଦ୍ରୁମାଣାମ୍
ଯତ୍ରସ୍ରୁତକ୍ଷୀରତୟା ପ୍ରସୂତଃ
ସାନୁନି ଗନ୍ଧଃ ସୁରଭି କରେତି। (କୁ:ସ:୧/୯)

(ଜ) କବି ରାଧାନାଥ 'ଯଯାତିକେଶରୀ'ରେ ଲେଖିଛନ୍ତି –

"ଏ ବାଳାକୁ ବନ- ବାସ ସହାଇଲେ
ବିଧି ଅବାକି ବିଚାରେ
ଶମୀ ଛେଦିବାକୁ ଲୋଡ଼ିଲେ ସିନା ସେ
ନୀଳୋତ୍ପଳ ଦଳଧାରେ।

ଏହା ମହାକବି କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍'ର ନିମ୍ନ ଶ୍ଳୋକର ପ୍ରଭାବରେ ଲିଖିତ ହୋଇଥିବା ସ୍ପଷ୍ଟ ଜଣାଯାଏ –

"ଇୟଂ କିଲା ବ୍ୟାଜ ମନୋହରଂ ବପୁ –
ସ୍ତପଃ କ୍ଷମଂ ସାଧୟିତୁଂ ଯଃ ଇଚ୍ଛତି

ନୂନଂ ସ ନୀଳୋତ୍ପଳ ପତ୍ର ଧାରୟା
ଶମୀଲତାଂ ଛେତ୍ତୁମୃଷି ର୍ବ୍ୟବସ୍ୟତି।''

**ଭବଭୂତିଙ୍କ ପ୍ରଭାବ –**

ମହାକବି ଭବଭୂତିଙ୍କ 'ଉତ୍ତର ରାମ ଚରିତ' ନାଟକ ସଂସ୍କୃତ ସାହିତ୍ୟର ଏକ ବିଶିଷ୍ଟ କୃତି ରୂପେ ବିବେଚିତ ହୋଇଥାଏ। ଭାରତବର୍ଷର ପ୍ରାୟ ପ୍ରତ୍ୟେକ ସଂସ୍କୃତ ପଣ୍ଡିତ ତଥା ସଂସ୍କୃତ ସାହିତ୍ୟାନୁରାଗୀ ବ୍ୟକ୍ତି ଏହି ନାଟକଟିକୁ ଅଧ୍ୟୟନ କରିଥାନ୍ତି। କବିବର ରାଧାନାଥଙ୍କ ରଚନାବଳୀ ପାଠକଲେ ଜଣାଯାଏ ଯେ, ସେ 'ଉତ୍ତରରାମଚରିତ' ନାଟକଟିକୁ ସମ୍ୟକ୍‌ଭାବେ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ତାହାର କେତେକ ବିଖ୍ୟାତ ଶ୍ଳୋକଦ୍ୱାରା ପ୍ରଭାବିତ ହୋଇଥିଲେ। ନିମ୍ନରେ ଏହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା –

(କ) 'ଚିଲିକା' କାବ୍ୟରେ ରାଧାନାଥ ନିଜର ଦାକ୍ଷିଣାତ୍ୟ ଭ୍ରମଣ ପ୍ରସଙ୍ଗରେ ଲେଖିଛନ୍ତି –

ଧାରାସ୍ରାବୀ ଭୀମରାବୀ ତଡ଼ିଦ୍‌ଦନ୍ତ
ପର୍ଜନ୍ୟଗର୍ଜ୍ଜନେ କମ୍ପିଲେ ଦିଗନ୍ତ।
ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର
ମୈଥିଳୀ ପାଳିତ କେକି ବଂଶଧର।
ନୀପେ ନୃତ୍ୟକାରୀ ନୀଳକଣ୍ଠ କେକା
ଅଦ୍ୟାପି ସୂଚଇ ରାମାଶ୍ରମ ରେଖା

ଏହି ଅଂଶଟିର ଭାବଧାରା କବି ଭବଭୂତିଙ୍କ ରଚିତ 'ଉତ୍ତରରାମଚରିତ'ର ନିମ୍ନ ଶ୍ଳୋକରୁ ଗ୍ରହଣ କରିଥିବା ଜଣାଯାଏ –

''କରକମଳ ବିତୀର୍ଣ୍ଣୈ ରମ୍ବୁନୀବାର ଶଷ୍ପୈ
ସ୍ତରୁ ଶକୁନି କୁରଙ୍ଗାନ୍ ମୈଥିଳୀ ଯାନପୁଷ୍ୟତ୍।'' (୩/୨୫)

(ଖ) ଦାକ୍ଷିଣାତ୍ୟର ଗୋଦାବରୀ ନଦୀର ବର୍ଣ୍ଣନା ପ୍ରସଙ୍ଗରେ ରାଧାନାଥ ଲେଖିଛନ୍ତି –

''ଗଦ୍‌ଗଦ ଶବଦେ ଗୋଦାବରୀ ଯହିଁ।
କୁହରେ ପଡ଼ୁଛି ଭୃଗୁ ଦେହେ ଝରି''
(ଚିଲିକା)

ଏହି ଦୁଇ ପାଦରେ ରହିଥିବ ଭାବଧାର ଭବଭୂତିଙ୍କ ରଚନାର ନିମ୍ନଶ୍ଳୋକରୁ ଗୃହୀତ ହୋଇଥିବା ସ୍ପଷ୍ଟ ଜଣାଯାଏ –

''ଏତେ ତେ କୁହରେଷ୍ଟୁ ଗଦ୍‌ଗଦ ନଦଦ୍
ଗୋଦାବରୀ ବାରୟୋ।'' (ଉତ୍ତର ରାମଚରିତ ୨/୩୦)

## ମହାକବି ମାଘଙ୍କ ପ୍ରଭାବ –

ମହାକବି ମାଘଙ୍କ 'ଶିଶୁପାଳବଧ' ସଂସ୍କୃତ 'ଷଟ୍‌କାବ୍ୟ' ମଧ୍ୟରୁ ଅନ୍ୟତମ। ଏହା ଭାରତୀୟ ପଣ୍ଡିତମଣ୍ଡଳିରେ ଏକ ଉଚ୍ଚାଙ୍ଗ ମହାକାବ୍ୟ ରୂପେ ବିବେଚିତ ହୋଇଥାଏ। କବିବର ରାଧାନାଥ ଅନେକ କ୍ଷେତ୍ରରେ ଏହି କାବ୍ୟଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ। ନିମ୍ନରେ ଏହାର ଗୋଟିଏ ଦୃଷ୍ଟାନ୍ତ ପ୍ରଦାନ କରାଗଲା।

'ଚିଲିକା' କାବ୍ୟରେ ରାଧାନାଥ ଲେଖିଛନ୍ତି –

''ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି
ସୁନ୍ଦର ପଣର ଚିରନ୍ତନ ରୀତି।
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ''

ଏ କ୍ଷେତ୍ରରେ ରାଧାନାଥ 'ଶିଶୁପାଳବଧ'ର ନିମ୍ନ ଶ୍ଳୋକଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ –

''ଦୃଷ୍ଟୋଽପି ଶୈଳଃ ସ ମୁହୁର୍ମୁରାରେଃ
ଅପୂର୍ବବତ୍ ବିସ୍ମୟ ମାତତାନ
କ୍ଷଣେ କ୍ଷଣେ ଯନ୍ନବତାମୁପୈତି
ତଦେବ ରୂପଂ ରମଣୀୟତାୟାଃ। (୪/୧୭)''

## ବାଣଭଟ୍ଟଙ୍କ ପ୍ରଭାବ –

ମହାକବି ବାଣଭଟ୍ଟଙ୍କ ବିଖ୍ୟାତ ଗଦ୍ୟକାବ୍ୟ 'କାଦମ୍ବରୀ' ଦ୍ୱାରା ମଧ୍ୟ ରାଧାନାଥ କେତେକ ସ୍ଥଳରେ ପ୍ରଭାବିତ ହୋଇଥିବା ଦେଖାଯାଏ। ନିମ୍ନ ଉଦାହରଣରୁ ଏହାର ସତ୍ୟତା ଅବଧାରିତ ହୋଇଥାଏ।

''ମହାଯାତ୍ରା'ର ତୃତୀୟ ସର୍ଗରେ ବନବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି –

''ଦୟାବତୀ ମୈଥିଳୀର ସ୍ୱହସ୍ତପାଳିତ
ଅଦ୍ୟାପିଛନ୍ତି ଏବନେ ବୃଦ୍ଧ କୃଷ୍ଣସାର
ଜରାଜୀର୍ଣ୍ଣ ଶୁଣି ଯେହୁ ଜଳଦ ଆଗମେ
ସୁଗମ୍ଭୀର ଘନଘୋଷ ସ୍ମରନ୍ତି ବିଷାଦେ
ବ୍ରହ୍ମାଣ୍ଡ ବିବରବ୍ୟାପୀ କୋଦଣ୍ଡ ଟଙ୍କାରେ
ଲଙ୍କାପତି ଅରାତିର, ତୃଣାହାର ତେଜି
ନିର୍ନିମେଷେ ଏକ ଧ୍ୟାନେ ମୁଞ୍ଚନ୍ତି ଲୋତକ।''

ଏହି ବର୍ଣ୍ଣନା ଉପରେ 'କାଦମ୍ବରୀ'ର ନିମ୍ନ ଅଂଶର ସ୍ପଷ୍ଟ ପ୍ରଭାବ ପଡ଼ିଥିବା ଜଣାଯାଏ

''ଅଧୁନାଽପି ଯତ୍ର ଜଳଧର ସମୟେ ଗମ୍ଭୀରମଭିନବଜଳଧର-ନିବାହ-ନିନାଦମାକର୍ଣ୍ଣ୍ୟ

ଭଗବତୋ ରାମସ୍ୟ ତ୍ରିଭୁବନବିବର-ବ୍ୟାପିନଶ୍ଚାପଘୋଷସ୍ୟ ସ୍ମରନ୍ତୋ ନ ଗୃହ୍ଣନ୍ତି ଶସ୍ପକବଳ-ମଜସ୍ରମଶ୍ରୁଜଳ-ଲୁଳିତ-ଦୀନଦୃଷ୍ଟୟୋଃ ବୀକ୍ଷ୍ୟ ଶୂନ୍ୟା ଦଶଦିଶୋ ଜରାଜର୍ଜରିତ ବିଷାଣକୋଟୟୋର୍ଜାନକୀ-ସଂବର୍ଦ୍ଧିତା ଜୀର୍ଣ୍ଣମୃଗାଃ ।''

## ଶ୍ରୀହର୍ଷଙ୍କ ପ୍ରଭାବ –

ମହାକବି ଶ୍ରୀହର୍ଷଙ୍କ 'ନୈଷଧ' କାବ୍ୟ ମଧ୍ୟ କେତେକ ସ୍ଥଳରେ ରାଧାନାଥଙ୍କ ଉପରେ ପ୍ରଭାବ ବିସ୍ତାର କରିଥିବା ଦେଖାଯାଏ । 'ମହାଯାତ୍ରା'ର ଚତୁର୍ଥ ସର୍ଗରେ କଳି ଅନୁଚରମାନଙ୍କର ରୂପବର୍ଣ୍ଣନା ପ୍ରସଙ୍ଗରେ କବି ଶ୍ରୀହର୍ଷଙ୍କଦ୍ୱାରା ପ୍ରଭାବିତ ହୋଇଥିବା ସ୍ପଷ୍ଟ ଜଣାଯାଏ । ଯଥା –

(କ) 'ମହାଯାତ୍ରା'ର ଚତୁର୍ଥ ସର୍ଗରେ କ୍ରୋଧର ଆଗମନ ଦୃଶ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି –

''ଆକ୍ରୋଶେ ଗରଜି କ୍ରୋଧ ଆସେ କାମପଛେ
ରକ୍ତଚକ୍ଷୁଃ ସତେ କି ସେ ଦହିବ ଜଗତ ।''

ଏହି ଅଂଶଟି 'ନୈଷଧ'ର ନିମ୍ନ ଶ୍ଲୋକର ଅନୁରୂପ ମନେହୁଏ –

''ଯଦ୍ୱତ୍ କ୍ଷିପନ୍ତମୁତ୍ କମ୍ପମୁତ୍ଥାୟୁକମଥାରୁଣମ୍
ବୁବୁଧୁ ର୍ବିବୁଧାଃ କ୍ରୋଧମାକ୍ରୋଶାକ୍ରୋଶ ଘୋଷଣମ୍ ।'' (୧୭/୧୯)

(ଖ) ହତ୍ୟାର ମର୍ତ୍ତ୍ୟ ଅବତରଣକାଳୀନ ଦୃଶ୍ୟ ବର୍ଣ୍ଣନା ପ୍ରସଙ୍ଗରେ ରାଧାନାଥ ଲେଖିଛନ୍ତି –

''ସହଚର ରୂପେ ତାର ଆସଇ ସଙ୍ଗତେ
ହତ୍ୟା କରବାଳ ହାତେ, ରକ୍ତଲିପ୍ତବାସେ
ତମ୍ପପ୍ରାୟେ ଫଁ ଫଁ ସ୍ୱନେ ନିଃଶ୍ୱାସି ସଘନେ
ଆସୁଛନ୍ତି ପରିଜନେ, ବହଇ ଅଧରୁ
ଲହୁଧାରା, ନିଜଦନ୍ତେ ନିଜକୁ କାମୋଡ଼ି
କାଳଭୁଜଙ୍ଗିନୀ ପ୍ରାୟେ ଭ୍ରୂକୁଟି ଲଲାଟେ ।''

ଏହା ସହିତ 'ନୈଷଧ'ର ନିମ୍ନ ଶ୍ଲୋକ ତୁଳନୀୟ –

''ଯମୁପାସତ ଦନ୍ତୌଷ୍ଠ କ୍ଷଣସୃକ୍ ଶିଷ୍ୟଚକ୍ଷୁଷଃ
ଭ୍ରୂକୁଟୀ ଫଣିନୀନାଦନିଭଃ ନିଃଶ୍ୱାସ ଫୁତ୍କୃତାଃ ।'' (୧୭/୨୦)

(ଗ) 'ମହାଯାତ୍ରା'ର ଚତୁର୍ଥସର୍ଗରେ ମୋହ ସ୍ୱରୂପ ବର୍ଣ୍ଣନା ପ୍ରସଙ୍ଗରେ ରାଧାନାଥ ଲେଖିଛନ୍ତି –

''ଶାସ୍ତ୍ରଜ୍ଞାନ ସତ୍ତ୍ୱେ ଜଡ଼, ଅନ୍ଧ ଚକ୍ଷୁ ଥାଇ
ହେଲେହେଁ ଜାଗ୍ରତ ଗାଢ଼-ନିଦ୍ରା-ଅଭିଭୂତ
ଦରାଣ୍ଡି ହୁଅନ୍ତି ଆହା, ମହାଘୋର ତମେ

ଏହାର ଭାବଧାରା ନୈଷଧର ନିମ୍ନ ଶ୍ଲୋକରୁ ଗୃହୀତ ହେଲା ପରି ମନେହୁଏ –

"ଜାଗ୍ରତାମପି ନିଦ୍ରା ଯଃ ପଶ୍ୟତାମପି ଯୋଽନ୍ଧତା
ଶ୍ରୁତୋସତ୍ୟପି ଜାଡ୍ୟଂ ଯଃ ପ୍ରକାଶୋଽପି ଚଯସ୍ତମଃ।" (୧୭/୩୩)

**ବ୍ୟାସଦେବଙ୍କ ପ୍ରଭାବ –**

ମହାମୁନି ବେଦବ୍ୟାସଙ୍କ ରଚିତ ମହାଭାରତ ଓ ବିଭିନ୍ନ ପୁରାଣର ବିଷୟବସ୍ତୁଦ୍ୱାରା କବିବର ରାଧାନାଥ କିପରି ପ୍ରଭାବିତ ହୋଇଥିଲେ, ତାହା ପୂର୍ବରୁ ସୂଚିତ ହୋଇଛି। କେବଳ ବିଷୟବସ୍ତୁ ନୁହେଁ, ବ୍ୟାସଦେବଙ୍କ ମହାଭାରତର କେତେକ ବିଖ୍ୟାତ ଶ୍ଳୋକଦ୍ୱାରା ମଧ୍ୟ କବି ପ୍ରଭାବିତ ହୋଇଥିବା ଜଣାଯାଏ। ନିମ୍ନରେ ଏହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଯାଉଛି।

(କ) 'ମହାଯାତ୍ରା'ର ପ୍ରଥମସର୍ଗରେ ରାଧାନାଥ ଯୁଧିଷ୍ଠିରଙ୍କ ମୁଖରେ ପ୍ରକାଶ କରାଇଛନ୍ତି –

"ହେ ବୀର, ଦୁସ୍ତର କୁରୁ-ସମର-ସାଗରେ
× × ×
ଯେ ମହାପୁରୁଷ ନିଜ କୃପା ତରଣୀରେ
ପାରିକଲେ ପାଣ୍ଡବଙ୍କୁ କର୍ଣ୍ଣଧାର ରୂପେ।"

ଏହାର ଭାବଧାରା ଶ୍ରୀମଦ୍ ଭଗବଦ୍‌ଗୀତାର 'ଗୀତାଧ୍ୟାନ' ଅଂଶରୁ ଗୃହୀତ ହୋଇଥିବା ଜଣାଯାଏ। ଭଗବାନ କେଶବଙ୍କ ସ୍ତୁତି ପ୍ରସଙ୍ଗରେ ସେଥିରେ କୁହାଯାଇଛି –

"ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ
କୈବର୍ତ୍ତକେ କେଶବେ।"

(ଖ) 'ମହାଯାତ୍ରା'ର ଶେଷସର୍ଗରେ ଅମର୍ଷୀଙ୍କ ମୁଖରେ କବି ପ୍ରକାଶ କରାଇଛନ୍ତି –

"ବିନା ଯୁଦ୍ଧେ ନଦେବାର ସୂଚ୍ୟଗ୍ର ମେଦିନୀ
ପଣମେଉଁ ଆର୍ଯ୍ୟଙ୍କର ତାଙ୍କରି ଶୋଣିତ
ବହୁଛି ତ ଆହେ ଯୋଦ୍ଧେ ତୁମ୍ଭ ଧମନୀରେ"

ଏହା ରଚନା କରିବା ନିମିତ୍ତ ରାଧାନାଥ ମହାଭାରତର ନିମ୍ନୋକ୍ତ ବିଖ୍ୟାତ ଶ୍ଳୋକଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ। ଉକ୍ତ ଶ୍ଳୋକଟି ହେଉଛି –

"ସୂଚ୍ୟଗ୍ରେଣ ସୁତୀକ୍ଷ୍ଣେନ ଯାବତ୍ ତିଷ୍ଠତି ମେଦିନୀ
ତାବତ୍ ଭୂମିର୍ନଦାତବ୍ୟା ବିନା ଯୁଦ୍ଧେନ କେଶବ।"

(ଗ) 'ମହାଯାତ୍ରା'ରେ ରାଧାନାଥ ଲେଖିଛନ୍ତି –

"ଶତଭ୍ରାତା କୁରୁ ପଞ୍ଚପାଣ୍ଡବ ସହିତେ
ଥିଲେହେଁ ବିବାଦେ ରତ, ଦେଖ ବୈରୀସହ
ଯୁଝିଥିଲୁ ଆମ୍ଭେ ହୋଇ ପଞ୍ଚୋତ୍ତର ଶତ।"

ଏହା ଲେଖିଲାବେଳେ ବ୍ୟାସଙ୍କ ମହାଭାରତର ନିମ୍ନ ଶ୍ଳୋକ ହିଁ ରାଧାନାଥଙ୍କ ଉପରେ ପ୍ରଭାବ ବିସ୍ତାର କରିଛି -

"ପରସ୍ପର ବିରୋଧେ ହି ବୟଂ ପଞ୍ଚ ଚ ତେ ଶତମ୍
ଅନ୍ୟୈଃ ସହ ବିରୋଧେ ତୁ ବୟଂ ପଞ୍ଚୋତ୍ତର ଶତମ୍।"

(ଘ) ପୃଥ୍ୱୀରାଜଙ୍କଦ୍ୱାରା ସଂଯୁକ୍ତା କିପରି ବଳପୂର୍ବକ ଅପହୃତା ହୋଇଥିଲେ, ସେ ସଂପର୍କରେ 'ମହାଯାତ୍ରା'ରେ ରାଧାନାଥ ଲେଖିଛନ୍ତି–

"ଚମକେ ଝଲକା ପ୍ରାୟେ ରାଜାଙ୍କ ସମ୍ମୁଖେ
ଉଲ୍କା ବେଗେ ଆସି ବୀର୍ଯ୍ୟଶୁଲ୍କା ରୂପସୀ କି
ଅନୁକୂଳ ବଳାତ୍କାରେ ନେଇଯିବେ ହରି
ସଭାତଳୁ × × ×।"

ଏ କ୍ଷେତ୍ରରେ ବ୍ୟାସକୃତ ମୂଳ ସଂସ୍କୃତ ଭାଗବତର ନିମ୍ନ ଶ୍ଳୋକଟି କବିଙ୍କର ପ୍ରେରଣାଦାତା ମନେହୁଏ –

"ଶୋଭାବିନି ତ୍ୱମଦିତୋଦ୍‌ବହନେ ବିଦର୍ଭାନ୍
ଗୁପ୍ତଃ ସମେତ୍ୟ ପୃତନା ପତିଭିଃ ପରୀତଃ।
ନିର୍ମଥ୍ୟ ଚୈଦ୍ୟମଗଧେନ୍ଦ୍ର ବଳଂ ପ୍ରସହ୍ୟ
ମାଂ ରାକ୍ଷସେନ ବିଧିନୋଦ୍‌ବହ ବୀର୍ଯ୍ୟଶୁଲ୍‌କାମ୍"

କବିବର ରାଧାନାଥଙ୍କ ଉପରେ ବିଭିନ୍ନ ସଂସ୍କୃତ କବିଙ୍କ ରଚନାର ପ୍ରଭାବ କିପରି ପଡ଼ିଛି, ତାହା ଦର୍ଶାଇବା ନିମିତ୍ତ ସ୍ୱଳ୍ପ କେତୋଟି ଦୃଷ୍ଟାନ୍ତ ମାତ୍ର ଏଠାରେ ପ୍ରଦାନ କରାଗଲା।

ଏହା ହେଉଛି କବିବର ରାଧାନାଥଙ୍କ ଉପରେ ପ୍ରାଚ୍ୟସାହିତ୍ୟ ପ୍ରଭାବର କେତେଗୋଟି ଦୃଷ୍ଟାନ୍ତ। ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ରାଧାନାଥ ଜଣେ ଆଧୁନିକ ଇଂରାଜୀ ଶିକ୍ଷାପ୍ରାପ୍ତ ସାହିତ୍ୟସ୍ରଷ୍ଟା ହୋଇଥିଲେ ମଧ୍ୟ ସଂସ୍କୃତ ସାହିତ୍ୟରେ ତାହାଙ୍କର ଗଭୀର ପାଣ୍ଡିତ୍ୟ ରହିଥିଲା। ସେ ସଂସ୍କୃତ ସାହିତ୍ୟର ବିଭିନ୍ନ ମହାକବିଙ୍କ ରଚିତ ଗ୍ରନ୍ଥରାଜି ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ତନ୍ମଧ୍ୟରୁ ବହୁ ବିଶିଷ୍ଟ ଅଂଶର ଭାବଧାରା ଗ୍ରହଣ ପୂର୍ବକ ସ୍ୱକୀୟ ରଚନାବଳୀର କାବ୍ୟିକ ସୌନ୍ଦର୍ଯ୍ୟ ବୃଦ୍ଧି କରାଇଛନ୍ତି। ଅତଏବ ରାଧାନାଥ ସାହିତ୍ୟକୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ଏକ ଅପୂର୍ବ ସମନ୍ୱିତ ରୂପ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ। ଏହା କବିବରଙ୍କ ପ୍ରତିଭାର ଏକ ବିଶିଷ୍ଟ ବିଭାବ ରୂପେ ବିବେଚିତ ହୋଇଥାଏ। ସେ ବିଭିନ୍ନ ସଂସ୍କୃତ ମହାକବିଙ୍କଦ୍ୱାରା ପ୍ରଭାବିତ ହୋଇଥିଲେହେଁ ଏଥିରେ ତାହାଙ୍କର ପ୍ରତିଭା କ୍ଷୁର୍ଣ୍ଣ ହୋଇନାହିଁ। ବରଂ ଏ କ୍ଷେତ୍ରରେ ଇଂରାଜୀ ଭାଷାର ଏକ ବିଶିଷ୍ଟ ଉକ୍ତି ତାହାଙ୍କ ପ୍ରତି ସର୍ବାଦୌ ପ୍ରଯୁଜ୍ୟ ମନେହୁଏ। ସେହି ଉକ୍ତିଟି ହେଉଛି – "The greatest Genius is the most indebted man."

ଅର୍ଥାତ୍, ପ୍ରତିଭାଶାଳୀ ବ୍ୟକ୍ତିହିଁ ପୂର୍ବସୂରୀ ମାନଙ୍କଠାରୁ ବ୍ୟାପକ ଆହରଣ କରିଥାନ୍ତି। ଅତଏବ ରଧାନାଥଙ୍କ ତୁଲ୍ୟ ମହାନ୍ ପ୍ରତିଭାଶାଳୀ କବିଙ୍କ ପକ୍ଷରେ ହିଁ ଏପରି ଆହରଣ ସମ୍ଭବ ହୋଇଛି।

# ପ୍ରକୃତି ଚିତ୍ରଣରେ ରାଧାନାଥଙ୍କ ବୈଶିଷ୍ଟ୍ୟ

ପ୍ରାଧ୍ୟାପକ ଶ୍ରୀ ଭାସ୍କର ଚନ୍ଦ୍ର ଖଟାଇ

ପ୍ରକୃତି କବି ବା ପ୍ରକୃତି ଉପାସକ ରାଧାନାଥଙ୍କ ସାହିତ୍ୟରେ ପ୍ରକୃତି ଚିତ୍ରଣର ବିଶଦ ଆଲୋଚନା ପୂର୍ବରୁ ସର୍ବପ୍ରଥମେ ଆମକୁ ପ୍ରକୃତିର ରୂପରେଖ ସଂପର୍କରେ ଏକ ଧାରଣା ଆଣିବା ଉଚିତ। ଏହି ପ୍ରକୃତି ଏକ ବ୍ୟାପକ ଶବ୍ଦ। ସଂସାରର ସ୍ଥୂଳ ବିଶ୍ଳେଷଣ କଲେ ଦୁଇଟି ପଦାର୍ଥ ଏଥିରୁ ଦେଖିବାକୁ ମିଳେ। ଗୋଟିଏ ଜଡ଼ ଏବଂ ଅନ୍ୟଟି ଚେତନ। ଜଡ଼ ପଦାର୍ଥର ମୋଟ ନାମ ପ୍ରକୃତି ବା ମାୟା। ଏହା ତ୍ରିଗୁଣାତ୍ମିକା– ସତ୍ୱ, ରଜ ଓ ତମ। ଈଶ୍ୱର ହେଉଛନ୍ତି ସର୍ବଶକ୍ତିମାନ। ସେ ଏହି ଅଖିଳ ବିଶ୍ୱବ୍ରହ୍ମାଣ୍ଡର ହର୍ତ୍ତାକର୍ତ୍ତା-ଦଇବବିଧାତା। ତାଙ୍କର ସମଗ୍ର ସୃଷ୍ଟି ହେଉଛି ବୈଚିତ୍ର୍ୟପୂର୍ଣ୍ଣ। ଏହି ସୃଷ୍ଟିର ଯାବତୀୟ ବୈଚିତ୍ର୍ୟ ମଧ୍ୟରେ ସର୍ବାପେକ୍ଷା ବିସ୍ମୟକର ସର୍ଜନା ହେଉଛି ମନୁଷ୍ୟ। ସେ ନିଜର ଇଚ୍ଛାଶକ୍ତିବଳରେ ସୃଷ୍ଟିର ସମସ୍ତବସ୍ତୁ ସର୍ଜନାପରେ ସ୍ୱଇଚ୍ଛାର ପୂର୍ଣ୍ଣତାପ୍ରାପ୍ତି ଲାଗି ମାନବୀୟ ସଭ୍ୟତାର ବିକାଶ ଓ ମାନବୀୟ ପ୍ରକୃତିର ଚରିତାର୍ଥ ନିମିତ୍ତ "ପ୍ରକୃତି ରାଜ୍ୟ ବା ବହିଃ ପ୍ରକୃତି" ସୃଷ୍ଟିକଲେ।

ଏହି ପ୍ରକୃତିର ରୂପରେଖ ସମ୍ବନ୍ଧରେ କୁହାଯାଇଛି– "Nature, the power which creates and which regulates the material world: the power of growth : the established order of things, the universe : the qualities of anything which make it what it is : constitution : species : Conformity to nature, truth or reality : inborn mind, character, instinct, or disposition : vital power, as of man or animal : course of life : nakedness : a primitive undomesticated condition."(୧)

(୨) ପ୍ରକୃତି– ସଂ. ବି- ପ୍ର+କୃଧାତୁ+କରଣ.ତି)–୧। ଭଗବାନଙ୍କର prakruti ମାୟାଖ୍ୟାଶକ୍ତି, ଯାହାଦ୍ୱାରା ବିଶ୍ୱବ୍ରହ୍ମାଣ୍ଡର ଯାବତୀୟ ପଦାର୍ଥ ସୃଷ୍ଟ ହୋଇଅଛି; ସଂସାର ବା ଜଡ଼ଜଗତର ଭୌତିକ ପ୍ରଧାନ କାରଣ। ଭଗବାନଙ୍କର ଯେଉଁ ମାୟାଖ୍ୟା ଶକ୍ତିଦ୍ୱାରା ଏ ବିଶ୍ୱର ସୃଷ୍ଟି ହୋଇଅଛି ତାକୁ ପ୍ରକୃତି ବୋଲାଯାଏ। ଏହା ଦ୍ୱିବିଧ, ଯଥା– ପରା ଓ ଅପରା। ପରା (ଶ୍ରେଷ୍ଠା) ଜୀବସ୍ୱରୂପ ଚେତନାମୟୀ ପ୍ରକୃତି। ଏହା ଜଗତକୁ ରକ୍ଷା କରୁଅଛି। ଏହାହିଁ ଜୀବନର ପ୍ରାଣ। ଅପରା (ନିକୃଷ୍ଟା) କ୍ଷିତି, ଅପ, ତେଜଃ, ମରୁତ୍, ବ୍ୟୋମ, (ପଞ୍ଚଭୂତ) ମନ, ବୁଦ୍ଧି ଓ ଅହଙ୍କାର। ହିନ୍ଦୁ ଦର୍ଶନ ମତରେ- ଆତ୍ମା ଛଡ଼ା ଜଗତରେ ଅନ୍ୟ ସମସ୍ତ ବସ୍ତୁର ମୂଳ କାରଣ

'ପ୍ରକୃତି' ଅଟେ। ପ୍ରକୃତି ଅନ୍ଧ କିନ୍ତୁ ଉତ୍ପାଦିକା ଶକ୍ତି ବିଶିଷ୍ଟ। ପୁରୁଷ (spirit) ଓ ପ୍ରକୃତି (Nature) ଏହି ଉଭୟର ମିଳନରେ ଏ ଜଗତର ସୃଷ୍ଟି। ପୁରୁଷ ସ୍ୱୟଂ କିଛି କାର୍ଯ୍ୟକରେ ନାହିଁ; କେବଳ ଦର୍ଶକ ମାତ୍ର। ପ୍ରକୃତି ଓ ପୁରୁଷର ସଂଯୋଗ ହେଲେ ସୃଷ୍ଟି କାର୍ଯ୍ୟର ଆରମ୍ଭ ହୁଏ। ପ୍ରକୃତିରୁ ସତ୍ୱ, ରଜଃ ଓ ତମଃ ଏହି ତିନିଗୁଣ ଉତ୍ପନ୍ନ ହୁଅନ୍ତି। ଏହି ତିନିଗୁଣ ସମ୍ୟାବସ୍ଥାରେ ଥିଲେ ପ୍ରକୃତି ନିରୂପାଧିକ ରୂପେ ଅବସ୍ଥାନ କରୁଥାଏ; କିନ୍ତୁ ଉକ୍ତ ଗୁଣତ୍ରୟର ଅସ୍ୟାମ୍ୟାବସ୍ଥା ଘଟିଲେ ସୃଷ୍ଟି କାର୍ଯ୍ୟ ଆରମ୍ଭ ହୁଏ।] ୨ – (ସାଂଖ୍ୟ ଦର୍ଶନ) ସତ୍ୱ, ରଜଃ ଓ ତମଃ, ଜଡ଼ ଜଗତର ଏହି ତ୍ରିଗୁଣାତ୍ମକ ଆଦି କାରଣ; ନିରାକାର ଓ ଜ୍ଞାନମୟ ଈଶ୍ୱରଙ୍କର ସାକାର ଓ ଜଡ଼ରୂପେ ଜଗତରେ ପ୍ରକାଶମାନଗୁଣ ।

ଇଚ୍ଛାମୟ ଭଗବାନଙ୍କର ଅସୀମ ଇଚ୍ଛାକୁ ପୂରଣ କରିବାପାଇଁ ମାନବ ହେଉଛି ପ୍ରକୃତିର ସନ୍ତାନ। ପ୍ରକୃତିର ମଧୁମୟ କ୍ରୋଡ଼ରେ ସେ ଲାଳିତ ପାଳିତ ହୋଇ ତାର ସେହି ମଧୁମୟୀ ମୂର୍ତ୍ତିର ବର୍ଣ୍ଣନା କାଳେ କାଳେ କରି ଆସିଛି। ଅନ୍ତୁଡ଼ିଶାଳରୁ ମଶାଣି ନିଆଁ ପର୍ଯ୍ୟନ୍ତ ତାହା ଉପରେ ପଡ଼ିଥାଏ ସେହି ମଧୁମୟୀ ପ୍ରକୃତିର ଅପ୍ରତିହତ ପ୍ରଭାବ। ଋତୁଚକ୍ରର ଆବର୍ତ୍ତନ ଫଳରେ ପ୍ରକୃତିର ପ୍ରତ୍ୟେକଟି ପଦାର୍ଥ ତା ପାଇଁ ହୋଇଥାଏ ପରମ ଉପଭୋଗ୍ୟ ଓ ମନୋମୁଗ୍ଧକର। ପ୍ରକୃତିର କଲ୍ୟାଣମୟୀ ସ୍ନିଗ୍ଧରୂପରେ ସେ କେତେବେଳେ ଆତ୍ମବିସ୍ମୃତି ଲାଭକରେ ତ ଅନ୍ୟ କେତେବେଳେ ପୁଣି ତାର ପ୍ରଳୟଙ୍କରୀ ସଂହାର ମୂର୍ତ୍ତି ଦେଖି ବିଶେଷ ଆତଙ୍କିତ ହୋଇ ନିଜର ସ୍ଥିତିକୁ ସଂପୂର୍ଣ୍ଣରୂପେ ହଜାଇ ବସିଥାଏ। ସୁଖ ଦୁଃଖ, ହସ କାନ୍ଦ ଓ ଆଶାନିରାଶା ମଧ୍ୟରେ ଏହି ମନୁଷ୍ୟ ପ୍ରକୃତି ସହିତ ଓତପ୍ରୋତଭାବେ ଜଡ଼ିତରହି ତାକୁ ଅତିପ୍ରିୟ ଓ ଆପଣାର କରିପକାଇଥାଏ। ଏଣୁ ପ୍ରକୃତି ସହିତ ମାନବର ସମ୍ବନ୍ଧ ଅତିନିବିଡ଼ ଏବଂ ଅବିଚ୍ଛିନ୍ନ। ମାନବ ସହିତ ପ୍ରକୃତିର ଏ ସଂପର୍କ କେବଳ ବସ୍ତୁ ଜଗତରେ ନୁହେଁ ଭାବ ଜଗତରେ ମଧ୍ୟ ନିବିଡ଼। ଜୀବନ ଧାରଣ ପାଇଁ ପ୍ରକୃତିଠାରେ ମନୁଷ୍ୟର ଯେପରି ସ୍ଥୂଳ ପ୍ରୟୋଜନୀୟତା ଲୋଡ଼ା ତାହାର ଜୀବନକୁ ସର୍ବାଙ୍ଗ ସୁନ୍ଦର କରି ଗଢ଼ିତୋଳିବା ଦିଗରେ ଠିକ୍ ସେମିତି ତାର ଭାବ ଓ ସୌନ୍ଦର୍ଯ୍ୟ ମଧ୍ୟ ଏକାନ୍ତ ଆବଶ୍ୟକ। ଏ ସଂପର୍କ ସହଜାତ ଓ ନୈସର୍ଗିକ। ଏଣୁ ଆର୍ଯ୍ୟ ଋଷି ପ୍ରକୃତିର ରୁଦ୍ରକାନ୍ତମୂର୍ତ୍ତି ସଂନ୍ଦର୍ଶନ କରି ଦେବତା ଜ୍ଞାନରେ ନିଜର ଭୟ ଭକ୍ତି ଜଣାଇବା ସହିତ ତାର ପବିତ୍ର କୋଡ଼ରେ ଶାନ୍ତିର ଆଶ୍ରମ ନିର୍ମାଣ କରି ବେଦମନ୍ତ୍ରର ମଧୁର ଧ୍ୱନିରେ ତାର ବନ୍ଦନା ଗାଇଉଠିଛି।

ଅତି ଆଦିମ କାଳରୁ ପ୍ରକୃତି ସହିତ ମଣିଷର ସଂପର୍କ ଓତପ୍ରୋତଭାବେ ଜଡ଼ିତ ଥିବାରୁ ଭିନ୍ନ ଭିନ୍ନ ଦେଶ ଓ ଯୁଗର ସାହିତ୍ୟ କ୍ଷେତ୍ରରେ ପ୍ରକୃତି ନାନା ରୂପରେଖ ନେଇ ଦେଖାଦେଇ ଆସିଛି। ପ୍ରାଚୀନ ଭାରତୀୟ ବୈଦିକ ସାହିତ୍ୟରେ ପ୍ରକୃତି କିପରି ପ୍ରାଧାନ୍ୟ ଲାଭ କରିଥିଲା ସେ ସମ୍ବନ୍ଧରେ ପଣ୍ଡିତ ଦୁଃଖୀଶ୍ୟାମ ପଟ୍ଟନାୟକ ତାଙ୍କର ମତବ୍ୟକ୍ତ କରିବାକୁ ଯାଇ ଲେଖିଛନ୍ତି - "ପ୍ରାଚୀନ ଭାରତୀୟ ବୈଦିକ ସାହିତ୍ୟ

ମଧ୍ୟ ସୃଷ୍ଟି ହୋଇଥିଲା ଏହି ପ୍ରକୃତିର ବିଚିତ୍ର ଆକୃତି ଅବଲୋକନରେ ବିସ୍ମୟ ମୁଗ୍ଧ ମନୀଷୀମାନଙ୍କର ଚିନ୍ତା ରାଜ୍ୟର ଆଲୋଡ଼ନ ଦ୍ୱାରା। ଲୌକିକ ସଂସ୍କୃତ ସାହିତ୍ୟରେ ମହାକବି କାଳିଦାସ ମଧ୍ୟ ପ୍ରକୃତିପ୍ରତି ଅନନ୍ତ ସହାନୁଭୂତି ଓ ଅସୀମ ଆତ୍ମୀୟତା ପ୍ରଦର୍ଶନ କରି ମାନବୀୟ ସୁଖ ଦୁଃଖ ସହିତ ପ୍ରକୃତିକୁ ସଂଶ୍ଳିଷ୍ଟ କରିଛନ୍ତି। ପ୍ରକୃତିକୁ ବିଭିନ୍ନ କବି ଭିନ୍ନ ଭିନ୍ନ ଦୃଷ୍ଟି କୋଣରୁ ଦେଖିଯାଇଛନ୍ତି। କେତେକ ପ୍ରକୃତିର photographic treatment ବର୍ଣ୍ଣନା କରିଯାଇଛନ୍ତି ଏବଂ ଅନ୍ୟ କେତେକ ପ୍ରକୃତିକୁ ମାନବ ଜୀବନ ସହିତ ମିଳାଇ ଜୀବନ୍ୟାସ ଦେଇଛନ୍ତି। (୩)

ବୈଦିକ ଯୁଗର ସାହିତ୍ୟକୁ ପର୍ଯ୍ୟାଲୋଚନାର ପରିସର ଭୁକ୍ତ କଲେ ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ମାନବ ପ୍ରକୃତିର ସୌନ୍ଦର୍ଯ୍ୟକୁ ଉପଭୋଗ କରି ନିଜର ଜୀବନକୁ ଧନ୍ୟ ମନେ କରିଛି। ସଂସ୍କୃତ ସାହିତ୍ୟ ପ୍ରତି ଦୃଷ୍ଟି ଦେଲେ ପରିଲକ୍ଷିତ ହୁଏ ଯେ ଇଂରେଜ କବି WordsWorthଙ୍କ ପରି ସଂସ୍କୃତ କବିମାନେ ସେପରି ପ୍ରକୃତିକୁ ପ୍ରେରଣାର ଉତ୍ସରୂପେ ଗ୍ରହଣ କରି ନଥିଲେ ମଧ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ନାନା ରୂପଦେଇ ଅଛନ୍ତି। ଓଡ଼ିଆ ସାହିତ୍ୟପ୍ରତି ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ ଯେ ସାରଳା ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ପ୍ରତ୍ୟେକ ଯୁଗରେ କାବ୍ୟ କବିତା ମାନଙ୍କରେ ପ୍ରକୃତି ବର୍ଣ୍ଣନା ରହି ଆସିଛି। ସାରଳା ଯୁଗରେ ଓ ପଞ୍ଚସଖାଯୁଗରେ କବିମାନେ ପ୍ରକୃତିକୁ ସାମୟିକ ଭାବରେ ନିଜ ନିଜର କାବ୍ୟ କବିତାରେ ସ୍ଥାନଦେଇ ଆସିଛନ୍ତି। ଭଞ୍ଜଯୁଗରେ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟକୁ କାବ୍ୟ କବିତାରେ ବିଭିନ୍ନ ରୂପରେ ରୂପାୟିତ କରିଥିଲେ ମଧ୍ୟ ତାହା ମାନବ ସମାଜର ଦୈନନ୍ଦିନ ସୁଖଦୁଃଖପ୍ରତି ସେଭଳି ଆଶାନୁରୂପ ସମବେଦନା ଜ୍ଞାପନ କରିବାକୁ ସକ୍ଷମ ହୋଇପାରିନାହିଁ।

କବି ମାତ୍ରକେ ପ୍ରକୃତିପ୍ରିୟ ହୋଇଥିବାରୁ ଇଂରେଜ କବି William WordsWorthଙ୍କ ମତରେ ପ୍ରକୃତି ସହିତ ମଣିଷ ନାନାଭାବରେ ସମ୍ବନ୍ଧ ସ୍ଥାପନ କରି ଆସିଥିବାରୁ ମାନବ ସମାଜର ଅଶେଷ କଲ୍ୟାଣ ସାଧିତ ହୋଇଥାଏ। ସେ ପ୍ରକୃତି କୋଳରୁ କବିତା ଲେଖିବାପାଇଁ ଅଶେଷ ପ୍ରେରଣା ପାଇ ଥିବାରୁ ପ୍ରକୃତିକୁ ନିଜର ନିର୍ଦ୍ଦେଶକ ବା ଶିକ୍ଷକରୂପେ ଗ୍ରହଣ କରି ଲେଖିଛନ୍ତି –

"'One impulse from a vernal wood
May teach you more of men
of moral evil and of good
than all the sages can"

Goetheଙ୍କ ଦୃଷ୍ଟିରେ ପ୍ରକୃତିକୁ "Nature is the living garment of god", କୁହାଯାଉଥିବାବେଳେ S. T. Coleridge & whitman ପ୍ରଭୃତି ଇଂରେଜ ସାହିତ୍ୟିକମାନଙ୍କ ମତରେ ପ୍ରକୃତିକୁ "Nature is the background of human life" ବୋଲି କୁହାଯାଇଛି।

ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ବିଚାରାଲୋଚନା କଲେ ପ୍ରକୃତି କିପରି ପ୍ରତ୍ୟେକ କବି ନିକଟରେ ନୂତନ ରୂପରେଖ ନେଇ ଦେଖା ଦେଇଥାଏ ସେ ବିଷୟରେ ବିଶେଷ ଅନୁଧ୍ୟାନ କରି ବିଶିଷ୍ଟ ସମାଲୋଚକ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ଲେଖିଛନ୍ତି– "ପାଶ୍ଚାତ୍ୟ ସାହିତ୍ୟରେ ପ୍ରକୃତି ଚିତ୍ରଣ ଦୃଷ୍ଟିରୁ କବିମାନଙ୍କର ଯେପରି ବିଚାର ଓ ସମାଲୋଚନା କରାଯାଏ, ଭାରତୀୟ ସାହିତ୍ୟରେ ସେପରି ବିଚାର ସମଧିକ ପରିମାଣରେ ଦୃଷ୍ଟ ହୁଏନାହିଁ କହିଲେ ହୁଏତ ଅସଙ୍ଗତ ହେବନାହିଁ ଯେ, ପ୍ରକୃତିର ବିଶ୍ଳେଷଣ ମୂଳକ ପର୍ଯ୍ୟାଲୋଚନା ଓ ସେହି ଦୃଷ୍ଟିଭଙ୍ଗୀରୁ କବିଙ୍କ ବିଶେଷତ୍ୱ ପ୍ରତିପାଦନ ଆଧୁନିକ ଯୁଗରେ ଯେପରି ଗୁରୁତ୍ୱର ସହିତ କରାଯାଇଥାଏ ତାହା ସଂସ୍କୃତ ସାହିତ୍ୟ କିମ୍ବା ପ୍ରାଚୀନ ସାହିତ୍ୟରେ ସେପରି ଭାବରେ ହେଉନଥିଲା। ଭାଷାନ୍ତରରେ କହିବାକୁ ଗଲେ ଯଦ୍ୟପି ପ୍ରତ୍ୟେକ କବି ପ୍ରକୃତିର ଚିତ୍ତ ବିମୋହକ ରୂପମାଧୁରୀ ପାନ କରନ୍ତି ଏବଂ ନିଜ ନିଜର କାବ୍ୟ କବିତାରେ ଫୁଟାଇଥାନ୍ତି ତଥାପି ସମସ୍ତଙ୍କର ବର୍ଣ୍ଣନାଶୈଳୀ, ବିଶ୍ଳେଷଣ ପ୍ରଣାଳୀ, ପର୍ଯ୍ୟବେକ୍ଷଣର ସ୍ୱରୂପ ଓ ଦୃଷ୍ଟିଭଙ୍ଗୀ ସମାନ ନୁହେଁ। ଇଂରାଜୀ ସାହିତ୍ୟରେ ଯେଉଁ ଅର୍ଥରେ "Nature"ପ୍ରୟୋଗ କରାଇଥାଏ ଓଡ଼ିଆରେ "ପ୍ରକୃତି" ସେହି ଅର୍ଥରେ ପ୍ରଯୁକ୍ତ ହୋଇଥାଏ। ଟିକିଏ ଆଲୋଚନା କଲେ ଦେଖାଯିବ ଏ ପ୍ରକୃତିର ଅର୍ଥ ମଧ୍ୟ ହେଉଛି– "ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାମୂଳକ ବୈଶିଷ୍ଟ୍ୟ ବା ଚମତ୍କାରିତା।" ରାଧାନାଥ, ଗାଂଗାଧର, ମଧୁସୂଦନ ପ୍ରଭୃତି ପ୍ରକୃତିର ବିଶେଷତ୍ୱ ବିଚାର କରିବା ଆଗରୁ କହି ରଖିବା ଦରକାର, ଇଂରାଜୀ ସାହିତ୍ୟରେ କବିମାନଙ୍କ ବିଶେଷତ୍ୱ ନିରୂପଣ ଏହି ଦୃଷ୍ଟିଭଙ୍ଗୀରୁ କିପରି କରାଯାଇଛି। Wordsworth, Shelley, Byron, Arnold ପ୍ରମୁଖ କବିମାନେ ଇଂରାଜୀ କବି ସମାଜରେ ଅଖଣ୍ଡ ପ୍ରତିଷ୍ଠା ଲାଭ କରିଛନ୍ତି। ଏମାନଙ୍କ କାବ୍ୟ କବିତାରେ ପ୍ରକୃତି–ଚିତ୍ରଣ ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ। ପ୍ରତ୍ୟେକଙ୍କ ବୈଶିଷ୍ଟ୍ୟ କବିତାର ମଧ୍ୟଦେଇ ବଳିଷ୍ଠ ଭାବରେ ଫୁଟି ଉଠିଛି। WordsWorth ପ୍ରକୃତିରେ ଦେଖୁଥିଲେ ଅନନ୍ତ ଅଜ୍ଞେୟ ପରମାତ୍ମାଙ୍କର ଜ୍ୱଳନ୍ତ ଅଭିବ୍ୟକ୍ତି। Shelley ଙ୍କ ମତରେ ପ୍ରକୃତି ହେଉଛି ସେହି ସନାତନ ଶାଶ୍ୱତବ୍ରହ୍ମର ରହସ୍ୟମୟ ଅଭିବ୍ୟକ୍ତି ଯେଉଁଠାରେ ଜାଗତିକ ସମସ୍ତ ଭେଦାଭେଦ ବିଲୀନ ହୁଏ। Byron ଦୃଷ୍ଟିରେ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାଧୀନତାର ଜୀବନ ପ୍ରତୀକ ହେଉଛି ପ୍ରକୃତି ସେହି ସ୍ୱାଧୀନତା, ଯାହାର ଅବାଧ ଉପଭୋଗ ସାଧାରଣ ସମାଜରେ ଅସମ୍ଭବ। Arnoldଙ୍କ ପ୍ରକୃତି କ୍ଷୁବ୍ଧ ହୃଦୟର ଅସୀମ ଓ ଶାନ୍ତି ଦାୟକ, ଅବସନ୍ନ ପ୍ରାଣରେ ନବୀନ ବଳର ସଞ୍ଚାରକ। Scottଙ୍କ ପ୍ରକୃତି ଅତୀତ ଘଟଣାର ସ୍ମାରକ, ପୂର୍ବ ଅନୁଭୂତିର ପ୍ରବୋଧକ। Keats & Tynnyson ଙ୍କ ପ୍ରକୃତି ପରସ୍ପର ଠାରୁ ଭିନ୍ନ। John Dyerଙ୍କ Grongor Hill, Scott, Mormion & Arnold Dover Beachରେ ଦେଖିବାକୁ ମିଳେ ସେହି ପ୍ରକୃତି ଚିତ୍ରଣ ମୂଳକ ଦୃଷ୍ଟିଭଙ୍ଗୀର ପାର୍ଥକ୍ୟ।" (୫)

'ଓଡ଼ିଆ କାବ୍ୟଯୁଗ ସାହିତ୍ୟ' ସଂସ୍କୃତ ସାହିତ୍ୟର ପ୍ରଭାବରେ ପ୍ରଭାବିତ ହୋଇଥିବାରୁ ବିଶେଷକରି ସଂସ୍କୃତ ସାହିତ୍ୟର ସୃଷ୍ଟି ଆଭିମୁଖ୍ୟ, ଗଠନ-ପରିପାଟୀ ଓ ଶିଳ୍ପ ବୋଧଦ୍ୱାରା

ସଂପୂର୍ଣ୍ଣ ନିୟନ୍ତ୍ରିତ ହୋଇଥିବାରୁ ଏଠାରେ ପ୍ରକୃତି ବର୍ଣ୍ଣନାର ପ୍ରାଧାନ୍ୟ ପରିବର୍ତ୍ତେ ନାରୀର ପ୍ରେମ ମୁଖ୍ୟସ୍ଥାନ ଅଧିକାର କରିଛି। ବହିଃପ୍ରକୃତି ଚିତ୍ରଣ କାବ୍ୟଯୁଗ ସାହିତ୍ୟରେ ଥିଲେ ମଧ ନାରୀର ସୌନ୍ଦର୍ଯ୍ୟ କବି ମନର ପ୍ରଧାନ ଉପାସ୍ୟ ଥିବାରୁ ବହିଃପ୍ରକୃତି ମୁଖ୍ୟସ୍ଥାନ ଅଧିକାର ନକରି ଗୌଣସ୍ଥାନ ଅଧିକାର କରିବାକୁ ବାଧ ହୋଉଛି। ଫଳରେ ସବୁ ସ୍ଥାନରେ ବହିଃପ୍ରକୃତି ନାରୀ ପ୍ରକୃତି ବର୍ଣ୍ଣନାର ହୋଇଛି ଅନୁଚର। ନାରୀ ସୌନ୍ଦର୍ଯ୍ୟ ପିପାସୁ କବି ପ୍ରକୃତିକୁ ପୁଙ୍ଖାନୁପୁଙ୍ଖ ପ୍ରାଧାନ୍ୟ ଦେଇ ବର୍ଣ୍ଣନା କରିବାରେ ଦକ୍ଷତା ହାସଲ ନ କରି ନାରୀ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାରେ ସିଦ୍ଧହସ୍ତତା ଲାଭ କରିଛି। ଏଣୁ ପ୍ରକୃତି ସେ ସମୟର କବି ହସ୍ତରେ ନାରୀ ପରି ଜୀବନ୍ତ ନହୋଇ ଏକ ଜଡ଼ ପଦାର୍ଥରେ ପରିଣତ ହୋଇଛି। ପ୍ରକୃତିର ବହୁବିଧରୂପ, କମନୀୟ ସୌନ୍ଦର୍ଯ୍ୟ ଏବଂ ଭୀମକାନ୍ତ ମୂର୍ତ୍ତି ପ୍ରଭୃତି ସେ ଯୁଗର କବି ଚିତ୍ତକୁ ଆଦୌ ସ୍ପର୍ଶ କଲାଭଳି ମନେହୁଏନି। ପ୍ରକୃତିକୁ ପୂଜା କରିବା ଏବଂ ତା'ଠାରୁ ଶିକ୍ଷା ସହାନୁଭୂତି ପାଇବା ପରିବର୍ତ୍ତେ ସେ ଯୁଗର କାବ୍ୟ କବିତାରେ ଅତିଶୟ ଅଳଙ୍କାର ଏବଂ ଅର୍ଥାଳଙ୍କାରର ଘନ ଘନ ପ୍ରୟୋଗ ଫଳରେ ପ୍ରକୃତି ସେ ସମୟରେ ଜୀବନ୍ତ କି ମୁକ୍ତ ନ ଥିଲା। ତାହା ପିଞ୍ଜରାବଦ୍ଧ ବା ବନବାସିନୀ ଥିଲା।

ସମୟର ପରିବର୍ତ୍ତନ ସଂଗେ ସଂଗେ ପ୍ରାୟ ଦୁଇଶହ ବର୍ଷ ଧରି ଏଇ କାବ୍ୟଯୁଗର ଯେଉଁ ରୀତି ଚାଲିଥିଲା ଇଂରେଜମାନଙ୍କ ଆଗମନ ଫଳରେ ତା'ର ଅବସାନ ଘଟିଲା। ନୂତନ ଶିକ୍ଷାପ୍ରଣାଳୀର ପ୍ରବର୍ତ୍ତନ, ନୂତନ ପାଠ୍ୟ ପୁସ୍ତକର ପ୍ରଚଳନ, ସ୍କୁଲ କଲେଜରେ ପାଶ୍ଚାତ୍ୟ ଚିନ୍ତାଧାରା ଓ ସାହିତ୍ୟର ପ୍ରବର୍ତ୍ତନ ହେତୁ ଲୋକ-ଚିତ୍ତରେ ହଠାତ୍ ଏକ ନୂତନ ଅଭିରୁଚି ଦେଖାଦେଲା। ଫଳରେ ସାହିତ୍ୟ ପ୍ରେମୀ ପାଠକ ପାଠିକା ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ ଓ ବୈଦେହୀଶ ବିଳାସ ପ୍ରଭୃତି ପ୍ରତି ବିଶେଷ ଆଗ୍ରହ ପ୍ରକାଶ ନକରି Words worth; Byron, shelley, keats, Arnold, scott, Tennyson, Milton & Shakespear ପ୍ରଭୃତିଙ୍କର ସାହିତ୍ୟ କୃତିପ୍ରତି ବିଶେଷ ମନ ବଳାଇଲେ। ଏଇ ସମୟରୁ ଓଡ଼ିଆ ସାହିତ୍ୟର ଆଦର୍ଶ, ରୂପରେଖ ଓ ଆଭିମୁଖ୍ୟ ସମ୍ପୂର୍ଣ୍ଣ ବଦଳିଯିବାରୁ ରାଧାନାଥ ନବଯୁଗର ପ୍ରବର୍ତ୍ତକଭାବେ ମଧୁସୂଦନ ଓ ଫକୀରମୋହନଙ୍କୁ ନିଜପଥର ପଥିକୀ କରାଇଲେ। ଓଡ଼ିଆ ସାହିତ୍ୟରେ ଯେଉଁ ନୂତନ ରୂପସମ୍ଭାର ବିଭାଗ ସୃଷ୍ଟି ହେଲା, ନବରୁଚିଧାରୀ ଲେଖକମାନଙ୍କ ହାତରେ "ପ୍ରକୃତି-ବିଭାଗ" ଶ୍ରେଷ୍ଠ ବିଭାଗରୂପେ ପ୍ରାଧାନ୍ୟ ଲାଭ କଲା।

ଉତ୍କଳ ଭୂଖଣ୍ଡ ନିସର୍ଗ ଶୋଭାର ଅବଗୁଣ୍ଠନବତୀ ଚିର ରହସ୍ୟମୟୀ ପ୍ରକୃତିର ଏକ ରମଣୀୟ ପୀଠସ୍ଥଳୀ ହୋଇଥିବାରୁ ପ୍ରାକ୍ ରାଧାନାଥ ଯୁଗୀୟ କବି ଲୋଚନର ଅନ୍ତରାଳରେ ପ୍ରକୃତିର ଯେଉଁ ଚାରୁ ଆଲେଖ୍ୟ ଶାଳିକା ଆତ୍ମଗୋପନ ସହିତ ନୀରବତା ଅବଲମ୍ବନ କରିଥିଲା ତାହା ପ୍ରଥମଥର ପାଇଁ ରାଧାନାଥଙ୍କ ଲେଖନୀରେ ମୃତ ସଞ୍ଜୀବନୀ ମନ୍ତ୍ରପାଇ ପ୍ରତିନିଧିତ୍ୱ ସହ କଥା କହିଲା। ସଦା ହାସ୍ୟମୟୀ ଚିରଯୌବନୀ ପ୍ରକୃତିର

ଜୀବନ୍ତ ପ୍ରତିକୃତି ଉନ୍ମୋଚନ କରିବାରେ ରାଧାନାଥ ସର୍ବପ୍ରଥମେ ପ୍ରକୃତି ସର୍ବସ୍ୱ ହୋଇ ନୂତନ ପଦକ୍ଷେପ ନେଇଥିବାରୁ ଏଇ ବିଭାଗରେ ସେ ହେଉଛନ୍ତି ଜଣେ ଅଦ୍ୱିତୀୟ ସ୍ରଷ୍ଟା, ସଫଳ ଦିଗ୍‌ଦ୍ରଷ୍ଟା ଏବଂ ସ୍ମରଣୀୟ କଳାକାର। ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ପ୍ରକୃତି ବର୍ଣ୍ଣନା ଯୁଗୋପଯୋଗୀ ନ୍ୟାୟରେ ଗତି କରି ଆସିଥିଲେ ମଧ୍ୟ ସେ ପ୍ରକୃତି ଜୀବନ୍ତ ବା ମୁକ୍ତ ନଥିଲା। ଜାତୀୟବାଦୀ ପ୍ରକୃତିପ୍ରେମୀ କବି ରାଧାନାଥଙ୍କ ହସ୍ତରେ ସେହି ମୃତ ପ୍ରାଣିଗଣ ସ୍ୱରୂପ ଉତ୍କଳ ପ୍ରକୃତି କିପରି ଜୀବନ୍ତ ବା ନବପ୍ରାଣ ଲାଭ କଲା ସେ ବିଷୟରେ ସ୍ୱଭାବ କବି ଗଙ୍ଗାଧର ତାଙ୍କ ଉତ୍କଳ ଲକ୍ଷ୍ମୀରେ ଲେଖିଛନ୍ତି –

''ସାଧୁଭକ୍ତ ଜଣେ ସରସ୍ୱତୀ ଜଳେ
ତାଙ୍କ ଅଭିଷେକ କରି
ରତଥିଲେ ସ୍ତବେ ଦିଶିଲେ ମୋତେ ସେ
ରାଧାନାଥ ରାୟପରି।
ପଢ଼ନ୍ତେ ମନ୍ତର ସେ ଭକ୍ତ-ପ୍ରବର;
ଆସିଲେ ହୋଇ ସତ୍ୱର
ମୃତ ପ୍ରାଣିଗଣ ନବପ୍ରାଣ ଲଭି
ବହି ନବ କଳେବର।
ସ୍ଥାବର ସକଳ ଦିଗ ସମୁଜ୍ଜ୍ୱଳ
କରିକଲେ ଆଗମନ
ଉପଚାର ଘେନି ଜୟ ଗୋ ଉତ୍କଳ –
ଲକ୍ଷ୍ମୀକରି ଉଚ୍ଚାରଣ। (୬)

ରାଧାନାଥଙ୍କ ପ୍ରକୃତି ପୁରୋଧା ପଦବୀ ସାର୍ଥକ ହୋଇ କିପରି ଏକ ସ୍ୱତନ୍ତ୍ର ଦୀପ୍ତିରେ ଦୀପ୍ତିମାନ ହୋଇ ଉଠିଥିଲା, ସେ ବିଷୟରେ ଅଧାପକ ଚିନ୍ତାମଣି ବେହେରା 'କାବ୍ୟ କଳାକାର' ଗ୍ରନ୍ଥରେ ଲେଖିଛନ୍ତି: ''ରାଧାନାଥ ସୃଷ୍ଟିର କାବ୍ୟପରିଧି ଏକ ସ୍ୱତନ୍ତ୍ର ଦୀପ୍ତିରେ ଉଦ୍‌ଭାସିତ, ତା'ର ବାତାବରଣ ଏକକ ନୂତନ ମୌସୁମୀରେ ପରିପୂର୍ଣ୍ଣ। ରାଧାନାଥ ଏକ ପକ୍ଷରେ ପ୍ରାଚୀନତାର ଅସ୍ତରାଗ ଓ ଅନ୍ୟପକ୍ଷରେ ଆଧୁନିକତାର ଅଗ୍ରଦୂତ ଓ ପୂର୍ବରାଗ। ତାଙ୍କର ରୂପପ୍ରାଣତାର ଶ୍ରେଷ୍ଠଦିଗ ପ୍ରକୃତିପ୍ରୀତି ବା ପ୍ରକୃତି ପ୍ରାଣତା, ତେଣୁ ରାଧାନାଥଙ୍କ ପ୍ରକୃତି ପୁରୁଧା ପଦବୀ ସାର୍ଥକ!!(୭)

ପ୍ରକୃତି ସହିତ ରାଧାନାଥଙ୍କ ନାଡ଼ୀର ବନ୍ଧନ ଅଚ୍ଛେଦ୍ୟ ଥିବାରୁ ଏବଂ ମାନବ ପ୍ରକୃତି ଅପେକ୍ଷା ବହିଃ ପ୍ରକୃତିର ସେ ପ୍ରକୃତ ଚିହ୍ନରା ଗ୍ରାହକ ହୋଇଥିବାରୁ ସେ ପ୍ରକୃତିକୁ ତାଙ୍କର ସନ୍ଧାନୀ ଦୃଷ୍ଟିରେ ଦେଖୁଥିଲେ, ଗ୍ରାହିକା ଶକ୍ତିରେ ସେ ପ୍ରକୃତିର ନିତ୍ୟନୂତନ ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ ଏବଂ ତାଙ୍କର ତୀବ୍ର ରସବୋଧ ନିର୍ଜୀବ ପ୍ରକୃତି ମଧ୍ୟରେ ଜୀବନ ସଞ୍ଚାର କରିଥିଲା। ଜୀବନକାଳ ମଧ୍ୟରେ ସେ ଉତ୍କଳର

ସର୍ବତ୍ର ପରିଭ୍ରମଣ କରି ପ୍ରତ୍ୟେକ ସ୍ଥାନର ବୃକ୍ଷଲତା, ପଶୁପକ୍ଷୀ, ନଦନଦୀ, ହ୍ରଦ, ମନ୍ଦିର, ପ୍ରାକୃତିକ ବିଭବ ଓ ଭୌଗଳିକ ବିବରଣୀ ସଂଗ୍ରହ କରି ତାଙ୍କ କାବ୍ୟ କବିତାରେ ପ୍ରୟୋଗ କରିଛନ୍ତି। ମେଘାସନ, ମହେନ୍ଦ୍ର, ମାଲ୍ୟଗିରି, ଗନ୍ଧମାର୍ଦନ, ଗୋନାସା, କପିଳାସ, ସପ୍ତଶଯ୍ୟା, ମୈନାକ, ପଞ୍ଚଧାର, ବାରାଚଳ, ସୋଲରି, ଭାଲେରି, ଜଟିଆ, ଖଣ୍ଡାହଣା, ଶାଲ୍ମଳୀ, ସରଣ୍ଡା, ସ୍ୱର୍ଣ୍ଣଚୂଡ଼, ଦ୍ୱିଶିର, ସର୍ପେଶ୍ୱର, ନରାଜ, ଧଉଳି, ବିନାୟକ, ବିଶ୍ୱନାଥ ପ୍ରଭୃତି ଭଲ୍ଲାକୃତି, ଶୂଳାକୃତି, ତୋରଣାକୃତି, କୂର୍ମପୃଷ୍ଠାକୃତି, ଉନ୍ନତ, ଆନତ, ସରନ, କୁଞ୍ଚିକ, ଝରଝଙ୍କୃତ, ଦେବଦେବୀ ଅଧିଷ୍ଠିତ ଉତ୍କଳୀୟ ଶୈଳମାଳର ଜୀବନ୍ତ ଚିତ୍ର, ଅଂଶୁପା, ସର, ଚିଲିକା, ପ୍ରଧାନପାଟ, ଖଣ୍ଡାଧାର, ମହାନଦୀ, କାଂଶବାଂଶ, ରତ୍ନଚିରା, ଗେଙ୍ଗୁଟି, ସମଘରାପାଟ, ଚୂଡ଼ଙ୍ଗଦହ, ଗୁଳ୍ମ, ଘଞ୍ଚଅରଣ୍ୟ, ମାଳଦରୀ ଉପତ୍ୟକା, ଦ୍ୱୀପ ଓ ନଦୀପଥରେ ବର୍ଷା ଶରତ୍, ଉଷା ସନ୍ଧ୍ୟା, ଅନ୍ଧକାର ଓ ଚନ୍ଦ୍ରିକାର ଲୀଳା ଏବଂ କାଇଜଙ୍ଗ ଜଙ୍ଗଲର ଛୁରିଅନା, ରତ୍ନଚିରାର ସୌଗନ୍ଧିକ, ନିଆଳିର ପାଟଳି, ମହାବିନାୟକର ଚମ୍ପକ, କୋଠ ଦେଶର ପୁନ୍ନାଙ୍ଗ ଓ ରାହାଙ୍ଗର ରଙ୍ଗଣୀ ଇତ୍ୟାଦି ପ୍ରାକୃତିକ ବିଭବ ରାଧାନାଥଙ୍କୁ ଉତ୍କଳର ରସାଳ ମାନଚିତ୍ର ଅଙ୍କନ କରିବାରେ ଯଥେଷ୍ଟ ସହାୟକ ହୋଇଛି। ରାଧାନାଥଙ୍କ କାବ୍ୟକୃତି ପ୍ରକୃତିର ଅପରୂପ ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ। ମାନବର ଅନ୍ତଃପ୍ରକୃତି ଅପେକ୍ଷା ବହିଃ ପ୍ରକୃତିର ସୌନ୍ଦର୍ଯ୍ୟ ନିରୀକ୍ଷଣରେ ସେ ବିଶେଷ ଆଗ୍ରହୀ ଥିଲେ। ଉତ୍କଳର ନଦନଦୀ, ବନପ୍ରାନ୍ତର, ହ୍ରଦ-କାନ୍ତାର, ପର୍ବତ, ଉପତ୍ୟକା ପ୍ରଭୃତିର ନିତ୍ୟନୂତନ ସୌନ୍ଦର୍ଯ୍ୟ ସନ୍ଦର୍ଶନରେ ଅତ୍ୟନ୍ତ ଆତ୍ମବିଭୋର ହୋଇ ତାହା ସହିତ ସେ ଆତ୍ମିକ ବନ୍ଧନରେ ଜଡ଼ିତ ହୋଇ ପଡ଼ିଥିଲେ। ତାଙ୍କ ଦୃଷ୍ଟିରେ ପ୍ରକୃତି ଜଡ଼ପିଣ୍ଡ ନହୋଇ ସଜୀବ ପ୍ରାଣସତ୍ତାପୂର୍ଣ୍ଣ ଅତ୍ୟନ୍ତ ଆତ୍ମୀୟ ହୋଇ ଉଠିଥିଲା। ଏଣୁ ଉତ୍କଳର ଜନଜୀବନର ସୁଖ ଦୁଃଖ, ହସ କାନ୍ଦର ଜୀବନଲିପି ରଚନା କରିବା ପରିବର୍ତ୍ତେ ସେ ପ୍ରକୃତିର ନିଭୃତ ହୃଦୟର ପରିଚୟ ବାଢ଼ିବାକୁ ଅତ୍ୟନ୍ତ ଶ୍ରେୟ ମଣିଛନ୍ତି।

ସାଧାରଣ ଜୀବନଠାରୁ କବି ନିଜକୁ ବହୁ ଦୂରରେ ରଖି ପ୍ରକୃତିର ଚିର-ସୁନ୍ଦର, ଶାନ୍ତ ଶୀତଳ ସୌନ୍ଦର୍ଯ୍ୟରେ ଆଶ୍ରୟ ଖୋଜିଛନ୍ତି। ପ୍ରକୃତିର ରହସ୍ୟ ଘନ, ରୁଦ୍ର ସୁନ୍ଦର ଛବି ଓ ରସାଳ ସୌନ୍ଦର୍ଯ୍ୟ ରାଧାନାଥଙ୍କୁ ତାଙ୍କ ଜୀବନହାଟରୁ ଦୂରେଇ ନେଇ ନିଜର ରୂପପସରା ପାଖରେ ନତଜାନୁ କରାଇଛି। ରାଧାନାଥ ପ୍ରକୃତି ମଧ୍ୟରେ wardsworthଙ୍କ ପରି ନିଗୂଢ଼ ତତ୍ତ୍ୱର ସନ୍ଧାନ ନକରି କେବଳ Byronଙ୍କ ପରି ତା'ର ବାହ୍ୟ ସୌନ୍ଦର୍ଯ୍ୟରେ ଆତ୍ମବିସ୍ମୃତି ଲାଭ କରିଛନ୍ତି। କେବଳ ସେତିକି ନୁହେଁ Tennysonଙ୍କ ପରି ସେ ପ୍ରକୃତିକୁ ରସ ସନ୍ଧାନୀ ଦୃଷ୍ଟିରେ ଚିକିନିଖି ଆଲୋଚନାକରି ପ୍ରକୃତିର ବାହ୍ୟ ଓ ଅନ୍ତଃ ସୌନ୍ଦର୍ଯ୍ୟକୁ ଅତ୍ୟନ୍ତ ଚମତ୍କାର କଥାବଳୀରେ ସୁସଜ୍ଜିତ କରିଛନ୍ତି। ଉତ୍କଳୀୟ ଜନଜୀବନ ସହିତ ତାଙ୍କର ସେତେ ଏକାତ୍ମତା ନଥିଲା। ଉତ୍କଳ ପ୍ରକୃତି ସହିତ ସେ କିପରି ଓତ୍‌ପ୍ରୋତଭାବେ ଜଡ଼ିତ ଥିଲେ ସେ ବିଷୟରେ ସେ ନିଜେ

ଅଖିଳ ଚନ୍ଦ୍ର ପାଲିତଙ୍କ ନିକଟକୁ ଲେଖିଥିଲେ : "ମୁଁ କେବଳ ବହିଃ ସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଘେନି ବ୍ୟାପୃତ ଥିଲି। ପାର୍ବତୀୟ ପ୍ରଦେଶ ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ଆଳାପ ପରିଚୟର ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି। ମୋର ଓଡ଼ିଆ କାବ୍ୟଗୁଡ଼ିକ ଉତ୍କଳୀୟ ପ୍ରକୃତିର ପ୍ରତିକୃତି କହିଲେ ମଧ୍ୟ ଚଳେ !! (୮) ୭

ରାଧାନାଥ ଜଣେ ପ୍ରକୃତି ଉପାସକ କବି। ତାଙ୍କ ଗ୍ରନ୍ଥାବଳୀ ଆଲୋଚନା କଲେ ଦେଖାଯାଏ ପ୍ରକୃତି ହେଉଛି ତାଙ୍କ ସାହିତ୍ୟର ପୃଷ୍ଠଭୂମିକା (back-ground)। ରାଧାନାଥ ପ୍ରକୃତିର ଆଲୋଚନା ଓ ବର୍ଣ୍ଣନା ବିଭିନ୍ନ ଦିଗରୁ କରିଛନ୍ତି। ରାଧାନାଥଙ୍କ ପ୍ରକୃତି ମନୁଷ୍ୟର ଚିର ସହଚର, ଭାବୁକର ଚିତ୍ତ ଉଲ୍ଲାସକ, ଦର୍ଶକ ପକ୍ଷରେ ବିଶେଷ ଆନନ୍ଦର ଅକ୍ଷୟ ଭଣ୍ଡାର, ମାନବ ଜୀବନର ଏକ ନିଖୁଣ ପ୍ରତିବିମ୍ବ, ନୀତି ଶିକ୍ଷାଦାନରେ ଏକ ସୁମହାନ ଓ ଉପାଦେୟ ଗ୍ରନ୍ଥ। ରାଧାନାଥଙ୍କ ପ୍ରକୃତି ସଂପର୍କରେ ଆହୁରି ଏକ ବିଶେଷତ୍ୱ ଦେଖାଯାଏ – ତାହା ହେଉଛି ପ୍ରକୃତି ସଙ୍ଗେ ମାନବ ଜୀବନର ସମ୍ବନ୍ଧ। ତାଙ୍କ ମତରେ ପ୍ରକୃତି ହେଉଛି ମାନବ ଜୀବନର ଏକ ପ୍ରତିବିମ୍ବ। ବିମ୍ବ ଏବଂ ପ୍ରତିବିମ୍ବର ସାଦୃଶ୍ୟ ଯେପରି ନିତ୍ୟ ବିଦ୍ୟମାନ, ମାନବ ଜୀବନ ସଂଗେ ପ୍ରକୃତିର ସେହିପରି ସାମଞ୍ଜସ୍ୟଚିର-ବର୍ତ୍ତମାନ। ମାନବ ଜୀବନରେ ଯେପରି ବହୁବିଧ ଘଟନା ସଙ୍ଗଠିତ ହୁଏ, ପ୍ରକୃତି ରାଜ୍ୟରେ ମଧ୍ୟ ଠିକ୍ ସେହିପରି ହୋଇଥାଏ। ମାନବ ନିଜ ସମାଜରେ ଯେପରି ସୁରୂପ, କୁରୂପ, କ୍ଷୁଦ୍ର ବିଶାଳ, ଭଲମନ୍ଦ, ହେୟ ଉପାଦେୟ ଏପରି ବହୁ କଥା ଅନୁଭବ କରେ ପ୍ରକୃତିରେ ସେଗୁଡ଼ିକ ଅଭାବ ନାହିଁ, ପ୍ରକାରାନ୍ତରେ ମାନବ ଓ ପ୍ରକୃତି ପରସ୍ପର ସହିତ କିପରି ଘଟନା ଓ ବିଷୟବସ୍ତୁ ସୂତ୍ରରେ ତୁଳନାର ଯୋଗ୍ୟ ତାହା ପ୍ରମାଣ କରିବାକୁ ରାଧାନାଥ ସବୁବେଳେ ଚେଷ୍ଟା କରିଛନ୍ତି।

ରାଧାନାଥଙ୍କ ହସ୍ତରେ ପ୍ରକୃତି ଆତ୍ମାର କିପରି ନବୀକରଣ ଘଟିଥିଲା ସେ ବିଷୟରେ ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମାଲୋଚକ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ଲେଖିଛନ୍ତି : "ପାଶ୍ଚାତ୍ୟ ସାହିତ୍ୟର ରସ-ସୌନ୍ଦର୍ଯ୍ୟରେ ସତତ ନିମଜ୍ଜିତ, ତା'ର ସାହିତ୍ୟାଦର୍ଶରେ ଅନୁପ୍ରାଣିତ ରାଧାନାଥଙ୍କ କବି–ଚିତ୍ତ 'back to Nature'ର ମନ୍ତ୍ରରେ ଦୀକ୍ଷିତ ହୋଇ ପାରମ୍ପରିକ ନ୍ୟାୟରେ ଗତିକରୁଥିବା ପ୍ରକୃତିକୁ ଏକ ନୂତନ ରୂପରେ ଉପସ୍ଥାପନ କରିବାକୁ ଉଦ୍ୟମ କରିଥିଲା। ରାଜ ପ୍ରାସାଦର ପ୍ରଚୁର ସୁଖଭୋଗୀ ନାୟକନାୟିକାଙ୍କ ନିକଟରେ ନିଜ ଲେଖନୀକୁ ସମର୍ପଣ କରିଦେଇଥିଲେ ସୁଦ୍ଧା ବହିର୍ଜଗତର ନିତ୍ୟଦୃଷ୍ଟ ପ୍ରକୃତି ରାଣୀର ଅପାଶୋରା ଶୋଭା ସଂପଦରେ ସେ ଆତ୍ମହରା ହୋଇ ଉଠିଥିଲେ। ଆଦିରସ ବଦଳରେ ସେ ଯେ ନତଜାନୁ ହୋଇ ନାହାନ୍ତି ତା ନୁହେଁ; କିନ୍ତୁ ପ୍ରକୃତିର ପାଦ-ପଦ୍ମରେ ସେ ଯେଉଁ ଶତ ସମ୍ଭାରର ଆୟୋଜନ କରିଛନ୍ତି ତା'ର ବର୍ଣ୍ଣ-ବୈଚିତ୍ର୍ୟ ଯେପରି ମୁଗ୍ଧକର ସେମିତି ଅନବଦ୍ୟ ମଧ୍ୟ। "ଯାମଳ

ଭୂଧର ନିଭପୟୋଧର ମରଦନିଆ ଚାକର''ରେ ଭୂଧର କବିଙ୍କ ଆଖିରେ ଏକ ଜଡ଼ ଉପମାନ ଥିଲା; କିନ୍ତୁ 'ମହେନ୍ଦ୍ର ଗିରି' କବିଙ୍କୁ କୁହାଇଲା – ''ଦୃଷ୍ଟି ମାତ୍ରକରେ ସ୍ତବ୍ଧ ହୃଦୟ,ସତ୍ତାର ସ୍ୱାତନ୍ତ୍ର୍ୟ କରିଦିଏ ଲୟ।''

ପୁରସ୍କରିଣୀ ନାରୀ ସୌନ୍ଦର୍ଯ୍ୟ-ବର୍ଣ୍ଣନାରେ ସାଧାରଣ ଉପମାନ ନ କରି ରାଧାନାଥ 'ଚିଲିକା'କୁ ଏକ ଦେବୀରୂପେ ଗ୍ରହଣ କଲେ। ପଞ୍ଚକୁସୁମରେ ପଞ୍ଚବାଣ ତିଆରି ନକରି ସେ ପ୍ରକୃତିର ଅନବଦ୍ୟ ଶୋଭା ସମ୍ଭାରରୂପେ ସେମାନଙ୍କୁ ସ୍ୱୀକାର କଲେ। କେଶ-ବିନ୍ୟାସ ବର୍ଣ୍ଣନାବେଳେ କାଳିନ୍ଦୀକୁ ଚିକୁର ସହିତ ତୁଳନା ନକରି ସେ ମହାନଦୀର ଗମ୍ଭୀର ଝର୍ଝର ନିନାଦରେ ବିମୁଗ୍ଧ ହୋଇପଡ଼ିଥିଲେ।

ତାଙ୍କରି ଭାଷାରେ କୁହାଯାଇପାରେ :

''ଶିଳା-ଶଯ୍ୟା-ପ୍ରବାହିନୀ ଶୈଳ-ସ୍ରୋତସ୍ୱତୀ
ଉପଳେ ସ୍ଖଳିତ ହୋଇ ଯାର ବାରିଧାରା
ମିଶାଏ ଝର୍ଝର ରବ ଘୋର ଝିଲ୍ଲିରବେ;
ପ୍ରପାତ-ମଣ୍ଡିତ ଇନ୍ଦ୍ର-କୋଦଣ୍ଡ-କିରୀଟେ,
ବାତେ ଫରଫର ରୂପାଜରିର ପାଛୁଡ଼ା
ପରାୟେ ଯା ଶୋଭେ ପର୍ଣ୍ଣଶ୍ୟାମ ଶୈଳ ଦେହେ,
ଭୃଗୁରୁ ଭୃଗୁକୁ ଡେଇଁ ଗମ୍ଭୀର ଗର୍ଜନେ;।''

ପ୍ରକୃତି ବର୍ଣ୍ଣନାର ଏ ନୂତନ ଆଭିମୁଖ୍ୟ, ପ୍ରକୃତି-ସୌନ୍ଦର୍ଯ୍ୟ ପରିବେଷଣର ଏ ବୈଚିତ୍ର୍ୟ ସଂପୂର୍ଣ୍ଣ ଆଧୁନିକ ଯୁଗର-ଓଡ଼ିଆ ସାହିତ୍ୟରେ ରାଧାନାଥହିଁ ଏଇ ଆଭିମୁଖ୍ୟ ଓ ବୈଚିତ୍ର୍ୟ ସଂପାଦନର ପ୍ରଥମ ସ୍ରଷ୍ଟା। ପ୍ରକୃତି ଆତ୍ମାର ଏ ନବୀକରଣ ରାଧାନାଥଙ୍କ ସର୍ବଶ୍ରେଷ୍ଠ ଗୌରବ।'' (୯)

ନାରୀ ସୌନ୍ଦର୍ଯ୍ୟକୁ ମଧ୍ୟଯୁଗୀୟ କବିମାନେ ପଞ୍ଚେନ୍ଦ୍ରିୟ ସାହାଯ୍ୟରେ ଅନୁଭବ କରି ତାଙ୍କ କାବ୍ୟ କବିତାଦିକୁ ବିଶେଷ ରସାଣିତ କଲାଭଳି ପ୍ରକୃତିର ବହିରାବରଣକୁ ପଞ୍ଚେନ୍ଦ୍ରିୟ ସାହାଯ୍ୟରେ ଉପଭୋଗ କରି ରାଧାନାଥ ସେ ସବୁକୁ ତାଙ୍କ କାବ୍ୟ କବିତାରେ ବିଶେଷ ବିମଣ୍ଡିତ କରିଛନ୍ତି। ତାଙ୍କ ଦୃଷ୍ଟିରେ ପ୍ରକୃତି spiritualised ସୌନ୍ଦର୍ଯ୍ୟର ପ୍ରତୀକ ନୁହେଁ। ତାଙ୍କର କାବ୍ୟ-ଗଠନ ପରିପାଟୀ ଅନୁଧ୍ୟାନ କଲେ ସାଧାରଣତଃ ସେଥିରୁ ତିନୋଟି ଉପାଦାନର ଅପୂର୍ବ ସମ୍ମିଶ୍ରଣ ଦେଖିବାକୁ ମିଳିଥାଏ। ସେଗୁଡ଼ିକ ହେଲା ଦେଶର ପାରଂପରିକ ଐତିହ୍ୟର ସୂଚନା, ଉତ୍କଳର ଅପାସୋରା ପ୍ରକୃତି ସଂପଦ ଏବଂ କାବ୍ୟଗତ ମାନବ ଚରିତ୍ର। ରାଧାନାଥଙ୍କ ପ୍ରକୃତି ପ୍ରୀତି ଥିଲା ଅପରିସୀମ। ସେ ପ୍ରକୃତି ପ୍ରେମୀ କବି ଥିବାରୁ ତାଙ୍କ ଜୀବନପରିଧିରେ ପ୍ରକୃତି କିପରି ସର୍ବଶ୍ରେଷ୍ଠ ଆସନ ଅଧିକାର କରିଥିଲା ରାଧାନାଥଙ୍କ ଜୀବନୀର ନିମ୍ନ ଅଂଶଟି ତା'ର ପ୍ରକୃଷ୍ଟ ପ୍ରମାଣ ଦେଇଥାଏ :- ''ନିର୍ଜନ ସ୍ଥାନ ପାଇଲେ ସେ ବନ୍ଧୁ ସମାଗମଠାରୁ ଅଧିକ ସୁଖ ମଣୁଥିଲେ। ଶ୍ମଶାନ ରାଧାନାଥଙ୍କର ଗୋଟିଏ ପ୍ରିୟ

ସ୍ଥାନଥିଲା । ବାଲ୍ୟକାଳରୁ "ମାତୃଶ୍ମଶାନ" ଦର୍ଶନପାଇଁ ତାଙ୍କର ଯେଉଁ ଅନୁରାଗଥିଲା, ତାହା ବୟୋବୃଦ୍ଧିକ୍ରମେ ଆହୁରି ବର୍ଦ୍ଧିତ ହୋଇଥିଲା । ବାଲେଶ୍ୱରରେ ଥିବା ସମୟରେ ସେ ବଳଙ୍ଗକୂଳସ୍ଥିତ "ଉଷାବର୍ଣ୍ଣିତ ମହାଶ୍ମଶାନ" ଦେଖିବାକୁ ଘନଘନ ଯାଉଥିଲେ। ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରାଧାନାଥ ମାନବର ଅନ୍ତିମ ଯାତ୍ରାର ସ୍ଥାନ ଏହି ଶ୍ମଶାନକୁ ତୀର୍ଥପ୍ରାୟ ମଣି ବିଜ୍ଞ ସୁଶିଷ୍ୟ ଭାବରେ ସର୍ବସମୟରେ ଶ୍ମଶାନ ନିକଟରେ ଉପସ୍ଥିତ ହେଉଥିଲେ ଏବଂ ବିଶୁଦ୍ଧ ଭାବରେ କିଛିକ୍ଷଣ ବସି ଧ୍ୟାନରେ ଉପଯୁକ୍ତ ଶିକ୍ଷାଲାଭ କରୁଥିଲେ। ସଂସାରରେ ସମସ୍ତ ନଶ୍ୱର; ମାନବର ଗର୍ବ, ଦମ୍ଭ, ଅଭିମାନ କ୍ଷଣକେ ଜଳବୁଦ୍‌ବୁଦ୍ ପ୍ରାୟ କେଉଁଆଡ଼େ ଲୀନ ହୋଇଯିବ; ମନୁଷ୍ୟ ମନୁଷ୍ୟ ମଧ୍ୟରେ ତିଳତାଳର ଭେଦ, ସୃଷ୍ଟି ଚିରଦିନ ରହିବନାହିଁ; ଦିନେ ସମସ୍ତେ ସର୍ବପ୍ରକାର ଭେଦ ପରିହାର କରି ଏକତ୍ର ଆସନ ଲାଭ କରିବେ। ରାଧାନାଥ ଶ୍ମଶାନଠାରୁ ଏହି ମହାର୍ଘ ଉପଦେଶ ଲାଭ କରିଥିଲେ ଏବଂ ତାହା ଜଗତକୁ ଦେଖାଇଥିଲେ। ଶ୍ମଶାନହିଁ ତାଙ୍କ କବିତ୍ୱର ଦ୍ୱାର ଉନ୍ମୁକ୍ତ କରିଦେଇଥିଲା।" (୧୦)

ପ୍ରତିଷ୍ଠିତ ପ୍ରାବନ୍ଧିକ, ସୁସମାଲୋଚକ ପ୍ରଫେସର ଡକ୍ଟର ଗଙ୍ଗାଧର ବଳ ଆଧୁନିକ ଯୁଗର ସ୍ରଷ୍ଟା ପ୍ରକୃତି କବି ରାଧାନାଥଙ୍କ ବୈଶିଷ୍ଟ୍ୟ ସମ୍ବନ୍ଧରେ ଆଲୋକପାତ କରିବାକୁ ଯାଇ ଲେଖିଛନ୍ତି: "ଆଧୁନିକ ଓଡ଼ିଆ କାବ୍ୟ କ୍ଷେତ୍ରରେ ପ୍ରକୃତି ରାଧାନାଥଙ୍କ ହାତରେ ନବଜନ୍ମ ଲାଭ କରିଛି। ପ୍ରକୃତି ତାର ବୈଚିତ୍ର୍ୟମୟୀ ରୂପ ବିଭବରେ କବିଙ୍କର ସାରସ୍ୱତ ଚକ୍ଷୁକୁ ଉନ୍ମୀଳିତ କରି ପାରିଛି ଏବଂ କାବ୍ୟ ବର୍ଣ୍ଣିତ ନାୟକ ନାୟିକାଙ୍କ ପରି ନିଜକୁ ଅପରିହାର୍ଯ୍ୟ କରି ନିଜର ସ୍ୱତନ୍ତ୍ର ରୂପ ସତ୍ତାରେ ମହିମାନ୍ୱିତ ହୋଇ ଉଠିଛି। କାବ୍ୟ ସୃଷ୍ଟିରେ ରାଧାନାଥ ଗତାନୁଗତିକାର ବ୍ୟତିକ୍ରମ ଘଟେଇ ବିଷୟ ବସ୍ତୁ ଆହରଣ, ଚରିତ୍ର ପରିକଳ୍ପନା, ବର୍ଣ୍ଣନା, ଛନ୍ଦ, ରସ, ଅଳଙ୍କାର ଓ ଶୈଳୀ ପ୍ରଭୃତିରେ ଯେଉଁ ନୂତନତ୍ୱର ସଙ୍କେତ ଦେଇଛନ୍ତି ତନ୍ମଧ୍ୟରୁ ପ୍ରକୃତି ରୂପାୟନରେ ତାଙ୍କର ଅଭିନବ ଦୃଷ୍ଟିଭଙ୍ଗୀ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ। ରାଧାନାଥଙ୍କ ପ୍ରତିବର୍ତ୍ତନ ମୂଳରେ ଇଂରାଜୀ ସାହିତ୍ୟର ରୋମାଣ୍ଟିକ୍ କାବ୍ୟକବିତା, ଗ୍ରୀକ୍ ପୁରାଣର କଥାବସ୍ତୁ ଏବଂ ଅପର ପକ୍ଷରେ ଭାସ, ଭାଣ, କାଳିଦାସ, ଦଣ୍ଡୀ, ବାଣଭଟ୍ଟ ଓ ଭବଭୂତିଙ୍କର ଅମର ସୃଷ୍ଟି ରହିଥିଲେ ମଧ୍ୟ ରଚନା ଗୁଡ଼ିକରେ ତାଙ୍କର ପ୍ରତିଭା, ମନନଶୀଳତା, ଆରୋପ ଓ ସମୀକରଣରେ ଅପୂର୍ବ କଳାପାଟବତା, ପୁଣି ତାଙ୍କର ଗଭୀର ଅର୍ନ୍ତଦୃଷ୍ଟିର ମୂଲ୍ୟ କିଛି କମ୍ ନୁହେଁ। ତାଙ୍କର କାବ୍ୟଗୁଡ଼ିକରୁ କଥାବସ୍ତୁ ବାଦ୍ ଦେଲେ ଅନ୍ୟ ଯେଉଁ ମୁଖ୍ୟ ବିଭାବଟି ପାଠକର ଦୃଷ୍ଟି ଆକର୍ଷଣ କରେ ସେଇଟି ହେଉଛି ପ୍ରକୃତି। ଏ ପ୍ରକୃତି ପୁଣି କୌଣସି ଅଜଣା ଅଶୁଣା ସ୍ଥାନର ପ୍ରକୃତିନୁହେଁ - ଚିରପରିଚିତ ଆମରି ଉତ୍କଳର ପ୍ରକୃତି। ଉତ୍କଳର ନଦୀ, ତଡ଼ାଗ, ହ୍ରଦ, ପର୍ବତ, ଆକାଶ, ସାଗର, ବୃକ୍ଷଲତା, ପଶୁପକ୍ଷୀ, ଉତ୍କଳ ଆକାଶର ସୂର୍ଯ୍ୟଚନ୍ଦ୍ର, ପ୍ରଭାତ ଓ ପ୍ରଦୋଷ;

ଉତ୍କଳର ଋତୁଚକ୍ର ଏପରିକି ଦୃଷ୍ଟିର ଅଗୋଚରରେ ଅବହେଳିତ ଅବସ୍ଥାରେ ରହିଥିବା ପ୍ରତ୍ୟେକଟି ବୃକ୍ଷଲତା ଓ ପଶୁପକ୍ଷୀ କବିଙ୍କ ଲେଖନୀର ଯାଦୁକରୀ ସ୍ପର୍ଶରେ ଯେପରି ଜୀବନ୍ତ ହୋଇ ଉଠିଛନ୍ତି, ଓଡ଼ିଆ ସାହିତ୍ୟରେ ବାସ୍ତବିକ ତାହା ବିଲକ୍ଷଣ ମନେହୁଏ। ରାଧାନାଥଙ୍କର ପ୍ରକୃତିରେ ଓଡ଼ିଶାର ଭୌଗଳିକ ପ୍ରକୃତିର ସଂକେତ ଥିଲେ ମଧ୍ୟ ତାହା ତଥ୍ୟପୂର୍ଣ୍ଣ ଭୂଗୋଳ ନହୋଇ ହୋଇଛି ରସପୂର୍ଣ୍ଣ କାବ୍ୟ। ଉତ୍କଳର ପ୍ରକୃତିପ୍ରତି ତାଙ୍କର ଏ ନୈସର୍ଗିକ ଅନୁରାଗ ମୂଳରେ ରହିଛି ତାଙ୍କର ଦେଶପ୍ରୀତି, ସୌନ୍ଦର୍ଯ୍ୟ ପିପାସା ଓ ଜାଗ୍ରତଦୃଷ୍ଟି।'' (୧୧)

ରାଧାନାଥଙ୍କ କାବ୍ୟ କବିତାଦି ସୃଷ୍ଟି ଗୌରବକୁ ବିଶଦ ଭାବରେ ବ୍ୟାଖ୍ୟାର ପରିସରଭୁକ୍ତ କଲେ ସେଥିରୁ କେତେଗୁଡ଼ିଏ ବିଶେଷତ୍ୱ ଉପଲବ୍ଧି କରିବାର ସୁଯୋଗ ମିଳିଥାଏ। ସେଗୁଡ଼ିକ ହେଲା ବାସ୍ତବତାର (Realistic)ଭିତ୍ତିରେ ପ୍ରକୃତିର ସ୍ୱଭାବ ସୁନ୍ଦର- ପ୍ରତ୍ୟକ୍ଷ ବର୍ଣ୍ଣନା ବା ସ୍ୱଭାବୋକ୍ତିରେ ବହିଃ ପ୍ରକୃତିର ମନୋଜ୍ଞ ଆଲେଖ୍ୟ। ଏ ସବୁରୁ ଜ୍ୱଳନ୍ତ ଦୃଷ୍ଟାନ୍ତ ତାଙ୍କର ଚିଲିକା, ମହାଯାତ୍ରା, କେଦାରଗୌରୀ ଏବଂ ଯଯାତିକେଶରୀରେ ଦେଖିବାକୁ ମିଳେ। ରାଧାନାଥଙ୍କ ପ୍ରକୃତି ବର୍ଣ୍ଣନାରେ ତାଙ୍କର ମାତୃଭୂମି ପ୍ରତି କିପରି ଅଗାଧ ପ୍ରେମ, ଅତୁଟନୀୟ ଅନୁରାଗ ଓ ତୀବ୍ର ଜାତୀୟତାବୋଧ ଭରି ରହିଥିଲା ସେଗୁଡ଼ିକର ମୂକସାକ୍ଷୀ ହେଉଛି ତାଙ୍କର କାବ୍ୟକୃତି ଚିଲିକା, ଉଷା, ମହାଯାତ୍ରା, ପାର୍ବତୀ, ଚନ୍ଦ୍ରଭାଗା, କେଦାରଗୌରୀ ଓ ନନ୍ଦିକେଶ୍ୱରୀ ଇତ୍ୟାଦି। ପ୍ରକୃତିପ୍ରେମୀ ରାଧାନାଥ ପ୍ରକୃତି କୋଳରେ ନିଜକୁ ମଜ୍ଜାଇ ରଖି ପ୍ରକୃତି ସହିତ ମାନବର ସଂପର୍କ କିପରି ଅତ୍ୟନ୍ତ ନିବିଡ଼, ଅବିଚ୍ଛିନ୍ନ ଏବଂ ପ୍ରକୃତି ଉପରେ ମାନବିକତା ବା ବ୍ୟକ୍ତିତ୍ୱ କିପରି ଆରୋପ କରାଯାଇପାରେ ସେ ସବୁର ନିଖୁଣ ଚିତ୍ର ତାଙ୍କ 'ଚିଲିକା' ଏବଂ 'ଚନ୍ଦ୍ରଭାଗା' ଇତ୍ୟାଦିରେ ବର୍ଣ୍ଣନା କରିଛନ୍ତି। ଉପର୍ଯ୍ୟୁକ୍ତ ବୈଶିଷ୍ଟ୍ୟ ସବୁ ବ୍ୟତୀତ ତାଙ୍କର ପ୍ରକୃତି ଚିତ୍ରଣରେ ପାଠକପାଠିକା ମହାଭାବ ଓ ଦ୍ୱୈତଭାବର ସଂକେତ, ଉତ୍କଳ ଗୌରବାବହ ସ୍ମୃତିର ଅଶେଷ ଜୀବନ୍ତ ଆଲେଖ୍ୟ, ଚରିତ୍ର ଗୁଡ଼ିକ ମାଧ୍ୟମରେ ରୂପଗୁଣ, କ୍ରିୟା କଳାପ ଓ ମାନସିକ ଅବସ୍ଥା ସହିତ ସାମଞ୍ଜସ୍ୟ ରକ୍ଷା କରି ଘଟଣା ବସ୍ତୁର ପରିବେଶ କଳ୍ପନା (Setting) ଓ ସର୍ବଶେଷରେ ପ୍ରକୃତିରୂପ-ପିପାସୁ ସୌନ୍ଦର୍ଯ୍ୟଦ୍ରଷ୍ଟା କବି ରାଧାନାଥଙ୍କର ଦାର୍ଶନିକ ବ୍ୟକ୍ତିତ୍ୱର ସନ୍ଧାନ ସୁଚାରୁରୂପେ ଉପଲବ୍ଧି କରିବାକୁ ସକ୍ଷମ ହୋଇଥାନ୍ତି।

ପ୍ରକୃତିପ୍ରେମୀ ରାଧାନାଥଙ୍କ କବି ପ୍ରତିଭା ଓଡ଼ିଶାର ଅଗଣିତ ପାଠକ ପାଠିକାଙ୍କ ହୃଦୟ କନ୍ଦରକୁ ବିଶେଷ ଭାବରେ ଆକୃଷ୍ଟ କରି ପାରିଥିବାରୁ ପ୍ରତିଷ୍ଠିତ କବି, ପ୍ରାବନ୍ଧିକ, ସମାଲୋଚକ, ଡକ୍ଟର କୁଞ୍ଜବିହାରୀ ଦାଶ ରାଧାନାଥଙ୍କ କାବ୍ୟ କୃତିରେ ଅତ୍ୟନ୍ତ ପ୍ରୀତ ହୋଇ ରାଧାନାଥଙ୍କୁ ଜଣେ ସଫଳ ପ୍ରକୃତି ପ୍ରେମୀ କବି ହିସାବରେ ସମ୍ମାନ ପ୍ରଦର୍ଶନ କରିବାକୁ ଇଚ୍ଛାକରି ତାଙ୍କ ସମ୍ବନ୍ଧରେ ଲେଖିଛନ୍ତି : ''ବାସ୍ତବିକ୍ କବି ରଧାନାଥ ଓ ଉତ୍କଳ ପ୍ରକୃତି ଏକାତ୍ମ। ସେ ପ୍ରକୃତିର ଚିହ୍ନରାଗ୍ରାହକ, ରସିକ।

ସେ ସହରରେ ଶିକ୍ଷିତ, ଆଧୁନିକ ସଂସ୍କୃତିରେ ଦୀକ୍ଷିତ, କିନ୍ତୁ ପ୍ରକୃତି ପ୍ରେମରେ ଆଦିମ। ସଂସାରୀ ସଙ୍ଗରେ ନୁହେଁ, ରୂପବନ୍ତ ସଂସାର ସହିତ ସଙ୍ଗୀ ହେବାଲାଗି ତାଙ୍କ ମନ ଚିରବ୍ୟାକୁଳ, ଜୀବନର ହସ୍ୱଖେଳ ନୁହେଁ, ପ୍ରକୃତିର ବର୍ଣ୍ଣାଢ୍ୟ ବିଭବ, ରସାଳଶ୍ରୀ ତାଙ୍କ ଚିତ୍ତହରଣ କରିବାକୁ ସମର୍ଥ ହୋଇଅଛି। ରାଧାନାଥ ଜୀବନ ଶିଳ୍ପୀ ନୁହନ୍ତି, ପ୍ରକୃତି ଦରବାରର କବି। ରାଧାନାଥ ଲୋକ ସମାଜ ସହିତ ମିଶିପାରିନାହାନ୍ତି, ସଦା ନିଃସଙ୍ଗ; ତହିଁରେ ପ୍ରକୃତି ତାଙ୍କର ସଖୀ, ପୁଣି ଦାର୍ଶନିକ ଗୁରୁ। 'କଷ୍ଟ ସହି ପରକଷ୍ଟ ସଂହାରକ; ସତ୍ୟ ଧର୍ମନ୍ୟାୟର ସପକ୍ଷ, ଅତ୍ୟାଚାରୀର ଦଣ୍ଡଦାତା। ରାଧାନାଥଙ୍କ ପ୍ରକୃତି ପ୍ରେମ ସ୍ୱଦେଶ ପ୍ରେମର ଅନ୍ତର୍ଭୁକ୍ତ। ରାଧାନାଥ ହେଲେ ପ୍ରତ୍ୟୁଷର ସୁବର୍ଣ୍ଣ ସଭାର ବୈତାଳିକ, ସଞ୍ଚରଣ ଶୀଳ ଗୋଧୂଳିର ଚାରଣ, ସେ ଅନାମିକା ପର୍ବତକୁ ନାମ ଦେଲେ, ଅନାମଧେୟ ଶିଳାଚୟକୁ ଯଶଦେଲେ, ପଙ୍କପୂର୍ଣ୍ଣ ଦୀର୍ଘିକାକୁ କଲେ ମହିମାନ୍ୱିତ, ନଦୀକୁ କଲେ ତପଃ ପ୍ରବାହରେ ଶୁଚିମନ୍ତ। ବହୁ ଅପରିଚିତ ବୃକ୍ଷଲତା, ଅଖ୍ୟାତ ପକ୍ଷୀ ପ୍ରତିଷ୍ଠା ପାଇଲେ, ଭାଷା ହେଲା ବହୁ ସ୍ମୃତିରେ ମୁଖର, ଶ୍ରାବଣର ଅନ୍ଧକାର କୁରରୀ ରୋଦନରେ ଗଭୀରତର; ସାନ୍ଧ୍ୟ ଜ୍ୟୋତ୍ସ୍ନାରେ ଫୁଟି ଦିଶିଲା ଅର୍ଦ୍ଧନାରୀଶ୍ୱର ଛବି; ବହୁ ପୁରାଣ ଇତିହାସ କିମ୍ବଦନ୍ତୀର ଭଣ୍ଡାର, ପ୍ରକୃତିର ଗନ୍ତାଘର ଫେଡ଼ି ରାଧାନାଥ ଗୋଟି ଗୋଟି କରି ସଜେଇ ଦେଲେ, ନିର୍ମାଣ କଲେ ଏକ ନୂତନ ଚିତ୍ରଶାଳା। ଉତ୍କଳ ପ୍ରକୃତିକି ପରିଚିତ, ପ୍ରତିଷ୍ଠିତ କରିବା ରାଧାନାଥଙ୍କ କାବ୍ୟ ସାଧନାର ଗୋଟିଏ ପ୍ରଧାନ ଲକ୍ଷ୍ୟଥିଲା। ତାଙ୍କ ପ୍ରକୃତି ପ୍ରେମର ମୂଳସୂତ୍ର ତଳ ପଂକ୍ତିରେ ସ୍ପଷ୍ଟ।

"କ୍ଷୁଦ୍ର ସିପ୍ରା ସ୍ରୋତ ବିଖ୍ୟାତ ଜଗତେ,
ମହାନଦୀ ନାମ ରହିଲା ଗୁପତେ।
ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ,
ମହାଶୈଳ ରୂପେ ଲୋକେ ପୂଜା ପାଏ।
ସ୍ୱଭାବେ ଗିରୀନ୍ଦ୍ର ହୋଇ ମେଘାସନ,
ଲଭିନାହିଁ ଗିରି ସମାଜେ ଆସନ....ଇତ୍ୟାଦି"

ସ୍କଟ୍ ଯେପରି ସ୍କଟ୍‌ଲାଣ୍ଡ ମାଳଭୂମିର, ରାଧାନାଥ ସେହିପରି ପାର୍ବତୀୟ ଉତ୍କଳର ଚିତ୍ର ଦେଇଛନ୍ତି। ସେ ବହିଃ ରୂପରଙ୍ଗ ଭେଦକରି ରସରେ ପହଞ୍ଚି ପାରିଛନ୍ତି। ଓ୍ୱାର୍ଡ୍‌ସ୍-ଓ୍ୱାର୍ଥଙ୍କ ପରି ସେ ପ୍ରକୃତିକି ଆତ୍ମା ସମନ୍ୱିତ କରିଛନ୍ତି, ସେ ଆତ୍ମା ନିଷ୍ପୃହ ବା ଉଦାସୀନ ନୁହେଁ, କ୍ରିୟାଶୀଳ, କର୍ମତତ୍ପର, ଶକ୍ତିମନ୍ତ, ଦୁର୍ଦ୍ଧର୍ଷ। ସେ ବିପଦରେ ଦୋସର, ସମବେଦନଶୀଳ। ସମବେଦନା ମୌଖିକ ନୁହେଁ, କର୍ମରେ ପ୍ରାଣବନ୍ତ। ରାଧାନାଥଙ୍କ ପ୍ରକୃତି ଚିନ୍ତା ଭାରତୀୟ ଦର୍ଶନାନୁସାରୀ। ରାଧାନାଥଙ୍କ ପ୍ରକୃତି ସ୍ପଷ୍ଟତର ଇଙ୍ଗିତ ତାଙ୍କ ଚିତ୍ରଣରେ ବ୍ୟକ୍ତ। ପ୍ରକୃତିରେ ଯେଉଁ ଦାର୍ଶନିକ ବାଣୀ ଅଛି ବୈପ୍ଳବିକ କରଣୀରେ ତାହା ଚମକପ୍ରଦ ହୋଇଅଛି। ପ୍ରକୃତି ଇତିହାସର ମୂକସାକ୍ଷୀ ନୁହେଁ,

ଏକ ରଙ୍ଗଭୂମି ମାତ୍ର ନୁହେଁ। ଅଭିନୟରେ ତା'ର ସ୍ୱତନ୍ତ୍ର ଭୂମିକା ଅଛି। ସେ ମାନବ ଜୀବନର ଗତିମୁଖ ବଦଳାଇ ଦେଇପାରେ; କିନ୍ତୁ ଖିଆଲୀ ନୁହେଁ, ତା'ର ବିଚାର ବୁଦ୍ଧି ଅଛି। ସେ କ୍ଷମତାର ଅପବ୍ୟବହାର କରେନାହିଁ। ସେ କଲ୍ୟାଣମୟୀ ପାର୍ବତୀ, ଯଦିବା ଦୁରନ୍ତ ମହିଷାସୁର ପ୍ରତି ଦୁର୍ଗା। ଥୋମାସ୍ ହାର୍ଡ଼ିଙ୍କ ପ୍ରକୃତି ପରି ତାଙ୍କ ପ୍ରକୃତି ନିଷ୍ଠୁର ନିୟତି ନୁହେଁ, ସେ ମନୁଷ୍ୟର ଭାଗ୍ୟ ନିୟନ୍ତ୍ରଣ କରେନାହିଁ, ପଦେପଦେ ପ୍ରତିକୂଳାଚରଣ କରେନାହିଁ, ମନୁଷ୍ୟ ତା' କବଳରୁ ଆତ୍ମ ଚେଷ୍ଟାରେ ଉଦ୍ଧାର ପାଏ। କବିଙ୍କ ଗ୍ରନ୍ଥାବଳୀରେ ଜୀବନର ଯାହାକିଛି ଅଭିବ୍ୟକ୍ତି ଘଟିଛି, ତାଙ୍କୁ ଅମୃତ ସଞ୍ଜୀବନୀ ଦେଇ ବଞ୍ଚାଇଛି ପ୍ରକୃତି। ପ୍ରକୃତି ଚିତ୍ରଣ ବିନା ତାଙ୍କ କାବ୍ୟ ଏକ ମଧୁହୀନ ମଧୁଚକ୍ର; ଏକ ମୃତ ନଦୀ।''(୧୨)

ବିଶ୍ୱ ସାହିତ୍ୟ ଦରବାରରେ ପ୍ରକୃତିକୁ ଅଭିନନ୍ଦନ ଜଣାଇ ମାନବ ଜୀବନ ସହିତ ତା'ର ନିବିଡ଼ ସଂପର୍କ ପ୍ରତିଷ୍ଠା କରିବା ଦିଗରେ ଯେପରି ଇଂରେଜ କବି wordsworth ଏବଂ ଭିକ୍ଟୋରିଆ ଯୁଗର କବି Tennyson ଅଗ୍ରଗଣ୍ୟ ଓଡ଼ିଆ ସାହିତ୍ୟର ସୁଦୀର୍ଘ ପରମ୍ପରା ଭିତରେ ପ୍ରକୃତି ରୂପାୟନରେ ସେହିଭଳି କବି ରାଧାନାଥଙ୍କ ପ୍ରଚେଷ୍ଟା ବିଶେଷ ଅଭିନନ୍ଦନୀୟ। ସେ 'ଯଯାତିକେଶରୀ' କାବ୍ୟର ପ୍ରଥମ ସର୍ଗରେ ପ୍ରାକୃତିକ ଶୋଭା ସନ୍ଦର୍ଶନ କରି ଯାଜପୁରର ପ୍ରଧାନ ଦେବତା ବରାହନାଥଙ୍କର ପ୍ରାଧାନ୍ୟ ଆରୋପ କଲାବେଳେ କ୍ଷୁଦ୍ର କାଇଜଙ୍ଗ ଜଙ୍ଗଲର ଛୁରିଅନା ବଣ ବିଷୟରେ ବିସ୍ମିତ ନ ହୋଇ ଏହାର ନୈସର୍ଗିକ ସୌନ୍ଦର୍ଯ୍ୟକୁ ଉପଲବ୍ଧି କରି ଭାବ ବିହ୍ବଳିତ ହୋଇ ଲେଖିଛନ୍ତି :—

''ଅସଙ୍ଗତ ଯେବେ ନୁହନ୍ତା ମହତେ
କ୍ଷୁଦ୍ରର ତୁଳା ପ୍ରସଙ୍ଗ
ଛୁରିଅନା-ପୁଷ୍ପ ପରାଗ-ପିଷଙ୍ଗ
ଏକମାତ୍ର କାଇଜଙ୍ଗ।'' (୧୩)

ସେ ପ୍ରକୃତି କବି ହୋଇଥିବାରୁ ତାଙ୍କର 'କେଦାରଗୌରୀ', 'ଚନ୍ଦ୍ରଭାଗା', 'ନନ୍ଦିକେଶ୍ୱରୀ', 'ଉଷା', 'ପାର୍ବତୀ', 'ମହାଯାତ୍ରା', 'ତୁଳସୀ ସ୍ତବକ' ଓ 'ଯଯାତିକେଶରୀ' ପ୍ରଭୃତି ସାହିତ୍ୟକୃତି ଯଦିଓ ପ୍ରକୃତି ଚିତ୍ରଣର ଗୋଟିଏ ଗୋଟିଏ ଗନ୍ତାଘର ତଥାପି ଅତୁଳ ପ୍ରାକୃତିକ ଦୃଶ୍ୟ ବିଭବରେ ବିମୁଗ୍ଧ ରାଧାନାଥଙ୍କ ପ୍ରକୃତି-ସର୍ବସ୍ୱ ଖଣ୍ଡକାବ୍ୟ 'ଚିଲିକା' ହେଉଛି ସେହିସବୁ ଗନ୍ତାଘରର ଅପରୂପ କୋଣାର୍କ। ତ୍ରିଶକ୍ତିର ଅଧିକାରୀ ରାଧାନାଥ ଚିଲିକା ନିର୍ବାଚନବେଳେ ଏହାର ସୌନ୍ଦର୍ଯ୍ୟ ଉପରେ ଅନେକ ସ୍ଥଳରେ ଅତିଶୟ ଗୁରୁତ୍ୱ ଆରୋପ କରିଛନ୍ତି। ରାଧାନାଥଙ୍କ ଦୃଷ୍ଟିରେ ଉତ୍କଳକୁ ଲକ୍ଷ୍ମୀ ଏବଂ ଚିଲିକାକୁ ଏହାର ବିଳାସ ଦୀର୍ଘିକାରୂପେ ବର୍ଣ୍ଣନା କରାଯାଉଛି। କେବଳ ସେତିକି ନୁହେଁ କବିଙ୍କ ଦୃଷ୍ଟିରେ ଚିଲିକା ହେଉଛି ଉତ୍କଳର ଚାରୁ ଅଳଙ୍କାର, ଶୋଭାର ଭଣ୍ଡାର ଏବଂ ଛବିଳ ଉତ୍କଳରେ ଏହାର ଛବି ଅତୁଳନୀୟ। ଚିଲିକାର ଶୋଭା ସଂପଦ ଉପରେ ତାଙ୍କର ନିବିଡ଼ ଘନିଷ୍ଠତା ଓ ଆତ୍ମୀୟତା ଥିବାରୁ ସେ ଚିଲିକାକୁ ସୁମଧୁର ଦ୍ୱୈତଭାବର ଦ୍ୟୋତକ ବୋଲି କହିଛନ୍ତି। କବିଙ୍କ ଦୃଷ୍ଟିରେ ଚିଲିକା ହେଉଛି ପ୍ରକୃତିର ଆଲେଖ୍ୟଶାଳିକା, ସର୍ବଶୋଭା- ସୀମନ୍ତର ଟୀକା ଯେଉଁ ଶୋଭାର

(୧୩) 'ଯଯାତିକେଶରୀ' କାବ୍ୟର ପ୍ରଥମ ସର୍ଗର ୧୨୨ ପୃଷ୍ଠାରେ କବି ଏ ବଣର ପ୍ରାଧାନ୍ୟ ବିଷୟରେ ଲେଖିଛନ୍ତି - କାଇଜଙ୍ଗ - ଏ ବନ କଟକରୁ ୬ କ୍ରୋଶ ଦୂରରେ ମହାନଦୀର ଦକ୍ଷିଣକୂଳରେ ଅବସ୍ଥିତ। ଚମ୍ପା, ତମାଳ, ନାଗେଶ୍ୱର, ଅଶୋକ, ଛୁରିଅନା ବୃକ୍ଷରେ ବିଶେଷତଃ ଏ ବନ ପରିପୂର୍ଣ୍ଣ। ବନର ଦୈର୍ଘ୍ୟ ୩ କ୍ରୋଶ ଏବଂ ପ୍ରସ୍ଥ ଅର୍ଦ୍ଧକ୍ରୋଶ। ବହୁକାଳ ପୂର୍ବେ ସମ୍ଭବତଃ ଏ ଗୋଟିଏ ଉଦ୍ୟାନ ଥିଲା।

କି ପଟାନ୍ତର ନାହିଁ ଏବଂ ଏହା କେବଳ ସ୍ୱର୍ଗରେ ହିଁ ସମ୍ଭବ ହୋଇପାରେ। ଏଥିରେ ତାଙ୍କର ସୌନ୍ଦର୍ଯ୍ୟ ପ୍ରାଣତା, ନୂତନ-ସୃଷ୍ଟି ଆଭିମୁଖ୍ୟ, ଆଧୁନିକ କାବ୍ୟ କୁଶଳତା ଓ ସର୍ବୋପରି ପ୍ରକୃତି ସୌନ୍ଦର୍ଯ୍ୟବୋଧ ଏକାଧାରରେ ପ୍ରକଟିତ ହୋଇଥିବାରୁ ପ୍ରକୃତି ଚିତ୍ରଣରେ ଚିଲିକାରେ ବିଶେଷତ୍ୱ ପ୍ରତିପାଦନ କରିବାକୁ ଇଚ୍ଛାକରି ସେ ପର୍ଯ୍ୟାୟ କ୍ରମେ ଲେଖିଛନ୍ତି –

"ଉତ୍କଳ-କମଳା-ବିଳାସ-ଦୀର୍ଘିକା,
ମରାଳ ମାଳିନୀ ନୀଳାମ୍ବୁ ଚିଲିକା,
ଉତ୍କଳର ତୁହି ଚାରୁ ଅଳଙ୍କାର,
ଉତ୍କଳ ଭୁବନେ ଶୋଭାର ଭଣ୍ଡାର।

x x x

ଏତେ ଛବି ଯେଣୁ ଏକାଧାରେ ଠୁଳ,
ଛବିଳ ଉତ୍କଳେ ତୋ ଛବି ଅତୁଳ।
କେତେଥର ଦେଖିଅଛି ଏହିମାନ,
ମାତ୍ର ପ୍ରତିଥର ଦିଶେ ଆନ ଆନ।
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି,
ସୁନ୍ଦର ପଣର ଚିରନ୍ତନ ରୀତି,
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ,
ଯେତେ ଦେଖିଲେହେଁ ନୂଆ ଦିଶୁଥାଇ।

ଚିଲିକା ଉତ୍କଳର ପୂର୍ବ ଉପକୂଳରେ ସାଗର ବିଚ୍ୟୁତ ଏକ ବୃହତ ହ୍ରଦ ହୋଇଥିଲେହେଁ, ଚିଲିକା ରଚନା ଦିଗରେ କବିଙ୍କ ଉପରେ ସଂସ୍କୃତ, ଇତିହାସ, ପୁରାଣ ସାହିତ୍ୟଠାରୁ ଆରମ୍ଭ କରି Keats, shelley, wordsworth and Goldsmith ଇତ୍ୟାଦି କବିଙ୍କର ପ୍ରଭାବ ପଡ଼ିଥିଲେ ମଧ୍ୟ "Lady of the lake"ର ପ୍ରଭାବରେ ବିଶେଷ ପ୍ରଭାବିତ ହୋଇ ପ୍ରକୃତି ସୁନ୍ଦରୀଙ୍କୁ କାବ୍ୟନାୟିକା ଆସନରେ ଅଭିଷିକ୍ତ କରିବାକୁ ସେ ଯେଉଁ ପରିକଳ୍ପନା କରିଥିଲେ ତା'ର ମୂଳ ପ୍ରେରଣାଦାତା ହେଉଛନ୍ତି ଇଂରେଜ କବି 'Scott । ରାଧାନାଥଙ୍କ ଚିଲିକାକୁ ଆଲୋଚନାର ପରିସରଭୁକ୍ତ କଲେ ସାଧାରଣତଃ ଚିଲିକା ରଚନାର ପରିକଳ୍ପନା ଓ ପୃଷ୍ଠଭୂମି, ଚିଲିକାର ପ୍ରାକୃତିକ ଦୃଶ୍ୟ-ସଂପଦ (ଚିଲିକା ଓ ତା'ର ତୀରଭୂମି, ଚିଲିକାର ପଶ୍ଚିମତୀରର ବର୍ଣ୍ଣନା, ଚିଲିକାରେ ସୁନ୍ଦର ଓ ପାବନର ସମନ୍ୱୟ, ଚିଲିକାର ନୀଳୋରସ ଓ ଶାରଦୀୟ ଦୃଶ୍ୟ ବିଭବ, ଚିଲିକାର ଅତୁଳନୀୟତା),

(୧୪) ଚିଲିକା ପାଠ୍ୟ ଓ ପରିଚୟ - ପ୍ରକାଶକ ଫ୍ରେଣ୍ଡସ ପବ୍ଲିଶର୍ସ -ଦ୍ୱିତୀୟ ସଂସ୍କରଣ-୧୯୭୦ ପୃଷ୍ଠା-୩୯,୪୧,୪୯,୫୨,୫୩ ।

ଚିଲିକାରେ ପୁରାଣ ଓ ଇତିହାସର ସୁମଧୁର ସମନ୍ୱୟ, ଚିଲିକାର ସାୟନ୍ତନ ଶୋଭା, କାବ୍ୟରେ କବିଙ୍କର ବ୍ୟକ୍ତିତ୍ୱ, ରାଧାନାଥଙ୍କ ସ୍ୱଦେଶ ପ୍ରେମ ଓ ଜାତୀୟତା ବୋଧ, ଚିଲିକାରେ ପାଣ୍ଡିତ୍ୟ, କବିତ୍ୱ ଓ ପରିକଳ୍ପନା ଇତ୍ୟାଦି ମଧ୍ୟଦେଇ ଯଦିଓ ଗତି କରିବାର କଥା ତଥାପି ପ୍ରବନ୍ଧର ସଂକ୍ଷିପ୍ତତା ଓ ନାମକରଣ ଦୃଷ୍ଟିରୁ ଏଥିରେ ଅଧିକ ଗୁରୁତ୍ୱ ଆରୋପ ନକରାଯାଇ କେବଳ ପ୍ରକୃତି ଚିତ୍ରଣ ସଂପର୍କରେ ଯତ୍କିଞ୍ଚିତ ଆଭାସ ଦିଆଯାଇଛି ।

ରାଧାନାଥ ତାଙ୍କର ଖଣ୍ଡକାବ୍ୟ ଚିଲିକାକୁ ''ଉତ୍କଳ-କମଳା-ବିଳାସ-ଦୀର୍ଘିକା''- ପଂକ୍ତିରୁ ଆରମ୍ଭ କରି ''ଲଭିବୁ ଅଖିଳ ଜନ ଅନୁରାଗ''ରେ ଯଦିଓ ପରିସମାପ୍ତି ଘଟାଇଛନ୍ତି ତଥାପି ପ୍ରକୃତି ଚିତ୍ରଣର ବୈଶିଷ୍ଟ୍ୟ ଦୃଷ୍ଟିରୁ ଏଥିରେ ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା, ଚିଲିକାର ବିଶେଷତ୍ୱ ପ୍ରତିପାଦନ, ଚିଲିକାର ସଂଗୀତ ମୁଖରତା ଓ ବିଭିନ୍ନ ମତ୍ସ୍ୟଙ୍କ ବିଚିତ୍ର କ୍ରୀଡ଼ା ବର୍ଣ୍ଣନା, ଚିଲିକାରେ ଶରତ କାଳୀନ ଶୋଭା ବର୍ଣ୍ଣନା, ଚିଲିକା ତୀରର ସୌନ୍ଦର୍ଯ୍ୟ ବର୍ଣ୍ଣନା, ଚିଲିକାର ପଶ୍ଚିମ ତୀରର ସୌନ୍ଦର୍ଯ୍ୟ ବର୍ଣ୍ଣନା, ଚିଲିକାର ପରମ ପବିତ୍ରତା ଓ ତୀର୍ଥତ୍ୱ ପ୍ରତିପାଦନ, ଚିଲିକା ସଂଗେ ଜଡ଼ିତ ଅତୀତ ଓଡ଼ିଶାର ଗୌରବାବହ ଐତିହାସିକ ଘଟଣାର ସ୍ମୃତି, ଉତ୍କଳର ଶତ୍ରୁଦମନ ଓ ଦଳନଲାଗି ଚିଲିକାର ରୁଦ୍ରମୂର୍ତ୍ତି ଧାରଣ କରିବା, ଚିଲିକା ତୀରରେ ସୂର୍ଯ୍ୟାସ୍ତ କାଳୀନ ଦୃଶ୍ୟ, ଚିଲିକାରେ ଚନ୍ଦ୍ରୋଦୟର ସୌନ୍ଦର୍ଯ୍ୟ ବର୍ଣ୍ଣନା, ଉତ୍କଳର ସାରସ୍ୱତ ଉନ୍ନତିଲାଗି କବି ବୀଣାପାଣି ସରସ୍ୱତୀଙ୍କର ଶରଣାର୍ଥୀ ହେବା ଓ ସର୍ବ ଶେଷରେ କବି ବଳିଷ୍ଠ ଆଶାବାଦୀ ହୋଇ ଉତ୍କଳର ସାହିତ୍ୟିକ ଅଭ୍ୟୁଦୟ ନିମିତ୍ତ ବାମଣ୍ଡା ତଥା ମୟୂରଭଞ୍ଜ ରାଜବଂଶର ପୃଷ୍ଠପୌଷକତା କରିବା ଇତ୍ୟାଦି ଘଟଣା ସବୁକୁ ପର୍ଯ୍ୟାୟକ୍ରମେ କେତୋଟି ବିଭାଗରେ ବିଭକ୍ତ କରିଛନ୍ତି ।

ପ୍ରକୃତିପ୍ରେମୀ ରାଧାନାଥ ତାଙ୍କ ଜୀବନ କାଳ ମଧ୍ୟରେ ଭାରତର ପ୍ରାୟ ଅଧିକାଂଶ ସୌନ୍ଦର୍ଯ୍ୟମୟ ସ୍ଥାନ ଭ୍ରମଣ କରିଥିଲେ ମଧ୍ୟ ଚିଲିକାଭଳି ସେ କୌଣସି ଯାଗାରେ ଲଳିତ ସୌନ୍ଦର୍ଯ୍ୟର ସତ୍ତା ଉପଲବ୍ଧି କରି ଆତ୍ମତୃପ୍ତି ଲାଭ କରିନାହାନ୍ତି । ସେ ଭାରତର ବହୁ ଦୃଶ୍ୟରାଜିକୁ ଭୀତତ୍ରସ୍ତ ହୃଦୟରେ ଗୁରୁପ୍ରାୟ ମନେକରି ଚିଲିକାକୁ ସଖୀରୂପେ ସ୍ମରଣ କରି ଜଣେ ଦାର୍ଶନିକ ହିସାବରେ ତା'ନିକଟରେ ଖୋଲାମନର ଭାବନାକୁ ଅଭିବ୍ୟକ୍ତ କରି ଚିଲିକା କିପରି ତାଙ୍କ ନିକଟରେ ସୁମଧୁର ଶାନ୍ତଭାବର ସୃଷ୍ଟିକର୍ତ୍ତା, କିପରି ଦ୍ୟୋତଭାବର ଦ୍ୟୋତକ ଏବଂ ତା'ର ସ୍ନିଗ୍ଧରୂପରେ କିପରି କବି ବିଶେଷ ମାତ୍ରାରେ ଉଲ୍ଲସିତ ହୋଇଛନ୍ତି ସେ ବିଷୟରେ ଲେଖିଛନ୍ତି:-

''ଗୁରୁ ପ୍ରାୟେ ତାଙ୍କୁ ଦୂରୁଁ କରି ଭୀତି,
ସଖୀ ପ୍ରାୟେ ତୋତେ ସ୍ମରୁଥିଲି ନିତି ।

ଇତର ଜନର ଅବସାଦ କର,
ଯୋଗୀ ଋଷିଙ୍କି ସେ ସ୍ଥାନ ମନୋହର ।
ରବିକରେ ମୃଦ କମଳ ଲଭଇ,
ଝାଉଁଳି ପଡ଼ନ୍ତି ଅନ୍ୟ ପୁଷ୍ପ ତହିଁ ।
ସେହି ପୁଷ୍ପ ପୁଣି ସ୍ନିଗଧ ଶଶିକରେ,
ପିଅନ୍ତି ପୀୟୂଷ ପ୍ରଫୁଲ୍ଲ ଅନ୍ତରେ ।
ତୋ ଛବି ଦର୍ଶନେ ସେହି ରୂପେ ମନ,
ଲଭେ ସୁମଧୁର ଶାନ୍ତି ଆସ୍ୱାଦନ ।
ବିରାଟ ନୋହି ତୁ ଯେଣୁ ସୁବୃହତ,
ସ୍ତବ୍ଧ ନୋହିଁ ମନ ହୁଅଇ ଉନ୍ନତ ।
ଅବସାଦେ ଅବା ଆତ୍ମବିସ୍ମୃତିରେ,
ବୁଡ଼େ ନାହିଁ ମନ ତୋର ରମ୍ୟତୀରେ ।
ସ୍ନିଗ୍ଧରୂପ ତୋର ଚିତ୍ତ-ଉଲ୍ଲାସକ,
ସୁମଧୁରି ଦ୍ୱୈତ-ଭାବର-ଦ୍ୟୋତକ "।

ଚିଲିକା କବିଙ୍କ ଦୃଷ୍ଟିରେ ଏକ ସାମାନ୍ୟ ଉପେକ୍ଷିତ ହ୍ରଦ ନୁହେଁ । ଏହା ଉତ୍କଳ ବାସୀଙ୍କର ବହୁ ଉତ୍ଥାନ-ପତନର ସ୍ୱୟଂଦ୍ରଷ୍ଟା ଏବଂ ଜଣେ ସୁବିଶ୍ୱସ୍ତା ବାର୍ତ୍ତାବାହିନୀ । ଏହାରି କୂଳରେ ଅନେକ ନଗରୀର ଉତ୍ଥାନ ଓ ପତନ ସଂଘଟିତ ହୋଇଛି । ବହୁ ନରପତି ଯଶ ରଖିବାକୁ ଯାଇ ଶେଷରେ କାଳର କବଳିତ ହୋଇଛନ୍ତି । ଏସବୁ ହୃଦୟଙ୍ଗମ କରି ଏହା ତୀରରେ ଥିବା ଭଗ୍ନଦୁର୍ଗ ଓ ଜରାଜୀର୍ଣ୍ଣ ମନ୍ଦିରକୁ ଦେଖି କବି ଏ ଗୁଡ଼ିକ ସଂସାରର ଭଙ୍ଗୁରତାର ମୂର୍ତ୍ତିମତୀ ବିଗ୍ରହ ବୋଲି ବର୍ଣ୍ଣନା କରିଛନ୍ତି । କବିଙ୍କ ଦୃଷ୍ଟିରେ ଏ ସଂସାର କ୍ଷଣସ୍ଥାୟୀ । ଆଜି ଯାହା ଅଛି କାଲିକି ତାହା କିପରି ଧ୍ୱଂସପ୍ରାପ୍ତ ହେବ ଏହି ସତ୍ୟବାକ୍ୟକୁ ଭଗ୍ନ ଦୁର୍ଗ ବା ମନ୍ଦିର କିପରି ପ୍ରତିଧ୍ୱନି ଛଳରେ କଥା କହୁଛି ସେ ବିଷୟରେ ଲେଖିଛନ୍ତି:-

ଭଗ୍ନ ଦୁର୍ଗ, ଜରା ଜର୍ଜର ଦେଉଳ,
ଶୈବାଳ ଅରଣ୍ୟ-ଲତା-ଗୁଳ୍ମାକୁଳ ।
ମୂର୍ତ୍ତିମତୀ ହୋଇ ଭବଭଙ୍ଗୁରତା,
ପ୍ରତିଧ୍ୱନି ଛଳେ କହେ ଯହିଁ କଥା " ।

---

* ଚିଲିକା ପାଠ୍ୟ ଓ ପରିଚୟ - ପୃଷ୍ଠା - ୪୫ ।

** ଚିଲିକା ପାଠ୍ୟ ଓ ପରିଚୟ - ପୃଷ୍ଠା - ୪୧ ।

ଚିଲିକା ଗୋଟିଏ ପ୍ରାକୃତିକ ଅବସ୍ଥିତି ହେଲେହେଁ କବି ରାଧାନାଥଙ୍କ ଲେଖନୀରେ ଏହା ଏକ ଜୀବନ୍ତ ମୂର୍ତ୍ତିମତୀ ହୋଇ ପ୍ରକାଶିତ ହୋଇଛି । ପ୍ରାଚୀନ ସାହିତ୍ୟରେ ପ୍ରକୃତିର ଗତିହୀନ ବର୍ଣ୍ଣନାକୁ ପରିହାରକରି କବି ଚିଲିକାର ପ୍ରକୃତିକୁ ଅଧିକ ଗତିଶୀଳ ତଥା ପ୍ରାଣବନ୍ତ କରିଛନ୍ତି । କବିଙ୍କ ଦୃଷ୍ଟିରେ ଏହା ଏକ ସର୍ବଗୁଣ ବିମଣ୍ଡିତ ସୁରୁଚି ସମ୍ପନ୍ନ ଖଣ୍ଡକାବ୍ୟ । ସମୁଚ୍ଚଭାବ, ସୁନ୍ଦର-ପ୍ରକୃତି ଚିତ୍ରଣ, ପାଣ୍ଡିତ୍ୟ ଓ କବିତ୍ୱର ଐକତାନିକ ସମାବେଶ ଓ ସୁମଧୁର ରସାଳ କଳ୍ପନା ଇତ୍ୟାଦି ସର୍ବ ଗୁଣରେ ଏହାର କଳେବର ବିମଣ୍ଡିତ ।

ଚିଲିକାର ଅବସ୍ଥିତି, ଏହାର ତୀର ପ୍ରଦେଶର ବର୍ଣ୍ଣନା, ଶରତ ଓ ପଶ୍ଚିମ ତୀରର ପ୍ରକୃତି, ନଦୀବର୍ଣ୍ଣନା ଓ ସଂଧ୍ୟା ବର୍ଣ୍ଣନା ମଧ୍ୟଦେଇ ଏହାର ଅରଣ୍ୟ ପ୍ରକୃତି-ନାସି, ନଳବନ, କନ୍ଦରା, ଗିରିନଦୀ, ବାଣପୁର ରାଜଧାନୀର ଭଗ୍ନାବଶେଷ, ସୁରମ୍ୟ ଦ୍ୱୀପମାଳା ଓ ଶ୍ୟାମଳ ପ୍ରାନ୍ତର ଇତ୍ୟାଦି ଚତୁଃପାର୍ଶ୍ୱର ବର୍ଣ୍ଣନା କବିଙ୍କ ଲେଖନୀରେ ଛବିଳ ରୂପ ଧାରଣ କରିଛି । ଚିଲିକା ପ୍ରସଙ୍ଗରେ କବି ଭାରତର ବିଭିନ୍ନ ସ୍ଥାନର ପ୍ରକୃତି ବର୍ଣ୍ଣନା କରିଛନ୍ତି । ନୀଳ ବ୍ୟୋମ ପଟରେ ଚିତ୍ର ହେଲାପରି ନିହାର-ମୁକୁଟରେ ମସ୍ତକ ମଣ୍ଡିତ ହିମାଦ୍ରି ଶିଖରର ବର୍ଣ୍ଣନାଠାରୁ ଆରମ୍ଭକରି ବାତ୍ୟା ଆନ୍ଦୋଳିତ ମହାଭୟଙ୍କର ଭୀଷଣ ବରୁଣ ରାଜ୍ୟ ପର୍ଯ୍ୟନ୍ତ ସମସ୍ତ ପ୍ରାକୃତିକ ଶୋଭା ବର୍ଣ୍ଣନା କବିଙ୍କ ଲେଖନୀରେ ସ୍ଥାନ ପାଇଛି ।

ଶରତ ଋତୁରେ ଚିଲିକାରେ ନାନା ଜାତିର ମତ୍ସ୍ୟ ଓ ଦୂରାଗତ ପକ୍ଷୀ ମାନଙ୍କର କ୍ରୀଡ଼ା ନୈପୁଣ୍ୟ, ମାନସ ସରୋବରରୁ ଆଗତ ହଂସମାନେ କିପରି ଶୁଭ୍ର ଶରତର ଜୟ-ବୈଜୟନ୍ତି, ଲହରୀ ମାଳାରେ ନାନା ପକ୍ଷୀମାନଙ୍କର ଭାସମାନ ଦୃଶ୍ୟ, ଚିଲିକାରେ ଥିବା ଭେକଟା, ଶାଙ୍କୁଚ ଓ ମଗର ପ୍ରଭୃତିଙ୍କର କ୍ରୀଡ଼ାଦୃଶ୍ୟ, ଗାଙ୍ଗେଇ ପକ୍ଷୀର ମତ୍ସ୍ୟ ଶିକାର, ଚିଲିକାରେ ପତିତ ନଦୀମାନଙ୍କର ପାର୍ଶ୍ୱସ୍ଥିତ ପ୍ରସ୍ଫୁଟିତ କାଶତଣ୍ଡୀଫୁଲ, ନିକଟସ୍ଥ ପୁଷ୍କରିଣୀରେ ବିରାଜିତ କଇଁ ଓ ପଦ୍ମଫୁଲର ସୌନ୍ଦର୍ଯ୍ୟ ଏବଂ ଦକ୍ଷିଣ ଆକାଶରେ ଅଗସ୍ତି ତାରାର ସମୁଜ୍ଜ୍ୱଳ ପ୍ରଭା କିପରି ଶୋଭାର ପସରା ମେଲି ଦେଇଛି, ସେ ସବୁର ବର୍ଣ୍ଣନା କବିଙ୍କ ଲେଖନୀରୁ ବହିର୍ଭୂତ ହୋଇନି । କବି ଶରତ ଋତୁର ବର୍ଣ୍ଣନା ପରେ ପରେ ଚିଲିକା ତୀରସ୍ଥ ଅବସ୍ଥିତିର ମନୋରମ ପରିବେଶକୁ ଅତି ଚିତ୍ତାକର୍ଷକଭାବେ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି:-

"କମଳା-ବିଳାସ-ଭୂମି ତୋର ତୀର,
ଫଳ ଫୁଲ ଶସ୍ୟ ସଦା ସୁରୁଚିର ।
ନାରିକେଳ, ପୂଗ, ପନସ, ରସାଳ,
ମୁଚୁକୁନ୍ଦ, ଚଂପା, କେଶର, ତମାଳ,

ଅଶୋକ ବସନ୍ତ-ବିଭବ-ବିକାଶୀ,
କଦମ୍ବ ଜଳଦ-ଡ଼ମ୍ବର-ବିଳାସୀ ।
ସଦା ଶିବ ପ୍ରିୟ ପବିତ୍ର ଶ୍ରୀଫଳ,
ସଦା ଚଳଦଳ ପବିତ୍ର ପିପ୍ପଳ ।
ପୁରାଣ ଶାଲ୍ମଳୀ ସୁବିଶାଳ କାୟ,
ଶ୍ୟେନ ଶ୍ୟେନୀ ଯହିଁ ରଚନ୍ତି କୁଳାୟ ।
ଗ୍ରାମ ଦେବତୀଙ୍କ ମଣ୍ଡପ-ବିତାନ,
ସିନ୍ଦୂରିତ ପୁଷ୍ପଗୁଚ୍ଛେ ଗୋଡ଼ିବାଣ ।
ଶିବାଳୟ ଉପକଣ୍ଠେ କନିଅର,
ସୁବର୍ଣ୍ଣ ଚଷକ-ଧର ମଧୁପର ।
କର୍ଣ୍ଣପୂର ରୂପେ ପୁଷ୍ପ ଯାର ଦୋଳେ
ପଲ୍ଲୀ-ବିଳାସିନୀ ଅମଳ କପୋଳେ,
ବୈଦୂର୍ଯ୍ୟ-କିରୀଟ-ଧାରୀ ତୁଙ୍ଗତାଳ
ସରୋବର ତୀରେ ଶୋଭେ ମାଳମାଳ ।
ମହାନନ୍ଦେ ଯାର ବାହୁଛାୟା ଶ୍ରୟେ ।
ବାୟା ବାୟାବଧୂ ବସନ୍ତି ନିର୍ଭୟେ ।
ମୂଳେ କାଳରୂପୀ ଭୀଷଣ ଭୁଜଙ୍ଗ-
ଭ୍ରୁକୁଟି ନଗଣି କରୁଥାନ୍ତି ରଙ୍ଗ ।
ଡ଼ାଳୁ ବିଲମ୍ବିତ ସ୍ୱର୍ଣ୍ଣବର୍ଣ୍ଣ ଦୋଳେ,
ଦୋଳାନ୍ତି ଶାବକ କୂଳେ ସ୍ନେହ ଭୋଳେ ।

× × ×

ବଟଦ୍ରୁମ, ଯାର ଯୋଗ୍ୟ ପୁତ୍ରବତ,
ଭୂ-ସ୍ପର୍ଶୀ ଓହଳ ସ୍ତମ୍ଭେ ପରିଣତ ।
ମରକତ ପର୍ଣ୍ଣେ, ପଦ୍ମରାଗଫଳେ,
ଯା ବିଗ୍ରହ ଗ୍ରାମ-ସୀମାନ୍ତ ଉଜ୍ଜ୍ୱଳେ ।
ମଧ୍ୟାହ୍ନେ ସ୍ଫୁରଇ ଯହିଁ କଳଗିର
ହଳଦି ବସନ୍ତ ସଙ୍ଗେ ଗୁଣ୍ଡୁଚିର ।
ଏ ଆଦି ପାଦପମାଳେ ଅନ୍ଧାରିତ,
ତୀର-ପଲ୍ଲୀ ତୋର ସ୍ନିଗଧ ସୁଲଳିତ ।''

* ଚିଲିକା ପାଠ୍ୟ ଓ ପରିଚୟ-ପୃଷ୍ଠା-୪୭, ୪୮, ୪୯ ।

କବିଙ୍କ ଲେଖନୀରେ ଚିଲିକାର ପଶ୍ଚିମ ତୀରରେ ଥିବା ଫଳଫୁଲ ଭରାପଲ୍ଲୀ, ମନ୍ଦିର ଉପକଣ୍ଠ, ତାଳବନ, ଶୋଳରୀ ନାଲେରୀ ପର୍ବତର କଥୋପ କଥନ ଓ ସୂର୍ଯ୍ୟାସ୍ତ ସମୟରେ ନୌଚାଳନ ଇତ୍ୟାଦି ବର୍ଣ୍ଣନାର ଦୃଶ୍ୟ ଅତୀବ ଜୀବନ୍ତ ରୂପ ଧାରଣ କରିଛି । ଏତଦ୍‌ଭିନ୍ନ କବିଙ୍କ ଲେଖନୀରେ ଚିଲିକା ଉପକୂଳ ଅଞ୍ଚଳରେ ବହି ଯାଉଥିବା ପୁରାଣ ପ୍ରସିଦ୍ଧ ଦୟା, ଭାର୍ଗବୀ, ରତ୍ନଚିରା ଓ ଅଠରନଳା ନଦୀ ସମୂହର ବର୍ଣ୍ଣନା, କବିଙ୍କ କଳ୍ପନାରେ କାଞ୍ଚି ଅଭିଯାନ ଓ କିମ୍ବଦନ୍ତୀମୂଳକ ରକ୍ତବାହୁର ଦମନ ଲୀଳା, ପୁରୁଷୋତ୍ତମ ଓ ପଦ୍ମାବତୀଙ୍କର ରୂପବର୍ଣ୍ଣନା, ସଂଧ୍ୟା ଆଗମନରେ ଗୋବାହୁଡ଼ା ଦୃଶ୍ୟ, ଛାଗ, ମେଷ ପ୍ରଭୃତିଙ୍କର ଗଳ-ଘଣ୍ଟ ନାଦ, ମହିଷ ଟିପାର ଗୁରୁ ଗୁରୁ ଧ୍ୱନି, ନୀଡ଼ଅଭିମୁଖେ ଫେରନ୍ତା ପକ୍ଷୀମାନଙ୍କର ସୁଲଳିତ କାକଳି, ପର୍ବତ, ଉପତ୍ୟକା ଓ ଚିଲିକା ଜଳରାଶିରେ ଅସ୍ତାୟମାନ ସୂର୍ଯ୍ୟଙ୍କର କୁଙ୍କୁମ କିରଣ ପାତ, ସୂର୍ଯ୍ୟାସ୍ତ ଓ ଚନ୍ଦ୍ରୋଦୟର ଅପୂର୍ବ ସମାବେଶ ଏବଂ ରାଧାନାଥଙ୍କ ଦୃଷ୍ଟିରେ କବି ସୂର୍ଯ୍ୟଙ୍କର ସଙ୍ଗୀତ ପରିବେଶ ଇତ୍ୟାଦି ସଂଧ୍ୟାଦୃଶ୍ୟ ବର୍ଣ୍ଣନା ଚିଲିକା ପ୍ରକୃତିର ଚିତ୍ରଶାଳା ବୋଲି କହିଲେ ଅତ୍ୟୁକ୍ତି ହେବନି । ଏଣୁ ସର୍ବାନ୍ତ କରଣରେ ପ୍ରକୃତିର ରମଣୀୟ ରୂପ କବିବରଙ୍କ କାବ୍ୟ କାନନରେ ଭିନ୍ନ ଭିନ୍ନ ରୂପରେ ରୂପାୟିତ ହୋଇଛି । ପ୍ରକୃତି ଚିଲିକାରେ ତପସ୍ୱିନୀ, ଉଷାରେ ବିପ୍ଲବିନୀ, ମହିକେଶ୍ୱରୀରେ ବିରହିଣୀ, କେଦାର ଗୌରୀରେ ପୂଜାରିଣୀ, ଯଯାତି କେଶରୀରେ ବିଳାସିନୀ ଓ ସର୍ବୋପରି ମହାଯାତ୍ରାରେ ବହୁରୂପିଣୀ ଭାବେ ପ୍ରତୀୟମାନ ।

ସର୍ବଶେଷରେ କବି ଉତ୍କଳର ଉନ୍ନତି କାମନା କରି ଚିଲିକାର ପ୍ରକୃତି ଜଗତ ବିଦିତ ହେଉ ବୋଲି ଦୃଢ଼ ଆଶା ପୋଷଣକରି ଚିଲିକାକୁ ସାନ୍ତ୍ୱନା ଦେଇଛନ୍ତି । କବିଙ୍କ ଦୃଷ୍ଟିରେ ଚିଲିକାର ପ୍ରକୃତି ବୀଣାପାଣି ସରସ୍ୱତୀଙ୍କର ବନ୍ଦନାର ପୀଠ ହୋଇଥିବାରୁ ଚିଲିକା କୂଳରେ ବାଣୀ ଆରାଧନା ନିମିତ୍ତ ପଣ୍ଡିତ, କବି ଓ ଜ୍ଞାନୀ ଲୋକମାନଙ୍କୁ ସେ ବିଶେଷ ଆହ୍ୱାନ ଜଣାଇବା ସହିତ ଚିଲିକା ସେମାନଙ୍କର ବିହାର-ପୁଷ୍କରିଣୀ ରୂପରେ ସମଗ୍ର ମାନବ ସମାଜର ଅନୁରାଗ ଲାଭକରୁ ବୋଲି ଇଚ୍ଛାକରି ଲେଖିଛନ୍ତି :-

"ବାଣୀ-ଆବିର୍ଭାବ୍ ଯୋଗ୍ୟସ୍ଥଳ ଜାଣି,
ଆଶ୍ରିବେ ତୋ ତୀର ବୁଧ, କବି, ଜ୍ଞାନୀ ।
ହୋଇତୁ ତାଙ୍କର ବିହାର-ତଡ଼ାଗ,
ଲଭିବୁ ଅଖିଳ-ଜନ-ଅନୁରାଗ ।"

ରାଧାନାଥଙ୍କ ସାହିତ୍ୟ ସାଧନାର କ୍ଷେତ୍ର ଉଭୟ ଦେଶୀ ଓ ବିଦେଶୀ ଥିଲା । ସେ ସାହିତ୍ୟ ଆହରଣ ବେଳେ ଉଭୟ ଦେଶୀ ସଂସ୍କୃତ, ହିନ୍ଦି, ବଙ୍ଗଳା ଓ ଓଡ଼ିଆ

* ଚିଲିକା ପାଠ୍ୟ ଓ ପରିଚୟ-ପୃଷ୍ଠା-୭୫ ।

ସାହିତ୍ୟ ସହିତ ବିଦେଶୀ ଇଂରାଜୀ ସାହିତ୍ୟର ମଧ୍ୟ ସୁନ୍ଦର ଯୋଗସୂତ୍ର ସ୍ଥାପନ କରିଥିଲେ । ତାଙ୍କ ଉପରେ ବ୍ୟାସ, ଭବଭୂତି, କାଳିଦାସ, ଦଣ୍ଡୀ, ବାଣଭଟ, ଚାନ୍ଦବର୍ଦ୍ଦାଇ, ସାରଳା ଦାସ, ଭଞ୍ଜ, ମାଇକେଲ ମଧୁସୂଦନ, ହେମଚନ୍ଦ୍ର ଏବଂ Milton, Spencer, Byron, Scott, Shelley, Wordsworth, Keats ଓ Tennyson ପ୍ରଭୃତି କବିଙ୍କର ପ୍ରଭାବ ଯଥେଷ୍ଟ ମାତ୍ରାରେ ପଡ଼ିଥିଲା । ପ୍ରାଚୀନ ସାହିତ୍ୟରେ ଅଭିମନ୍ୟୁଙ୍କ ପରି ସେ ବହୁପାଠିତାରେ ଅପ୍ରତିଦ୍ୱନ୍ଦ୍ୱୀ ଥିଲେ । ତାଙ୍କ କାବ୍ୟ କୃତିରେ କାବ୍ୟିକ ବହିଃ ପ୍ରକାଶ, ସୌନ୍ଦର୍ଯ୍ୟ-ବୋଧର କାବ୍ୟିକ ପ୍ରତିଲିପି, ପାଣ୍ଡିତ୍ୟ ଓ ପ୍ରତିଭାର ଅପୂର୍ବ ସମନ୍ୱୟ ବର୍ଣ୍ଣନାତ୍ମକ ଇତିହାସର ଆବଶ୍ୟକତା, ସ୍ୱଦେଶ-ପ୍ରାଣତାର ସାର୍ଥକ ପ୍ରତିଲିପି, ଜୀବନ ଦର୍ଶନ, କାବ୍ୟିକ ଭାଷା, ଛନ୍ଦ, ପ୍ରକୃତି ଆତ୍ମାର ନବୀକରଣ, ପ୍ରକୃତିର ମହନୀୟ ରୂପବିଭବ, ପ୍ରକୃତିର ଅଭିନବ କାବ୍ୟ-ଗଠନ ପରିପାଟୀ ଓ ପାଶ୍ଚାତ୍ୟ ସାହିତ୍ୟର ଆହରଣ ପ୍ରଣାଳୀ ବିଶେଷ ପରିଲକ୍ଷିତ ହୋଇଥିବାରୁ ତାଙ୍କ ସାହିତ୍ୟ ସାଧନାର ପଥ ସୁଦୂର ପ୍ରସାରୀ ଥିଲା ।

ରାଧାନାଥ ଏକାଧାରରେ ଜଣେ ଶିକ୍ଷକ, ବୈୟାକରଣିକ, ଦାର୍ଶନିକ, ଦେଶପ୍ରେମୀ, ପ୍ରକୃତି କବି, ଭାବୁକ, ଯୁଗସ୍ରଷ୍ଟା, ପ୍ରାବନ୍ଧିକ, ଦର୍ଶନଶକ୍ତି, ଅନୁଭବ-ଶକ୍ତି ଓ ପ୍ରକାଶିକା-ଶକ୍ତି ବିଶିଷ୍ଟ ତ୍ରିଶକ୍ତିଧାରୀ ପ୍ରତିଭାବାନ ସାହିତ୍ୟିକ ହୋଇଥିବାରୁ ତାଙ୍କର ଅମୂଲ୍ୟ ସାହିତ୍ୟ ସଂପଦକୁ ଓଡ଼ିଶାର ସହୃଦୟ ପାଠକ ପାଠିକାଙ୍କ ନିକଟରେ ମୂଲ୍ୟ ନିର୍ଦ୍ଧାରଣ କରିବା ନିମିତ୍ତ ଯେଉଁ କେତେଜଣ ବିଶିଷ୍ଟ ପ୍ରାବନ୍ଧିକ, ଗବେଷକ ଓ ସମାଲୋଚକ ତାଙ୍କର ସାହିତ୍ୟିକ ପ୍ରଚେଷ୍ଟା ଆରମ୍ଭ କରିଛନ୍ତି ସେମାନଙ୍କ ମଧ୍ୟରୁ ଅଧ୍ୟାପକ ଶ୍ରୀ ଗୌରୀ କୁମାର ବ୍ରହ୍ମା, ଅଧ୍ୟାପକ ଡ଼କ୍ଟର କୁଞ୍ଜ ବିହାରୀ ତ୍ରିପାଠୀ, ଅଧ୍ୟାପକ ସ୍ୱର୍ଗତଃ ଡ଼କ୍ଟର କୁଞ୍ଜବିହାରୀ ଦାଶ, ଅଧ୍ୟାପକ ଡ଼କ୍ଟର ଗଂଗାଧର ବଳ, ଅଧ୍ୟାପକ ଶ୍ରୀ ପ୍ରହ୍ଲାଦ ପ୍ରଧାନ, ଅଧ୍ୟାପକ ଡ଼କ୍ଟର ନଟବର ସାମନ୍ତରାୟ, ଅଧ୍ୟାପକ ଡ଼କ୍ଟର ସୁରେନ୍ଦ୍ର ନାଥ ମିଶ୍ର, ଅଧ୍ୟାପକ ଶ୍ରୀ ତ୍ରିଲୋଚନ ମିଶ୍ର, ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ, ଅଧ୍ୟାପକ ସ୍ୱର୍ଗତଃ ଡ଼କ୍ଟର ଦେବେନ୍ଦ୍ର ମହାନ୍ତି, ଅଧ୍ୟାପକ ସ୍ୱର୍ଗତଃ ଡ଼କ୍ଟର ଗୋପାଳ ଚନ୍ଦ୍ର ମିଶ୍ର, ଅଧ୍ୟାପକ ଡ଼କ୍ଟର କୃଷ୍ଣଚନ୍ଦ୍ର ବେହେରା, ଅଧ୍ୟାପକ ଡ଼କ୍ଟର ଶ୍ରୀନିବାସ ମିଶ୍ର, ଅଧ୍ୟାପକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ଅଧ୍ୟାପକ ଡ଼କ୍ଟର ନିତ୍ୟାନନ୍ଦ ଶତପଥୀ, ସ୍ୱର୍ଗତଃ ଅଧ୍ୟାପକ ଡ଼କ୍ଟର କ୍ଷେତ୍ରବାସୀ ନାୟକ, ଅଧ୍ୟାପକ ବିଭୂଦତ୍ତ ମିଶ୍ର, ଅଧ୍ୟାପକ ଶ୍ରୀ ବେଣୁଧର ରାଉତ, ଅଧ୍ୟାପକ ଶ୍ରୀ ସିଦ୍ଧେଶ୍ୱର ହୋତା, ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଅଧ୍ୟାପକ ଶ୍ରୀ ବୁଦ୍ଧେଶ୍ୱର ଦୀକ୍ଷିତ, ଅଧ୍ୟାପକ ଶ୍ରୀ ଦୀନବନ୍ଧୁ ରଥ, ଅଧ୍ୟାପକ ଶ୍ରୀ କୁଳମଣି ମହାପାତ୍ର, ଅଧ୍ୟାପକ ଶ୍ରୀ ଉମା ଚରଣ ପ୍ରହରାଜ, ଅଧ୍ୟାପକ ଡ଼କ୍ଟର ନଗେନ୍ଦ୍ର ନାଥ ପ୍ରଧାନ, ଅଧ୍ୟାପକ ଡ଼କ୍ଟର ହେମନ୍ତ କୁମାର ଦାସ, ଅଧ୍ୟାପକ ଡ଼କ୍ଟର ଭାବଗ୍ରାହୀ ମିଶ୍ର, ଅଧ୍ୟାପକ ଡ଼କ୍ଟର ଦାଶରଥି ଦାଣ୍ଡ,

ଅଧ୍ୟାପକ ଶ୍ରୀ ମୃତ୍ୟୁଞ୍ଜୟ ନାୟକ, ଅଧ୍ୟାପକ ଡ଼କ୍ଟର ରବୀନ୍ଦ୍ର କୁମାର ପ୍ରହରାଜ, ଅଧ୍ୟାପକ ଶ୍ରୀ କୁଳମଣି ରାଉତ, ଅଧ୍ୟାପକ ଡ଼କ୍ଟର ଶରତ ଚନ୍ଦ୍ର ରଥ, ଅଧ୍ୟାପକ ଡ଼କ୍ଟର ନୃସିଂହ ଷଡ଼ଙ୍ଗୀ, ଅଧ୍ୟାପକ ଡ଼କ୍ଟର ପ୍ରଫୁଲ୍ଲ କୁମାର ଦାଶ, ଅଧ୍ୟାପକ ଡ଼କ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର, ଅଧ୍ୟାପକ ଡ଼କ୍ଟର ସୁରେନ୍ଦ୍ର ନାଥ ଆଚାର୍ଯ୍ୟ, ଅଧ୍ୟାପକ ଡ଼କ୍ଟର ପ୍ରସନ୍ନ କୁମାର ସ୍ୱାଇଁ, ଅଧ୍ୟାପକ ଡ଼କ୍ଟର କୃଷ୍ଣ ଚନ୍ଦ୍ର ଷଡ଼ଙ୍ଗୀ, ଶ୍ରୀ ଜୀବନାନନ୍ଦ ମହାପାତ୍ର, ଅଧ୍ୟାପିକା ଡ଼କ୍ଟର ରୁକ୍ମଣୀ ପ୍ରଧାନ ଓ ଅଧ୍ୟାପକ ଡ଼କ୍ଟର ଆରତୀ ମହାନ୍ତି ପ୍ରମୁଖଙ୍କ ଉଦ୍ୟମ ଯଥେଷ୍ଟ ପ୍ରଶଂସନୀୟ ।

ଉତ୍କଳର, ନୈସର୍ଗିକ ପ୍ରକୃତିର ପରମ ଓ ସାର୍ଥକ ଉପାସକ ଥିଲେ କବି ରାଧାନାଥ ରାୟ । ପାଶ୍ଚାତ୍ୟ ରୋମାଣ୍ଟିକ ଆନ୍ଦୋଳନର ଅନୁରୋଧରେ କବି ଅଭିନବ ରୂପରେ ଚିତ୍ରଣ କରିଥିଲେ ଉତ୍କଳର ରମ୍ୟ ପ୍ରକୃତି ସଂସାର । ତାଙ୍କ ପାଇଁ କେବଳ ଉତ୍କଳର ପ୍ରକୃତି ଭୌଗୋଳିକ ସଂପଦର ସମାହାର ନଥିଲା, ତାହା ଥିଲା ଏକ ଅପୂର୍ବ ନୈସର୍ଗିକ ଜୀବନ୍ତ ବ୍ୟକ୍ତିତ୍ୱ । ଓଡ଼ିଆ ସାହିତ୍ୟର ଦୀର୍ଘ ପାଞ୍ଚଶହ ବର୍ଷର ପରଂପରାରେ ନିଘଞ୍ଚ ଅରଣ୍ୟାନୀ, ରମଣୀୟ ଉପତ୍ୟକା, ଅଧିତ୍ୟକା, ଋତୁ ଚକ୍ରର ବର୍ଣ୍ଣ-ବିଭବ, ହ୍ରଦ, ପୁଷ୍କରିଣୀ, କଳକଳ ନାଦିନୀ ତରଙ୍ଗିଣୀ ଓ ସୁଉଚ୍ଚପର୍ବତମାଳା ଇତ୍ୟାଦି ରାଧାନାଥଙ୍କ ଲେଖନୀରେ ନୂତନ ରୂପରେ ପ୍ରତିଭାତ ହେଲେ । ଅତୀତର କବି ପ୍ରାଣରେ ଯେଉଁମାନେ ନିଷ୍ପ୍ରାଣ ଓ ଜଡ଼ବସ୍ତୁ ହୋଇ ରହିଥିଲେ ରାଧାନାଥଙ୍କ ଲେଖନୀରେ ସେମାନେ ପ୍ରାଣବନ୍ତ ଐଶ୍ୱର୍ଯ୍ୟମୟୀ ଚାରୁଚିତ୍ରଶାଳାରେ ବିମଣ୍ଡିତ ହେଲେ । ବହୁ ଯୁଗପରେ ପ୍ରକୃତି ମଧ୍ୟରେ ଜୀବନର ନୂତନ ସଞ୍ଚାର କଲେ ରାଧାନାଥ । ସେ ମଣିଷ ସଂସାରର ହୋଇଗଲା ଅତ୍ୟନ୍ତ ଅନ୍ତରଙ୍ଗ, ସେ ହେଲା ମଣିଷର ସହଯାତ୍ରୀ ପରମପ୍ରିୟ ବଂଧୁ, ଦ୍ରଷ୍ଟା ଓ ଦାର୍ଶନିକ । ଅପୂର୍ବ ଜାତୀୟ ଭାବନାରେ ଉଦ୍‌ବୁଦ୍ଧ ହୋଇ ରାଧାନାଥଙ୍କର ପ୍ରକୃତି ଓଡ଼ିଶାର ଶତ୍ରୁ ବିରୁଦ୍ଧରେ କେବଳ ସଂଗ୍ରାମ କରିନାହିଁ ସେ ଦୁଃଖଦ ମୁହୂର୍ତ୍ତରେ କବିର ମନରେ ଆଣି ଦେଇଛି ଅପୂର୍ବ ଉନ୍ମାଦନା, ପ୍ରଶାନ୍ତି ଓ ପ୍ରବୋଦନ । ରାଧାନାଥ ଭାରତର ସର୍ବାଞ୍ଚଳରେ ପରିଭ୍ରମଣ କରି ପ୍ରକୃତିର ଭୀମକାନ୍ତ ରୂପରେ ବିସ୍ମିତ ବିମୂଢ଼ ହୋଇଯାଇଥିଲେ ମଧ୍ୟ ଶେଷରେ ଉତ୍କଳର ରମଣୀୟ ପ୍ରକୃତି କୋଳରେ ଆଶ୍ରୟ ନେବା ପାଇଁ ବ୍ୟାକୁଳ ହୋଇ ଉଠିଛନ୍ତି । ରାଧାନାଥଙ୍କ ପରି ମନୋରମ ପ୍ରକୃତି ସଂସାରର ଜଣେ ଚିହ୍ନରା ଗ୍ରାହକ କ୍ୱଚିତ ପରିଦୃଷ୍ଟ ହୁଅନ୍ତି ବୋଲି ସ୍ୱୀକାର କରିବାକୁ ପଡ଼ିବ ।

ମହାମନୀଷୀ 'ବର୍ଣ୍ଣାଡ଼ ଶ'ଙ୍କ କଥାରେ "ଯିଏ ନିଜ କଥା ଓ ନିଜ କାଳ କଥା ଲେଖନ୍ତି; ସେଇ କେବଳ ସାର୍ବଜନୀନ ଓ ଚିରନ୍ତନ ସାହିତ୍ୟ ସୃଷ୍ଟି କରିଥାନ୍ତି ।" ଏକଥା ଅକ୍ଷରେ ଅକ୍ଷରେ ରାଧାନାଥଙ୍କ ଜୀବନରେ ସଂପୂର୍ଣ୍ଣ ପ୍ରତିଫଳିତ ହୋଇଥିବାରୁ, କାଳ ଚେତନା ଓ ଯୁଗଧର୍ମର ପ୍ରଭାବରେ ତାଙ୍କର ରଚନାବଳୀ ସାର୍ବଜନୀନ, ଶାଶ୍ୱତ

ଭାବରେ ସମୃଦ୍ଧି ଲାଭ କରିଥିବାରୁ ଏବଂ ପ୍ରକୃତି ଚିତ୍ରଣରେ ଦେଶାତ୍ମବୋଧ ଦୀପ୍ତ କରିବା ଅଭିପ୍ରାୟ ତାଙ୍କର ସ୍ପଷ୍ଟ ପ୍ରମାଣିତ ହୋଇଥିବାରୁ ତାଙ୍କ ସାହିତ୍ୟର ଏହି ଅମୂଲ୍ୟ ପ୍ରଧାନ ଓ ମୌଳିକ ପ୍ରେରଣା ଉତ୍କଳୀୟ ପରଂପରାରେ ଆଗାମୀ ଦିନମାନଙ୍କ ପାଇଁ ଯୁଗ ଯୁଗଧରି ସାହିତ୍ୟ ପ୍ରେମୀ ମାନଙ୍କୁ ଯେ ନୂତନ ବାଟ କଢ଼ାଇବ ଏଥିରେ ସନ୍ଦେହର ଅବକାଶ ନାହିଁ। ଏଇଥିପାଇଁ ସର୍ବଜନାଦୃତ, ସାର୍ବଜନୀନ ସ୍ବୀକୃତି ଲାଭ କରିଥିବା ଯୁଗସ୍ରଷ୍ଟା କବିବର ରାଧାନାଥ ରାୟଙ୍କୁ କୁହାଯାଏ-

> ''ରାଧାନାଥ ରାୟ ପ୍ରକୃତି କବି,
> ବୁଧେ କବିବର କହନ୍ତି ଭାବି।''

## ସହାୟକ ଗ୍ରନ୍ଥସୂଚୀ


୧. ରାଧାନାଥ ଗ୍ରନ୍ଥାବଳୀ - କବିବର ରାଧାନାଥ ରାୟ- ପରିବର୍ଦ୍ଧିତ ଦଶମ ସଂସ୍କରଣ - ୧୯୫୫ ।

୨. ରାଧାନାଥଙ୍କ ଜୀବନୀ - ଲେଖକ ଓ ପ୍ରକାଶକ ଶ୍ରୀଦୁର୍ଗାଚରଣ ରାୟ-ପ୍ରଥମ ସଂସ୍କରଣ- ୧୯୪୧ ।

୩. Chambers's Original Edition - Twentieth Century Dictionary- 1901-1939

୪. Encyclopaedia Britannika - Volume - 16

୫. ପୂର୍ଣ୍ଣଚନ୍ଦ୍ର ଭାଷାକୋଷ - ସଂଗ୍ରାହକ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ -୪ର୍ଥ ଖଣ୍ଡ ।

୬. ଆସନ୍ତାକାଲି ପୂଜା ସଂଖ୍ୟା - ୧୯୬୬

୭. ତପସ୍ୱିନୀ ଓ ମେହେର ସାହିତ୍ୟ -ଅଧାପକ ଶ୍ରୀ ଗୌରୀକୁମାର ବ୍ରହ୍ମା ଓଡ଼ିଶା ବୁକ୍ ହାଉସ୍ ।

୮. ଗଂଗାଧର ଗ୍ରନ୍ଥାବଳୀ - ୰ ଗଂଗାଧର ମେହେର - ପରିମାର୍ଜିତ ଦ୍ୱିତୀୟ ସଂସ୍କରଣ ।

୯. ମରୁତୀର୍ଥ - ସଂପାଦିକା - ନଳିନୀ ଦେବୀ ରାଉତରାୟ -ମେ, ୧୯୭୦

୧୦. ଡଗର - ଡିସେମ୍ବର - ଜାନୁୟାରୀ - ୧୯୬୦-୧୯୬୧ ।

୧୧. ରାଧାନାଥ ଓ ଚିଲିକା କାବ୍ୟ - ଅଧାପକ ନଟବର ସାମନ୍ତରାୟ ।

୧୨. ଚିଲିକା ପାଠ୍ୟ ଓ ପରିଚୟ - ପ୍ରକାଶକ ଫ୍ରେଣ୍ଡସ ପବ୍ଲିଶର୍ସ - ୧୯୭୦

୧୩. ଚନ୍ଦ୍ରଭାଗା-ସଂପାଦନା ପ୍ରବୀଣ ଅଧାପକଦ୍ୱୟ ।

୧୪. ନନ୍ଦିକେଶ୍ୱରୀ - ସଂପାଦନା ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି - ୧୯୭୨ ।
୧୫. ଦରବାର-ସଂପାଦନା ଡକ୍ଟର ନୃସିଂହ ଷଡଙ୍ଗୀ ।
୧୬. କବିବର ରାଧାନାଥ ଓ ମହାଯାତ୍ରା କାବ୍ୟ - ଅଧ୍ୟାପକ ପ୍ରଫୁଲ୍ଲ କୁମାର ଦାଶ - ୧୯୮୨ ।
୧୭. ରାଧାନାଥଙ୍କ ଉଷା - ଗୌରୀକୁମାର ବ୍ରହ୍ମା - ୧୯୬୯ ।
୧୮. ଚିଲିକା ପାଠ୍ୟ ଆଲୋଚନା - ସଂପାଦନା ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି - ୧୯୭୧ ।
୧୯. ଚିଲିକା ଆଲୋଚନା - ଅଧ୍ୟାପକ ଶ୍ରୀ ମୃତ୍ୟୁଞ୍ଜୟ ନାୟକ ।
୨୦. ଓଡ଼ିଆ କାବ୍ୟବୃତ୍ତ ଓ ମହାଯାତ୍ରା - ଅଧ୍ୟାପକ ଡକ୍ଟର ନୃସିଂହ ଷଡଙ୍ଗୀ ।
୨୧. ଚିଲିକା ବିଚାର - ଶ୍ରୀ ଗୌରୀକୁମାର ବ୍ରହ୍ମା ।
୨୨. ଓଡ଼ିଆ କାବ୍ୟ କଳା ଓ ନନ୍ଦିକେଶ୍ୱରୀ - ଡକ୍ଟର ନୃସିଂହ ଷଡଙ୍ଗୀ ।
୨୩. ସମାଲୋଚନାର ଦିଗନ୍ତ - ଶ୍ରୀ ଜୀବନାନନ୍ଦ ମହାପାତ୍ର ।
୨୪. ସାନ୍ତ୍ୱନା - ୧୯୮୪-ଖ୍ରୀଷ୍ଟ ମହାବିଦ୍ୟାଳୟ ମୁଖପତ୍ର ।
୨୫. ସାହିତ୍ୟ ସୌରଭ - ଅଧ୍ୟାପକ ଡକ୍ଟର ପ୍ରାଣରଞ୍ଜନ ଦାସ, ଶ୍ରୀ ଯୋଗେଶ୍ୱର ସୁନ୍ଦରରାୟ ।
୨୬. ଆଧୁନିକ ସାହିତ୍ୟରେ ପାଶ୍ଚାତ୍ୟରେ ପ୍ରଭାବ - ସ୍ୱର୍ଗତଃ ଅଧ୍ୟାପକ ଡକ୍ଟର କ୍ଷେତ୍ରବାସୀ ନାୟକ ।
୨୭. ରାଧାନାଥ ପରିଚିତି - ସ୍ୱର୍ଗତଃ ଅଧ୍ୟାପକ ଡକ୍ଟର କ୍ଷେତ୍ରବାସୀ ନାୟକ ।
୨୮. ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ - ଅଧ୍ୟାପକ ଶ୍ରୀ ଉମାଚରଣ ପୂଜାରୀ ।
୨୯. ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ - ଅଧ୍ୟାପକ ନଟବର ସାମନ୍ତରାୟ ।
୩୦. ଯୁଗଜ୍ୟୋତି ରାଧାନାଥ - ଅଧ୍ୟାପକ ଡକ୍ଟର ଦେବେନ୍ଦ୍ର ମହାନ୍ତି ।
୩୧. କବିବର ରାଧାନାଥ - ସତ୍ୟନାରାୟଣ ମହାପାତ୍ର ।